# ପ୍ରହରାଜ ପରିକ୍ରମା



ସ୍ୱର୍ଗତ ପ୍ରହର୍‌ଜଙ୍କ ସ୍ମୃତି ଉପଲକ୍ଷେ

ଓଡ଼ିଶା ପୂଜ୍ୟପୂଜା ସଂସଦ, କଟକ

ଆନୁକୂଲ୍ୟରେ ପ୍ରକାଶିତ

ସେପ୍ଟେମ୍ବର, ୧୯୭୦



ସଂପାଦକ

ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ

# ସୂଚୀ—

● ଲେଖିଛନ୍ତି ଶ୍ରୀ କାଳନ୍ଦୀ ଚରଣ ପାଣିଗ୍ରାହୀ, ଶ୍ରୀ ନବକୁମାର ଅଗ୍ରର୍ଷି ସ୍ୱର୍ଗତ ପ୍ରହରାଜ, ଅଧ୍ୟାପକ ବୈଷ୍ଣବଚରଣ ସାମଲ, ଡକ୍ଟର ଶ୍ରୀନିବାସ ମିଶ୍ର, ଡାକ୍ତର ରାଧାଚରଣ ପଣ୍ଡା, ଶ୍ରୀ ବାମଦେବ ମିଶ୍ର, ଶ୍ରୀ ପ୍ରାଣକୃଷ୍ଣ ନନ୍ଦ, ଡକ୍ଟର କୁଞ୍ଜବିହାରୀ ଦାଶ, ଅଧ୍ୟାପିକା ପ୍ରତିଭା ଶତପଥୀ, ଜଷ୍ଟିସ୍ ହରିହର ମହାପାତ୍ର ।

# ସଂପାଦକୀୟ--

ଓଡ଼ିଶା ପୂଜ୍ୟପୂଜା ସଂସଦ ପକ୍ଷରୁ ଏହି 'ପରିକ୍ରମା' ସଂକଳନ ଯେତିକି ଆଶ୍ୱାସନାର କଥା ସେତିକି ଆଶଙ୍କାର କଥା ମଧ୍ୟ । ଆଶ୍ୱାସନା ଏତିକି ଯେ ସ୍ୱର୍ଗତ ପ୍ରହରାଜଙ୍କ ମୃତ୍ୟୁ ପରେ ତାଙ୍କ ଜୀବନର ଆଲେଖ୍ୟ ଓ ତାଙ୍କ ସାହିତ୍ୟର ଗୁରୁତ୍ୱ ନେଇ ଏହାହିଁ ସର୍ବପ୍ରଥମ ଉଦ୍ୟମ । ଓଡ଼ିଆ ଭାଷାର ବିପୁଳ ଭାଷ୍ୟକାର ଓ ଓଡ଼ିଆ ବ୍ୟଙ୍ଗ ସାହିତ୍ୟର ବିପୁଳ ସମାଜ-ଦ୍ରଷ୍ଟା ପ୍ରହରାଜଙ୍କୁ ଆମେ ଭୁଲି ନାହୁଁ—ଏହାହିଁ ଏହି 'ପରିକ୍ରମା' ମନେ ପକେଇ ଦେବ । ବେଶୀ ଦିନର କଥା ନୁହେଁ, ମାତ୍ର ୨୫ ବର୍ଷ ତଳେ ଏହି ସାଧନାପୂତ ଜୀବନର ବିଷାଦାତ୍ମକ ପରିସମାପ୍ତି ଘଟେ; ପୁଣି ସେ ମୃତ୍ୟୁର ରହସ୍ୟ ଉଦ୍‌ଘାଟନ କରିବାକୁ କୋର୍ଟ କଚେରୀ ବ୍ୟଗ୍ର ହୋଇ ଉଠନ୍ତି । ହେଲେ ଏ ମୃତ୍ୟୁ ଅନେକ ମହାପୁରୁଷଙ୍କ ଜୀବନର ଇତିକଥା ପରି ଅଜ୍ଞାତ ଆତତାୟୀର ଉଦ୍ୟମଜନିତ ମୃତ୍ୟୁ । ବେଶ୍ ସ୍ୱାଦ୍ୟ ଓ ସୁନ୍ଦର । ମରଣକୁ ବରଣ କରିବାରେ କୁଣ୍ଠା ନାହିଁ, ମୃତ୍ୟୁର ଭୀତି ନାହିଁ –'ମରଣ ତୁହୁ ମମ ଶ୍ୟାମ ସମାନ ।' ମହାପୁରୁଷମାନେ କଣ ସ୍ୱାଭାବିକ ମୃତ୍ୟୁ ବରଣ କରନ୍ତି ? ନାହିଁ ବୋଧେ ।

କିନ୍ତୁ ତାଙ୍କ ମୃତ୍ୟୁ ପରେ ଓଡ଼ିଆ ଭାଷା ସାହିତ୍ୟର ବିପୁଳ କୋଣାର୍କ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ଠିଙ୍ଗା ଦରରେ ବଜାରରେ ବିକ୍ରୀ ହେଲା । ଆହା, ଏ ଅଧମ ଜାତି ଏ ଅଧୋଗତିକୁ ରୋକି ପାରିଲା ନାହିଁ । ଆଜି ଅନ୍ଧ ହଜାଇଥିବା ଲଉଡ଼ି ପରି ସେହି ଅମୂଲ୍ୟମଣିକୁ ଆମେ ସମସ୍ତେ ଅଣ୍ଡାଳି ହେଉଛେ । ରାଧାନାଥ ସିନା ଜାତିର ଦୁର୍ଗତିର ବିପୁଳ ଅଧୋଗତିକୁ ସହି ନ ପାରି, କୋଣାର୍କ ମନ୍ଦିରର ଭଗ୍ନାବଶେଷ ପଛରେ ଉପାସ୍ୟ ଦେବତା ସୂର୍ଯ୍ୟ ଦେବତାଙ୍କ ଅପଲିପ୍ସା ଓ ବ୍ରାହ୍ମଣକୁମାରୀ 'ଚନ୍ଦ୍ରଭାଗା' ପ୍ରତି କାମୁକତାର ଚିତ୍ର ଖିଞ୍ଚି ଦେଲେ; ହେଲେ ଏ 'ଭାଷା କୋଣାର୍କ'ର ଅପଚୟ ପାଇଁ ଆମେ କାହାକୁ ଦାୟୀ କରିବା ? ଜାତି ପ୍ରୀତି ବୋଲି ଗୋଟାଏ ଅଭାବନୀୟ ଜିନିଷ ଆମ ଭିତରେ ଥିଲେ ସିନା ? ଜାତିର ସହସ୍ର ସ୍ୱାର୍ଥକୁ ମୁହୂର୍ତ୍ତକର ପାଉଣା-ହିସାବର ବିନିମୟରେ ହାଣି ହାଣି ଆମେ ଆଜି ଜଣେ ଜଣେ ପ୍ରତାପୀ ପୁରୁଷ; ଆମ କୃତିତ୍ୱର ସୀମା ନାହିଁ । ଓଡ଼ିଆ ଭାଷା ଓ ସାହିତ୍ୟର ସ୍ୱାର୍ଥକୁ ଆମେ ରଖିଆଳମାନେ ପ୍ରତି ମୁହୂର୍ତ୍ତରେ ବିପଣୀରେ ପଣ୍ୟଦ୍ରବ୍ୟ ବିକ୍ରୀ କରି ଦେଉଛେ—ତଥାପି ଆମ ପାଇଁ ଲଗା ନାହିଁ । ଆମ ହାତରେ ଅଛି କ୍ଷମତାର ଚାବୁକ୍—ଘୁଞ୍ଚେ ପିଟି ଦେଲେ ସମସ୍ତେ ବିକଳ ବିସ୍ମୟରେ ଅପସରି ଯିବାକୁ ବାଧ୍ୟ ।

ପୁଣି ଆଶଙ୍କାର କଥା ଏହିକି ପ୍ରହରାଜଙ୍କ ଲିଖିତ ଆତ୍ମଜୀବନୀର ଯେଉଁ ଅଂଶ ଏହି 'ପରିକ୍ରମା'ରେ ପ୍ରକାଶିତ ହେଲା ତାହା ବହୁ ତଥା-କଥିତ ମିତବାଗୀଶଙ୍କ ମନକୁ ହୁଏତ ରୁଚିବ ନାହିଁ । ସେମାନେ ବାଇରନ୍ ଓସକାର ଓ୍ୱାଇଲ୍‌ଡଙ୍କ ବ୍ୟକ୍ତିଗତ ଜୀବନକୁ ନିଘା ନ ଦେଇ ସେମାନଙ୍କ ସାହିତ୍ୟରୁ ରସ ଆହରଣ କରିପାରନ୍ତି, କିନ୍ତୁ ଆମ ଘରପୁଅର ଯାହା କିଛି ସ୍ୱାଭାବିକ ଦୁଷ୍କୃତି ଓ ସ୍ଖଳନ ତାକୁ ସେମାନେ ବରଦାସ୍ତ କରିବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କ ଆଖିରେ ସତ୍ୟ ପ୍ରକାଶର ନିର୍ଭୀକତା ପାଇଁ ମୁବାରକ୍ ନାହିଁ, ଅଛି କଦାର ବର୍ଜିତ ନିର୍ଯ୍ୟାତନା । ଅମୃତଭଣ୍ଡରେ ବିଷ ବିନ୍ଦୁଟିଏ ଗୁଡ଼ି ଦେବାକୁ ସେମାନଙ୍କୁ ବେଶୀ ବେଳ ଲାଗେ ନାହିଁ । ସାଧନାର ନୈତିକ ମାର୍ଗର ପଥିକ ନ ହୋଇ ବି ସେମାନେ ଦାବୀ କରନ୍ତି ସାଧକର ସିଦ୍ଧି ଓ ସାଫଲ୍ୟ । ତେଣୁ 'ଫୁତ୍' କରି ଏକ ଫୁତ୍‌କାରରେ ଯଦି ପ୍ରହରାଜଙ୍କ ଜୀବନବ୍ୟାପୀ ସାଧନାର ଭାବସମ୍ପଦକୁ ତାଙ୍କ 'ଆତ୍ମ ଜୀବନୀ'ର ଅନାସ୍ୱାଦ୍ୟ (?) ଉକ୍ତିପାଇଁ ସେମାନେ ଉଡାଇ ଦିଅନ୍ତି ତା'ହେଲେ ସେ ରହସ୍ୟକୁ ଉଦ୍‌ଘାଟନ କରି ଆମେ ତାଙ୍କ ପାଇଁ ଭଲ କଲୁ ବୋଲି କପରି ବିଚାରିବୁ ?

ରାଧାନାଥଙ୍କୁ ତ ସେଇମାନେ ସେଦିନ ଅସାମାଜିକ, ଅପାରଂପରିକ ଅମାର୍ଜିତ ଓ ଅପରାଧୀ କହି ଘୃଣା ଓ ବିଦ୍ରୂପରେ ନାକ ଟେକିଥିଲେ । ସେଇମାନେ ନିଜ ଜୀବନର ବହୁ ଅଶ୍ଳୀଳ ଅତୀତର ପ୍ରତିଫଳନ 'ପାର୍ବତୀ' ଓ 'ଚନ୍ଦ୍ରଭାଗା'ରେ ଦେଖନ୍ତି—କିନ୍ତୁ ସାମାଜିକତାର ମୁଖାପିନ୍ଧି ସେମାନେ କେଡେ ଭଦ୍ର ସାଜନ୍ତି । ସେମାନେ ପୁଣି ବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଲକ୍‌ସନେସଙ୍କ 'ସ୍ୱାଧୀନମାନବ'କୁ ନୋବେଲ୍ ପ୍ରାଇଜ୍ ପାଇଥିବା ହେତୁ ପ୍ରଶଂସା କରନ୍ତି । ସେଠି ରାଧାନାଥଙ୍କ ଗଙ୍ଗେଶ୍ୱର ଓ ଏଠି ଲକସନେସ୍‌ଙ୍କ ଜାଷ୍ଟୁର ଚରିତ୍ର ଭିତରେ ଆଚରଣଗତ ପାର୍ଥକ୍ୟ ନ ଥିଲେ ବି ଆଇସ୍‌ଲାଣ୍ଡର ଏହି ଲେଖକଙ୍କ ପାଇଁ ପାଠକ ସମାଜ ଉଚ୍ଛ୍ୱସିତ ଉତ୍କଣ୍ଠା ପ୍ରକାଶ କରନ୍ତି । ମୋର ଭୟହୁଏ ଆମ ମନରୁ ସ୍ୱର୍ଗତ ପ୍ରହରାଜ ତାଙ୍କ ଆତ୍ମଜୀବନୀର ଗୋପନୀୟ ଉକ୍ତି ଭିତରେ ଏହିପରି ଲଘୁମନ୍ୟତା ଓ ମାନସିକ ବ୍ୟାଧି (Complex)କୁ ଦୂର କରିବାକୁ ସଚେତନ ଉଦ୍ୟମ କରି ଏବେ ଭୁଲ ବୁଝାଯିବେ ନାହିଁତ ? ତଥାପି ଆମେ ଆମ କର୍ତ୍ତବ୍ୟ କରିଚୁ । ଆମେ ଫଳପ୍ରତି ଅନାସକ୍ତ । ପୂଜାରଫୁଲ ଗୋଲାପ ନହୋଇ ଯଦି କିଂଶୁକ ହୁଏ ତଥାପି ପୂଜକର ଅନ୍ତର ସେଥିରେ ନିବେଦିତ; ପୂଜାସ୍ପଦ ସେତିକି ବୁଝିଲେ ଯଥେଷ୍ଟ ହେବ ।

**କୃତଜ୍ଞତା ଜ୍ଞାପନ**—ଏହି 'ପରିକ୍ରମା' ପୂଜ୍ୟପୂଜା ସଂସଦର ୪ର୍ଥ ପ୍ରକାଶନ । ଏସବୁ କାର୍ଯ୍ୟରେ ରାଜ୍ୟସରକାରଙ୍କ ସାହାଯ୍ୟ ଓ ସହଯୋଗ ଆମର ପ୍ରଥମ ସମ୍ବଳ ଭାବରେ ବିବେଚିତ । ରାଜ୍ୟ ଲୋକସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ହରିହରପଟେଲ ଓ ସାଂସ୍କୃତିକ ବ୍ୟାପାର ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ନିତ୍ୟାନନ୍ଦ ମହାପାତ୍ର ଆମକୁ ଏ କାର୍ଯ୍ୟରେ ଉତ୍ସାହ ଓ ପ୍ରେରଣା ଦେଇଛନ୍ତି । ସେମାନେ ଆମର ଧନ୍ୟବାଦାର୍ହ । ସେହିପରି ସାଂସ୍କୃତିକ ଓ ଶିକ୍ଷା ବିଭାଗ ସଚିବ ଶ୍ରୀଯୁକ୍ତ ରମାକାନ୍ତ ରଥ ଏବଂ ନିର୍ଦ୍ଦେଶକ ଶ୍ରୀଯୁକ୍ତ ହେରମ୍ବ ନାରାୟଣ ଦାସମହାପାତ୍ର ତଥା ଉପନିର୍ଦ୍ଦେଶକ ଶ୍ରୀଯୁକ୍ତ ଯୋଶୀଙ୍କ ସହଯୋଗ ପାଇଁ ଆମର ଆନ୍ତରିକ କୃତଜ୍ଞତା ଜ୍ଞାପିତ ହେଲା ।

'ପ୍ରହରାଜ ପରିକ୍ରମା' ପ୍ରକାଶନ ପାଇଁ ରବୀନ୍ଦ୍ର ମଣ୍ଡପରେ ଆଜି ଏହି ସାହିତ୍ୟ ସମାରୋହର ଆୟୋଜନ ହୋଇଛି । ଗୋଟିଏ ଭଲ ବହି ପ୍ରକାଶ ନିମନ୍ତେ ଏ ଦେଶରେ ସାହିତ୍ୟ ସମାରୋହ ପ୍ରାୟ ହୁଏ ନାହିଁ । ନିଶ୍ଚୟ ଆମର ଏ ଉଦ୍ୟମ ବହୁ ସାହିତ୍ୟ-ଅନୁଷ୍ଠାନକୁ ଉତ୍ସାହିତ କରିବ ବୋଲି ଆଶା କରୁଛୁ । ଆମର ଅନୁରୋଧ ରକ୍ଷା କରି ଉତ୍କଳ ବିଶ୍ୱ-ବିଦ୍ୟାଳୟର କୁଳପତି ଡକ୍ଟର ସଦାଶିବ ମିଶ୍ର, 'ପୌରୁଷ'ର ସମ୍ପାଦକ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ, ଓଡ଼ିଶାର ଅଗ୍ରଗଣ୍ୟ କଥା-ସାହିତ୍ୟିକ ଶ୍ରୀ ସୁରେନ୍ଦ୍ର ମହାନ୍ତି, ପ୍ରହରାଜଙ୍କ ଭାଗିନେୟ ଶ୍ରୀ ପ୍ରାଣକୃଷ୍ଣ ନନ୍ଦ ଓ ବାଲୁଗାଁର ସମାଜସେବୀ ଡାକ୍ତର ରାଧାଚରଣ ପଣ୍ଡା ଏ ଉତ୍ସବରେ ଅତିଥି ଭାବରେ ଯୋଗ ଦେଇଛନ୍ତି । ସେମାନଙ୍କ ପାଖରେ ଆମେ କୃତଜ୍ଞ ରହିବୁ । ପୂଜ୍ୟପୂଜା ସଂସଦର ସଭାପତି ଡକ୍ଟର କୁଞ୍ଜବିହାରୀ ଦାଶଙ୍କଠାରେ ମୁଁ ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ଏକ ଦୁରନ୍ତ ଅଭିମାନ ସବୁଦିନେ ଅନୁଭବ କରି ଆସିଛି । ଓଡ଼ିଆ ସାହିତ୍ୟ ପ୍ରତି ସେ ମମତାର କଳନା ନାହିଁ । ତାଙ୍କ ସହଯୋଗ ଓ ଅନୁକ୍ତ ଅନୁପ୍ରେରଣା ଏହି ସଂସଦ ପାଇଁ ସବୁଦିନେ ମିଳିବ—ଏହି ଆଶା ପ୍ରକାଶ କରି ଅନ୍ତରର ବିନମ୍ର ଭକ୍ତିପୂତ ଶ୍ରଦ୍ଧା ନିବେଦନ କରୁଛି । ଏହି 'ପରିକ୍ରମା'ର ସମସ୍ତ ଲେଖକ ଓ ଆଜିର ଏହି ସମାରୋହରେ ସହଯୋଗ କରିଥିବା ସମସ୍ତ ସାହିତ୍ୟପ୍ରେମୀ ଜନତା ଓ ପ୍ରହରାଜ ସ୍ମୃତି ଉପାସକ ସୁଧୀବୃନ୍ଦଙ୍କୁ ମୁଁ ଆନ୍ତରିକତା ଜ୍ଞାପନ କରୁଛି । ଇତି ।

**ନିତ୍ୟାନନ୍ଦ ଶତପଥୀ**
୨୭ । ୯ । ୭୦
ଅଧ୍ୟାପକ, ଉତ୍କଳ ବିଶ୍ୱବିଦ୍ୟାଳୟ

# ପର୍ବତ ଓ ମହମ୍ମଦ

ଓଡ଼ିଆ ସାହିତ୍ୟରେ ହାସ୍ୟରସ ରଚନାର ଏକ ଉଜ୍ଜ୍ୱଳ ପରମ୍ପରା ରହି ଆସିଛି । ତାହାର ପ୍ରାଚୀନତମ ନଜୀର ହେଲା ହର ପାର୍ବତୀଙ୍କ ସମ୍ବାଦ ବର୍ଣ୍ଣନାରେ ଶିବଙ୍କୁ ଏକ ବାତକଫଗ୍ରସ୍ତ ବୁଢ଼ାବର ରୂପେ ଚିତ୍ରଣ । ରୀତି ଯୁଗରେ ମଧ୍ୟ ଧନକୃଷ୍ଣଙ୍କଠାରୁ ଆରମ୍ଭ କରି ଯଦୁମଣିଙ୍କ ପର୍ଯ୍ୟନ୍ତ ବହୁ କବିଙ୍କ ରଚନା ହାସ୍ୟରସରେ ସମୃଦ୍ଧ ।

ଆଧୁନିକ ଯୁଗରେ ତାହାର ସାର୍ଥକ ସୂତ୍ରଧର ହେଲେ ପରମ ପ୍ରତିଭାବାନ୍ ଗୋପାଳଚନ୍ଦ୍ର ପ୍ରହରାଜ । ବ୍ୟାସକବି ଫକୀରମୋହନଙ୍କ ପରବର୍ତ୍ତୀ ଓଡ଼ିଆ ଗଦ୍ୟ ସାହିତ୍ୟରେ ହାସ୍ୟରସ ସ୍ରଷ୍ଟା ଗୋପାଳଚନ୍ଦ୍ରଙ୍କ ସ୍ଥାନ ସୁନିର୍ଦ୍ଦିଷ୍ଟ । ଅନନୁକରଣୀୟ ତାଙ୍କର ପ୍ରକାଶଭଙ୍ଗୀ ଓ ଭାଷାର ଶୈଳୀ ।

କେବଳତ ଲେଖାରେ ନୁହେଁ, କଥାରେ ମଧ୍ୟ ସେ ଚିର ରହସ୍ୟପ୍ରିୟ ଥିଲେ । ଦୁନିଆର ଦୁଃସ୍ଥ ବାତାବରଣ ଭିତରେ କେତେଜଣ ଯୋଗ-ଜନ୍ମା ଅନ୍ୟକୁ ହସାଇବା ଓ ମନକୁ ହାଲୁକା ରଖିବାର ଉପାଦାନ ଖୋଜି ପାଇଛନ୍ତି ? କେତେଜଣ ଏତେ ବେଶୀ ହାଲୁକା କରି ଜୀବନକୁ ଦେଖିଛନ୍ତି କି ?

ବହୁ ଘଟଣାରେ ତାହାଙ୍କ ସାନ୍ନିଧ୍ୟ ଲାଭର ସୌଭାଗ୍ୟ ମୋର ଘଟିଥିଲା । ସେହି ସମୟରେ ଓଡ଼ିଶାର ପ୍ରଥମ କଂଗ୍ରେସ ମନ୍ତ୍ରୀ ମଣ୍ଡଳରେ ମୁଁ ପ୍ରଚାର ବିଭାଗରେ କାର୍ଯ୍ୟ କରୁଥାଏଁ । ହଠାତ୍ ଦିନେ ମୋ ଦୁଆରେ ପହଞ୍ଚି ଗୋପାଳବାବୁ କହିଲେ, "If Mahammad does not come to the mountain, the mountain should come to Mahammad."

ସେତିକି ଶୁଣି ମୁଁ ତାଙ୍କ ପାଖରେ ଜଣେ ବାମନ ବା ପର୍ବତ ପାଖରେ ଗୋଟିଏ ମୂଷା ଭଳି ନିଜକୁ ଅନୁଭବ କଲି । କାରଣ ଗୋପାଳବାବୁଙ୍କୁ ମୁଁ ସାକ୍ଷାତ କରିବା ପୂର୍ବରୁ ସେ ସ୍ୱୟଂ ଆସି ମୋର ଦ୍ୱାରସ୍ଥ ହୋଇଛନ୍ତି । ଏଇଭଳି ତାଙ୍କର ପ୍ରତି କଥାରେ ଶ୍ଳେଷ ଓ ହାସ୍ୟରସ ମିଶ୍ରିତ ଥିଲା । ସେସବୁ ଆଜି ମନେପଡ଼ିଲେ ତାଙ୍କ ଆ[illegible] ଦିଶିଯାଉଛି ।

**କାଳନ୍ଦୀଚରଣ ପାଣିଗ୍ରାହୀ**
୨୬ । ୯ । ୭୦



ଜନ୍ମ
ତା ୨୭-୯-୧୮୭୪

ମୃତ୍ୟୁ
ତା ୧୭-୫-୧୯୪୫

—ପ୍ରହରାଜ ପରିକ୍ରମା—

# ସିଏ ପ୍ରହରାଜ କେମିତି ହେଲେ ?

**ନବକୁମାର ଆଚାର୍ଯ୍ୟ**

ସିଏ ପୁରୀଜିଲ୍ଲାର ବୀରଗୋବିନ୍ଦପୁର ଶାସନର ୬ଶ୍ରୀ କଣେଇ ଆଚାର୍ଯ୍ୟଙ୍କ ବଂଶଧର । ଆଚାର୍ଯ୍ୟ ବ୍ରାହ୍ମଣ, ଗୋତ୍ର ଅନୁପାତରେ ମଧ୍ୟ ଗୁରୁଥିଲେ । ଶାସନୀ ବ୍ରାହ୍ମଣ ଶାସନ, ଦର୍ଶନ, ବିଜ୍ଞାନ, ଆୟୁର୍ବେଦରେ କଣେଇ ଆଚାର୍ଯ୍ୟ ଖୁବ୍ ଧୂରନ୍ଧର ଥିଲେ । ଏହାଙ୍କୁ କଟକ ଜିଲ୍ଲାର ସିଦ୍ଧେଶ୍ୱର ପୁର ଜମିଦାର ନିଜ ମାହାଲର ଶାସନ କାର୍ଯ୍ୟପାଇଁ ଅଣାଇ ରଖାଇଥିଲେ; କିନ୍ତୁ ଜମିଦାର ବଡ଼ ବିଳାସପ୍ରିୟ ଓ ଧର୍ମ ପରାୟଣରହି ଓଡ଼ିଶା ବାହାରକୁ ଯାଇ ତୀର୍ଥ ବ୍ରତ ଆଦିରେ ବ୍ୟସ୍ତ ରହୁଥିଲେ । ସେତେବେଳକୁ ଇଷ୍ଟଇଣ୍ଡିଆ କମ୍ପାନୀ କ୍ରମେ ବ୍ୟାପିଯାଉଥାଏ । ଜମିଦାରୀ ପ୍ରତି ପାଞ୍ଚବର୍ଷରେ ଥରେ ନିଲାମ ହୁଏ । ଠିକ୍ ଆଜିକାଲି ଯେମିତି ପାଞ୍ଚବର୍ଷିଆ ଶାସନରେ ମନ୍ତ୍ରୀମାନେ ରହୁଛନ୍ତି, ଜମିଦାରମାନେ ସେତେବେଳେ ସେମିତି ରହୁଥିଲେ । ତାଙ୍କ ମନମୁତାବକ୍ ବିଳାସ ବ୍ୟସନରେ ମଜ୍ଜି ରହି ବିଭିନ୍ନ ପ୍ରକାର ଧନ ସଂଗ୍ରହ କରି ପ୍ରଜାଙ୍କୁ ପୀଡ଼ା ଦେଇ ଏବଭଳି ଶୋଷଣ କରିବା ମନୋବୃତ୍ତି ଧରିଥିଲେ । ସିଦ୍ଧେଶ୍ୱରପୁର ଜମିଦାର ଏମିତି ପାଞ୍ଚବର୍ଷିଆ ନିଲାମ ଧରି ସିଦ୍ଧେଶ୍ୱରପୁର ମାହାଲକୁ ଥରକୁଥର ନିଜ ଅକ୍ତିୟାରରେ ରଖିଆସୁଥିଲେ । କିନ୍ତୁ ପ୍ରଜାମାନେ ଅସନ୍ତୁଷ୍ଟ ହେଉଥିଲେ । କଣେଇ ଆଚାର୍ଯ୍ୟ ଆସି ପ୍ରଥମ ପାଞ୍ଚବର୍ଷ ଚଳାଇଲେ । ଦ୍ୱିତୀୟ ପାଞ୍ଚବର୍ଷକୁ ଜମିଦାରଙ୍କର ଏତେ ଖର୍ଚ୍ଚ ବଢ଼ିଗଲା ଯେ ପ୍ରଜାମାନେ ଟଙ୍କା ଦେଇ ଦେଇ ଥକିପଡ଼ିଲେ । ପୁଣି ଭାରତର ଯେଉଁ ଯେଉଁ ସ୍ଥାନରେ ଜମିଦାର ରହୁଥିଲେ ସେଠିକି ଟଙ୍କା-କଉଡ଼ିସବୁ ଘୋଡ଼ସବାରମାନଙ୍କ ଦ୍ୱାରା ପଠାଇ ପଠାଇ ଥକିଲେ । ଏଣେ ଶାସନ କରିବେ ? ନା-ପ୍ରଜା ପାଳିବେ ? ନା-ଜମିଦାରଙ୍କ

ମନବୋଧ କରିବେ ? ନା- ବାଦଶାଙ୍କର କର ପଇଠ କରିବେ ଯେ-ନିଜେ ଚଳିବେ ? ପୁଣି ଟଙ୍କା ପଇସା ମଧ୍ୟରେ କଉଡ଼ି ପ୍ରଥା ବେଶୀ ଥିଲା । ଫସଲ କର ରୂପରେ ମଧ୍ୟ ମିଳୁଥିଲା । ସେ ଗୋଟିଏ ଦୁଇଟି ବଡ଼ଧରଣର ବେପାର ଆରମ୍ଭ କରିଦେଲେ । ସାତଶହ ଥୋଡ଼ ବଳଦ, ଷାଠିଏଟି ବଳଦ ଗାଡ଼ି ଓ ତିନିଶହଟି ଘୋଡ଼ା ଦ୍ୱାରା କଟକ ଚହଟା ଘାଟ ବାଟେ ଛତିଶ ଗଡ଼ଜାତକୁ ମାଲ୍ ଦବା ନବା କରାଇ ଗୋଟିଏ ପେଣ୍ଠ କଟକରେ ଓ ଆଉଗୋଟିଏ ପେଣ୍ଠ ପୁରୀ ସହରରେ ରଖାଇଲେ । ବେପାରର ମାଲ୍ ସବୁ ହେଲା-ପୁରୀ ଜିଲ୍ଲାରୁ ନଡ଼ିଆ କତା, ଖଡ଼ିକା, ଅଣକଣ୍ଡଂକା, ଗୁଆ, ଲୁଣ, ଇତ୍ୟାଦି ଛତିଶ ଗଡ଼ଜାତକୁ କତାଦଉଡ଼ି ସହିତରେ ଯିବ । ଆଉ କେତେକ ଦରବ ଯାହାକି ଗଡଜାତରେ ନମିଳେ ତାହାଯିବ । କଟକ ଜିଲ୍ଲାରୁ ଲୁଣ, ମସଲା, ଧୋତି, କସ୍ତା, ଗୁନ୍ଦୁଆ, ଖଡି, ପାଟ୍ଟଡ଼, ଗହଣା ଇତ୍ୟାଦି ଓ ସିନ୍ଦୂର, ଠାକୁରଙ୍କ ବିମାନ ନଡ଼ିଆ ଇତ୍ୟାଦି ମଧ୍ୟ । ଗଡ଼ଜାତ ମାନଙ୍କରୁ ଆମଦାନୀ ହେଉଥିଲା—ହଳଦୀ, ସୋରିଷ, ପିଡ଼ିଆ, ଜଡ଼ା, ବାଦାମ, ଝୁଣା, ଚନ୍ଦନପେଡି, ଖଇର ପ୍ରଭୃତି ଯାହାକି ବଣ୍ୟ ସଂପଦ । ଏହି ବେପାର ବେଳେ କାଠଯୋଡ଼ି ଓ ମହାନଦୀରେ ଦୁଇଗୋଟି ଷ୍ଟେଟ ବଡ଼ ବୋଇତ ମଧ୍ୟ ଚଳାଇବା ଆରମ୍ଭ କଲେ । ଭରି ଗଭୀରତା ଓ ବଡ ବଡ଼ କୁମ୍ଭୀର ନଦୀର ଥିଲା ତାତ୍ପର୍ଯ୍ୟ । ଏତେବେଳକୁ ବାରବାଟୀ ଗଡ଼ ଚଉଦଣା ଭାଙ୍ଗି ଥାଏ । ମରହଟ୍ଟା ବେଳ ଆସିଥାଏ । ଏଇଭଳି ବହୁତ ପ୍ରକାର ଯୋଜନା ଆଶ୍ଚର୍ଯ୍ୟ କରିଯାଉଥାନ୍ତି । କିନ୍ତୁ ଜମିଦାରଙ୍କ, ଖର୍ଚ୍ଚକୁ ନିଅଣ୍ଟ । ଏଣେ ସିନ୍ଦୂକ ଖାଲି କଲେ ବଦନାମୀ । ତେଣେ ଜମିଦାର ଅସନ୍ତୁଷ୍ଟ ହେବେ । ଇମିତି ବ୍ୟତିବ୍ୟସ୍ତ ହୋଇ ଶେଷ ପାଞ୍ଚବର୍ଷ ଆଡ଼କୁ ନିଜେ କଟକ ସହରର ଜମି ତୁଳସିପୁର ଅଞ୍ଚଳରୁ ଅନ୍ୟ ଜମିଦାର ଓ ଗଡଜାତ ରାଜାଙ୍କୁ ହସ୍ତାନ୍ତର କରି ଦେଇ ନିମଚଉଡ଼ିଠାରୁ ଖାନନଗର ଲଗାଏତ୍ ସିଦ୍ଧେଶ୍ୱରପୁର ପର୍ଯ୍ୟନ୍ତ, ରଖିଦେଇ ସରକାର ଘରେ ରାଜସ୍ୱକର ଦାଖଲ କରି ନିଜନାମରେ ସିଦ୍ଧେଶ୍ୱରପୁର ମାହାଲ ଧରିନେଲେ । ସେତେବେଳେ ଜମିଦାରୀର ରାଜସ୍ୱ ବା ନିଲାମ କିମ୍ବା ମାଲଗୁଜାରୀ, ସୂର୍ଯ୍ୟାସ୍ତ ପୂର୍ବରୁ ଦାଖଲ ନ କଲେ ନିଜର ମାହାଲ ବା ଜମିଦାରୀ ଫେରି ପାଇବାର ଆଶା ରହୁନଥିଲା । ଜମିଦାରୀରୁ ଯାହା

ଆଦାୟ ତାହାର ବାଏଁ ବାଏଁ ଯାଏ । ଆଚାର୍ଯ୍ୟ ବା ଆଣନ୍ତେ କେଉଁଠୁ ? ଝେଙ୍କେଣୀ ସଙ୍ଗେ ଦେଖିଲେ ସେଥିରେ ଖାଲି ସୁନାଶିଳ, ବାଇଶଟା ମୋହର ମାଠିଆ ଓ କଉଡ଼ି ସାତମାଠିଆ ଥିଲା । ସୁନାର ଦର କିଛି ନଥିଲା । ରୂପାର ଗୁହ୍ୱଦା ବେଶୀ ଥିଲା । ସେ ଗୁଡ଼ାକ ବା ଦେଇ କେଉଁଠୁ ରାଜସ୍ୱ ସୁଝନ୍ତେ ? ଏ ଜମିଦାରଙ୍କ ହାତରେ ଆଉ ଜମିଦାରୀ ରହିଲେ ସାଧାରଣ କଷ୍ଟ ପାଇବେ ଭାବି ନିଜ ନାମରେ ଆଚାର୍ଯ୍ୟ ନିଲାମ ଧରିନେଇ ଜମିଦାରଙ୍କ ପାଖକୁ ଅଯୋଧ୍ୟା ଯାଏ ଖବର ପଠାଇଲେ ଯେ; ମୋର ଗୁରୁସ୍ଥାନୀୟ ମହାଭାଗ ! ଆପଣଙ୍କର ସିଦ୍ଧେଶ୍ୱରପୁର ଜମିଦାରୀର ହିସାବ ସବୁ ହେଲା, ମାହାଲ ନିଲାମ ଶେଷବର୍ଷ ପାଇଁ ଆପଣଙ୍କ ତହବିଲରେ କିଛି ନ ଥିଲା । ଏଣୁ ଗୁଜୁରାଟୀ ବ୍ରାହ୍ମଣପୁତ୍ରମାନଙ୍କ କବଳରୁ ମୁଁ ନିଜ ନାମରେ ଜମିଦାରୀଟି ଆସନ୍ତା ପାଞ୍ଚବର୍ଷ ପାଇଁ ନିଲାମ ଧରିନେଲି । ଆପଣ ଆସିଲେ ଆଉ ସିଦ୍ଧେଶ୍ୱରପୁର ନଆସି ମୋ ମାହାଲରେ ଥିବା ମହୁରି କଚେରୀ ଘରେ ରହିବେ । । ଇତି ।

**ଶ୍ରୀ କଣେଇ ଆଚାର୍ଯ୍ୟ**

ତା ୧୭।୩।୧୭୮

କଟକ ସହର

ନଣ୍ଡାଦେଉଳ

ଇଏ କଣେଇ ଆଚାର୍ଯ୍ୟ ହେଲେ । ସିଦ୍ଧେଶ୍ୱରପୁରର ଜମିଦାର ମାଦେବ ଅଯୋଧ୍ୟାରେ ଏ ଖବର ପାଇ ପୂର୍ବ ଜମିଦାର ନେଇ ଆସିଲେ । ହେଲା ନିଶାପ, ନ୍ୟାୟ, ନିୟମ, ଶେଷକୁ ପ୍ରମାଣ କେଉଁଠି ନା—

---

ପ୍ରକାଶ ଥାଉ କି ପୁରୁଣା ତାଳପତ୍ର ପୋଥି ଅଧାଖଣ୍ଡିଆ ଅବସ୍ଥାରେ ରହିଲେ ଦୋଷ । କେଣୁ ତାହାସବୁ ନଈବଢିରେ ପକାଯାଏ । ସେଇଥିରୁ ଅନେକ ଅଂଶ ସଂଗ୍ରହ କରାଯାଇ, ଲେଖକ ସଂଗ୍ରହ କରିଥିବା ବିଷୟମାନ ମିଳାଇ ଲେଖୁଛି । ଏଥିରେ କଳ୍ପନାର ବିଷୟ କିଛିନାହିଁ । ଏ ସମସ୍ତକୁ ହୁଏତ କଳ୍ପନା ହୋଇପାରେ ।

ଶ୍ରୀ ପରମହଂସନାଥ ମଠର ଚକଡ଼ାରେ । କେତେ ଆଡ଼ୁ ନ୍ୟାୟ ପରାୟଣ ପଣ୍ଡିତ, ମାମଲତ, ମାମଲତକାର ଜମିଦାର ଇତ୍ୟାଦି ଆସିଲେ । ତିନଦିନ ତିନରାତି ନ୍ୟାୟ ଚାଲିଲା । ସେତେବେଳେ ମିଛ କି ଅନ୍ୟାୟ ସପକ୍ଷରେ କହିବା ବା ତରଫଦାରି କଥା କହିବା ଅପେକ୍ଷା ମୃତ୍ୟୁଟା ଅଧିକ ମନେ କରାଯାଉଥିଲା । ଜମିଦାର ଖଣ୍ଡିଏ ତାଳପତ୍ର ଗୁଜା (ଏକ ଚୁକ୍ତିନାମା ପତ୍ର ଯାହାକି ପୂର୍ବ ପାଞ୍ଚ ବର୍ଷ ପାଇଁ କିଛି ଟଙ୍କା ଆଡ଼ଭାନ୍ସ ଦେଇ ଜମିଦାରୀ ନିଜେ ପାଇବେ ବୋଲି ସ୍ୱୀକୃତ ହୋଇଲେ ବୋଲି ଲେଖାଥିବା ତାଳପତ୍ର) ନିଜର ଶେଷ ସମ୍ବଳ ଯେତେବେଳେ ବାହାରକରି ପରମହଂସ ମଠର ଚକଡାରେ ନ୍ୟାୟାଧିକାରୀମାନଙ୍କୁ ଦେଖାଇଲେ, ସେତେବେଳକୁ ଆଚାର୍ଯ୍ୟଙ୍କର ହାଲକ ଶୁଖିଲା ପରି ହେଲାଣି । ଏଣେ ତ ଅନ୍ୟାୟ କଥା କହିବେ ନାହିଁ, ମିଛ (ତାଳପତ୍ର ଗୁଜା) ବୋଲି ତ ତାଳପତ୍ର ଗୁଜା କହୁନାହାଁନ୍ତି-କଣ କରିବେ ? ସେହି ପରମହଂସ ନାଥଙ୍କୁ ମନରେ ଧ୍ୟାନ କରି ଧୈର୍ଯ୍ୟର ସହ ଶେଷ ନିଷ୍ପତ୍ତିକୁ ମାନିନେବାକୁ ପ୍ରସ୍ତୁତ ହୋଇଗଲେ । ତାଳପତ୍ର ଗୁଜାଟିକୁ ଜଣେ ଦେଖି ଅନ୍ୟ ଜଣଙ୍କ ହାତକୁ ବଢ଼ାଇବାରେ ଲାଗିଥାନ୍ତି । ତିନିଶହ ନ୍ୟାୟାଧିକାରୀ । ଜେରା ହେଉଥାଏ, ବହୁତ ରାତି ମଧ୍ୟ ହେଉଥାଏ, ନ୍ୟାୟ ଚାଲିଥାଏ । ଦେହରେ ଆଖିରେ ଆଳସ୍ୟ, ନିଦ୍ରାର ଆସକ୍ତି ଆସୁଥାଏ । କ୍ରମଶଃ ଗୁଜାଟି ହାତରୁ ହାତକୁ ଆସି ଆସି ଆଚାର୍ଯ୍ୟଙ୍କ ହାତରେ ପଡ଼ିଗଲା ମାତ୍ରେ ସେ ତାହା ଅନ୍ୟ ବ୍ୟକ୍ତିଙ୍କ ହାତକୁ ଦେଖିସାରି ବଢ଼ାଇ ଦେବାରେ ସେ ବ୍ୟକ୍ତି ନିଦ୍ରାଗମରେ କ୍ଲାନ୍ତ ହେବାର ଦେଖି ଆଚାର୍ଯ୍ୟ ନିଜେ ସେଇଟି ଚୋବେଇ ଚୋବେଇ ଖାଇଦେଲେ । ଏଣେ ନ୍ୟାୟ ଚାଲିଛି । ଶେଷ ମୁହୂର୍ତ୍ତରେ ଗୁଜାଟିର ଦରକାର ପଡ଼ିଲା । ପ୍ରଥମ ବ୍ୟକ୍ତି ଦ୍ୱିତୀୟ ବ୍ୟକ୍ତିଙ୍କୁ ଏହିଭଳି କ୍ରମରେ ମାଗିବାରେ ଲାଗିଗଲେ । କିନ୍ତୁ ଶେଷ ବ୍ୟକ୍ତି କିଏ ତାହା ଜାଣି ହେଲାନାହିଁ କି ଗୁଜାଟିର ପତ୍ତା ମିଳିଲା ନାହିଁ । ପ୍ରଥମ ଜମିଦାର ହଂସନାଥଙ୍କୁ ସାକ୍ଷୀଦେଇ ତିନିଜଣଙ୍କୁ ସନ୍ଦେହରେ ନିୟମ କରିବାକୁ ପ୍ରସ୍ତାବ କରନ୍ତେ ନ୍ୟାୟାଧିକାରୀ ମାନେ ରାଜି ହୋଇ ଆଦେଶ କରିଲେ । ସେଇ ତିନିଜଣଙ୍କ ମଧ୍ୟରେ ଶ୍ରୀ କଣେଇ ଆଚାର୍ଯ୍ୟ ଥିଲେ । ନିୟମ ହେଲା :— ସୂର୍ଯ୍ୟୋଦୟର ଗୋଟିଏ ମୁହୂର୍ତ୍ତ ପୂର୍ବରୁ ଗୋଟିଏ ଗଧ

ପଶ୍ଚିମ ଦିଗକୁ ମୁହାଁ କରିବ । ପୂର୍ବ ଦିଗକୁ ନିଯୁମ କରିବା ବ୍ୟକ୍ତି ମୁହଁ କରି ଗଧ ଉପରେ ବସି କହିବେ ଯେ; ମୋର ସିଦ୍ଧେଶ୍ୱରପୁର ଜମିଦାରୀରେ ହିଅନ୍ୟ ଦାବୀ ହେଉଛି । ଏବଂ ତାଳପତ୍ର ଗୁଜା ମୁ ଅନ୍ୟଦ୍ୱାରା ବାହାରକୁ ହସ୍ତାନ୍ତର କରିନାହିଁ । ଶେଷର ହେଲା ବେଳକୁ ଆଗ୍ନେୟଙ୍କର ପ୍ରଥମେ ପାଳି ପଡ଼ିଲା । ସେ ନିଯୁମ କରି ଉପରୋକ୍ତ ବିଷୟ କହିସାରିଲା ପରେ ଅନ୍ୟ ଦୁଇଜଣ ମଧ୍ୟ ସେହି ପ୍ରକାରେ କହିଲେ । ତାହାପରେ ସଭା ଭାଙ୍ଗିଲା । ପ୍ରଥମ ଜମିଦାର ସାଆନ୍ତରାଏ ବାଧ୍ୟହୋଇ ମଦୁରାରେ ରହିଲେ । ଆଜି ପର୍ଯ୍ୟନ୍ତ ପରମହଂସ ମନ୍ଦିରରେ ଜାଗର ଯାତ୍ରାର ପ୍ରଥମ ପୂଜା ହରିହର ଭେଟରେ ସାଆନ୍ତରାଏଙ୍କ ବଂଶର ହେଲାପରେ ଦ୍ୱିତୀୟ ପୂଜା ସିଦ୍ଧେଶ୍ୱରପୁର ଜମିଦାର ବଂଶର ହୁଏ । ତୃତୀୟ ପୂଜାପରେ ଆଉ କାହାରି ବିଶେଷ ପୂଜା ପାଇଁ ସୁବ୍ୟବସ୍ଥା ନାହିଁ । ପଣ୍ଡାଏ ଖାଲି ତାଳି ମାରି ଆଜି କାଲିକାର ବିଶିଷ୍ଟ ବ୍ୟକ୍ତିଙ୍କ ମନବୋଧ କରନ୍ତି ।

କଣେଇଁ ଆଗ୍ନେୟ ଏଣିକି ନିଜ ଜମିଦାରୀର ସୀମା ନିରୂପଣ କରାଇବା, ବଡ଼ ବଡ ଆମ୍ବ, ଗୁଆ, ନଡ଼ିଆ, ପଣସ, ଖମାରଘର କଚେରୀ, ରାସ୍ତା, ବଡ଼ ବଡ଼ ପୋଖରୀ, ଶିକ୍ଷା, କୃଷ୍ଣଶାଳୀ ଆଖଡ଼ାଘର, ଭାଗବତଘର, ରାମନବମୀ, ଦୋଳଯାତ୍ରା, ଦଶହରା, ନୂଆଁ, ସିଦ୍ଧେଶ୍ୱରଙ୍କର ବିଗ୍ରହ ସ୍ଥାପନା, ରନ୍ନଯୋଡ଼ି କଳ୍ପବଟର ମହାତ୍ମ୍ୟ ଉଦ୍ଧାର କରିବା, ଇତ୍ୟାଦି ଯେ କେତେଗୁଡ଼ିଏ ସ୍ଥାୟୀ ସଂସ୍କୃତି ବ୍ୟବସ୍ଥା କରିଗଲେ । ସ୍ୱାଙ୍କର ଜମିଦାରୀ ଜଗତ୍ସିଂହପୁରଠାରୁ କାଳିକାପୁର ବାରବୋଡ଼ିଆ ଜଗତପୁରକୁ ନେଇ ପଶ୍ଚିମ କଟକ ସଦର ମଧ୍ୟଭାଗରୁ ବୟାଳିଶ ମୌଜା ସମେତ ଭୁବନେଶ୍ୱର କଟକ ସୀମା ପର୍ଯ୍ୟନ୍ତ, ଏହା ମଧ୍ୟରେ ନଦୀ, ତୋଟା, ପୋଲ, ଜଗନ୍ନାଥ ରାସ୍ତା, ପୋଖରୀ, ମନ୍ଦିର ସମସ୍ତ ଜମିଦାରୀ ଇଲାକାଧୀନ । ଏ ଜମିଦାର ବ୍ୟବସ୍ଥା କରିଗଲେ ଯେ; ବ୍ରିଟିଶରାଜତ୍ୱ ରହୁ ବା ମରହଟ୍ଟା ରାଜତ୍ୱ ହେଉ, କିନ୍ତୁ ଥରେ ଯେତେବେଳେ ଜମିଦାରୀ ଗାଦି ନିଜ ହାତକୁ ଆସିଛି ତାହା ଯେପରି ବଂଶ ପରମ୍ପରା ପର୍ଯ୍ୟନ୍ତ ରହିପାରିବ । ସରକାରୀ କୋର୍ଟ କଚେରୀ

ବର୍ତ୍ତମାନ କଟକ ସହରରେ ଯେଉଁଠି ଅଛି, ତାର ଖଜଣାକର ବ୍ରିଟିଶସରକାର ସିଦ୍ଧେଶ୍ୱରପୁର ଜମିଦାରଙ୍କୁ ଦେଉଥିବେ— ଏବଂ ସିଦ୍ଧେଶ୍ୱରପୁରଠାରୁ କଟକ କଚେରୀକୁ ନିଜ ଜମିଦାରୀ ଇଲାକା ମଧ୍ୟରେ ଜମିଦାର ଯିବେ, ଅନ୍ୟ ଇଲାକା ବାଟେ ପାଦଦେଇ ବା ଯାନବାହାନରେ ଯିବେ ନାହିଁ । ଏହିସବୁ ବ୍ୟବସ୍ଥା କରିବାକୁ ଜମିଦାର ଶ୍ରୀ କରୁଣେଇ ଆଚାର୍ଯ୍ୟଙ୍କୁ ମୋଟେ ପନ୍ଦର ବର୍ଷ ଲାଗିଥିଲା । ଏଥି ମଧ୍ୟରେ ତାଙ୍କର ପାଞ୍ଚଟି ପୁତ୍ର ଓ ଦୁଇ କନ୍ୟା ଭୂମିଷ୍ଠ ହୋଇଥିଲେ । ଏହି ପାଞ୍ଚ ପୁତ୍ର ଅପୂର୍ବ ସୁନ୍ଦର, ବଳିଷ୍ଠ, ଅତିସାହାସୀ ଓ ଅତିଶୟ ବୁଦ୍ଧିମାନ ଥିଲେ । ଏହା ଦେଖିସାରି ଆଚାର୍ଯ୍ୟ ମହାଶୟ ଅତିଶୀଘ୍ର ଏ ଅନିତ୍ୟ କ୍ଷଣିକ ସଂସାରରୁ ଚିରବିଦାୟ ନିମନ୍ତେ ତତ୍ପର ହୋଇ ଉଠିଲେ । ଏତିକବେଳେ ମରହଟ୍ଟାମାନଙ୍କ ନିପାତ ଆରମ୍ଭହେବା, ସିପାହୀ ବିଦ୍ରୋହର ସୃଷ୍ଟି ହେବାର ସୂତ୍ରପାତ ହେବାକୁ ଲାଗିଲା । ଆଚାର୍ଯ୍ୟେ ଦିନେ ସ୍ୱପ୍ନରେ ଗଙ୍ଗାଦର୍ଶନ କରି ତାଙ୍କ କ୍ରୋଡ଼ ଦେଶରେ ଆଶ୍ରୟଲାଭ କରିବା ନିଶ୍ଚୟ, ନିଜ ଇଚ୍ଛାରେ ସମସ୍ତ ଘଟଣା ଆପଣାର ପରିବାର ବର୍ଗଙ୍କୁ ଜଣାଇ ଏକୋଇଶ ଦିବସ ମଧ୍ୟରେ ପୁତ୍ର, ବଧୂ, ନାତି, ନାତୁଣୀ, ବନ୍ଧୁବାନ୍ଧବ, ଅଶ୍ୱ, ହସ୍ତୀ ଘୁମୁକରଣ ଚହଣରେ କଲିକତାଅଭିମୁଖେ ଯାତ୍ରା ଆରମ୍ଭ କଲେ । ସେଠାରେ ସମସ୍ତ ବ୍ୟବସ୍ଥା ସମାପନ କରି ସଭିଙ୍କ ସମୀପରେ ପୂଜା-ହୋମ ଇତ୍ୟାଦି ଓ ଦାନ-ଧର୍ମ-ଭୋଜନ ପ୍ରଭୃତି ସାଧାରଙ୍କୁ ଦେଇ ସାତଟି କଦଳୀଗଣ୍ଡି ଏକତ୍ର ସଂଲଗ୍ନ ଥିବା ଏକ ଭେଳାରେ ଗଙ୍ଗାମାତାଙ୍କ ଗର୍ଭକୁ ଗମନ କଲେ । ସ୍ରୋତସ୍ୱିନୀ ଗଙ୍ଗାଙ୍କ ଅବାରିତ ସ୍ରୋତ ମଧ୍ୟରେ ପ୍ରଳୟଙ୍କରୀ ବାରିରାଶି ଉପରେ ନିଜକୁ ପ୍ରତିଷ୍ଠାକରି ଏହି ମହତ ଉଦ୍ଦେଶ୍ୟ ପ୍ରକାଶ କଲେ ଯେ— "ହେ ମା ଗଙ୍ଗା ଦେବି ! ମୋର ବଂଶ ସୂର୍ଯ୍ୟ ଚନ୍ଦ୍ର ଥିବା ପର୍ଯ୍ୟନ୍ତ ରହିଥାଉ, ମୋ ବଂଶରେ କାହାରି ଧନଗର୍ବ, ଆତ୍ମବଡ଼ିମା, ଓ ପ୍ରତିହିଂସା ପୋଷଣଭାବ ନରହୁ । ମୋ ବଂଶର ସନ୍ତାନମାନଙ୍କ ନିକଟରେ କୌଣସି ଅତିଥି ପହଞ୍ଚିଲେ ସେ କ୍ଷୁଧା ତୃଷାରେ ପ୍ରତ୍ୟାବର୍ତ୍ତନ ନକରୁ— ଏହି ମୋର ବିନତି— ମୋର ହୃଦୟପୂର୍ଣ୍ଣ ପ୍ରାର୍ଥନା ।" ତଦନନ୍ତର ଆପଣାଛୁଏଁ କଦଳୀଗଣ୍ଡି ଯୁକ୍ତ ଭେଳା ଉପରେ ଦଣ୍ଡାୟମାନ ରହି

କୃତାଞ୍ଜଳି ପୂର୍ବକ ହୋଇ ଭଉଁରୀ ମଧ୍ୟରେ ପ୍ରବେଶ କଲେ । ସେଠାରେ ଗଙ୍ଗାଦେବୀ କଦଳୀ ଭେଳାଟିକୁ ଭଉଁରୀ ଚତୁଃପାର୍ଶ୍ୱରେ ସାତଥର ଅତି ସୁନ୍ଦରଭାବେ, ବାରବାର ବୁଲାଇ ଖେଳାଇ ସ୍ୱଅଂଗରେ ଅତଳ ଗର୍ଭରେ ସ୍ଥାନ ଦେଲେ । ତାହାଦେଖି ପରିବାର ବର୍ଗ, ଜ୍ଞାତି କୁଟୁମ୍ବ ଓ ଅନ୍ୟାନ୍ୟ ବ୍ୟକ୍ତି ସକଳ ଏବଂ ସଂଗରେ ନିଆଯାଇଥିବା ଅଧମ ପଶୁମାନେ ମଧ୍ୟ ଜମିଦାରଙ୍କର ଏତାଦୃଶ ଇହକାଳ ସଂବରଣ ଉପଲବ୍ଧି କରି ଅତି ଦୁଃଖରେ କରୁଣ ରୋଦନ କରିବାକୁ ଲାଗିଲେ । ଯାହାକି କଥାରେ ପ୍ରକାଶ କରାଯାଇ ପାରିବ ନାହିଁ । ଏଭଳି ଭାବରେ ସେହି ଦିନଟି ଦାରୁଣ ବେଦନା— ଅକଥନୀୟ ଯନ୍ତ୍ରଣା— ଅସହ୍ୟ କ୍ଷୁଧା ଓ ଉପବାସ, ମଧ୍ୟରେ ବିତାଇଲେ । ତତ୍‌ସହିତ ଉପରେ ପ୍ରଚଣ୍ଡ ରୌଦ୍ରତାପ ଓ ଅତିଶଯ୍ୟ କାକର କୁହୁଡ଼ିରେ ପଡ଼ିରହିବାକୁ ପଡ଼ିଲା । ତାହା ପରଦିନ କଟକ ସଦର ସିଦ୍ଧେଶ୍ୱରପୁରକୁ ବାହୁଡ଼ାଯାତ୍ରା ଆରମ୍ଭ କଲେ ।

ସିଦ୍ଧେଶ୍ୱରପୁରକୁ ପୁତ୍ରମାନେ ଫେରିଆସିବାର କିଛୁଦିନ ଅନ୍ତରରେ ସିପାହୀ ବିଦ୍ରୋହରେ ଜାତୀୟ କ୍ଷତ୍ରିୟମାନଙ୍କ ସପକ୍ଷରେ ଶତ୍ରୁମାନଙ୍କ ବିରୁଦ୍ଧରେ ଢ଼ାଲ ତରଓ୍ୱାଲ ଧରି ଓ ମାହାଲମାନଙ୍କରୁ ବହୁ ବହୁ ବଳିଷ୍ଠ ଗଉଡ଼, ପାଣ, ବାଉରୀ, ଡ଼ମ, ଶଅର ଓ ପାଇକ-ମାନଙ୍କୁ ( ସିଦ୍ଧେଶ୍ୱରପୁର ନିକଟରେ ମଧ୍ୟ ଏକ ପାଇକସାହି ଅବସ୍ଥିତ) ଯୁଦ୍ଧରେ ପୂରାଇ ନିଜେ ଅକ୍ଳାନ୍ତଶ୍ରମ, ଦାନ ଓ ଖର୍ଚ୍ଚାନ୍ତ ହୋଇ ବାହାଦୁରୀ ପାଇଲେ । କେତେ, କେତେ ଆଉ ବହୁତ ପ୍ରକାରେ ସେତେବେଳର ପଦବୀ ଓ ବାହାଦୁରୀ ମିଳିଥିଲା । କିନ୍ତୁ ଅନେକ ବିଷୟ ଉଇ ଖାଇଯାଇଥିବାରୁ ତାଳପତ୍ର ପୋଥିରୁ ପଢି ଏଠାରେ ଉଲ୍ଲେଖ କରିବା ସମ୍ଭବ ହୋଇପାରିଲା ନାହିଁ । ତେବେ ପାଞ୍ଚଟି ପୁତ୍ର ପାଞ୍ଚଟି ପଦବୀରେ ବିଭୂଷିତ ହେଲେ । ଯଥାକ୍ରମେ ଚୌଧୁରୀ ରାଏଗୁରୁ (ରାଜଗୁରୁ), ପାତ୍ରଷି (ପାଟଯୋଷୀ), ପ୍ରହରାଜ ଓ ଶେଷରେ ସାମନ୍ତରାୟ ।

ମାତ୍ର କଣେଇ ଆର୍ଯ୍ୟସେଁ ତାଙ୍କ ପୁତ୍ରମାନଙ୍କର ଉପରୋକ୍ତ ପଦବୀ ଗୁଡ଼ିକ ଶୁଣିପାରିଲେ ନାହିଁ । ଆର୍ଯ୍ୟସେଁଙ୍କର ନିମ୍ନଲିଖିତ ପ୍ରକାରେ ପୁତ୍ରମାନେ ବିଭିନ୍ନ ପଦବୀରେ ଭୂଷିତ ହୋଇଥିଲେ ।

୧ ଛଟେଇ ଆଚାର୍ଯ୍ୟ

୨ ଜନ୍ମେଜୟ ଆଚାର୍ଯ୍ୟ

- ଶ୍ରୀକର ପ୍ରହରାଜ
  - ଭାଗିରଥୀ ପ୍ରହରାଜ ନିଃସନ୍ତାନ ଥିଲେ
    - ପୋଷ୍ୟପୁତ୍ର ଗ୍ରହଣ କଲେ ନରସିଂହ ପ୍ରହରାଜଙ୍କୁ
- ୩ ହଳଧର ଆଚାର୍ଯ୍ୟ
  - ଦାମୋଦର ଆଚାର୍ଯ୍ୟ
    - ନରସିଂହ ଆଚାର୍ଯ୍ୟ ପୋଷ୍ୟପୁତ୍ର ହୋଇ ଗଲେ ଭାଗିରଥୀ ପ୍ରହରାଜଙ୍କ ନିକଟକୁ
    - ୪ ଚୂଳାମଣି ଆଚାର୍ଯ୍ୟ
      - ଅଭିମନ୍ୟୁ ଜନ୍ମିତ ପୁତ୍ର ନାହିଁ
      - ୫ ଉଦୟନାଥ ଆଚାର୍ଯ୍ୟ ପୋଷ୍ୟପୁତ୍ର ଫକୀର ଦିବ୍ୟଙ୍କ ପ୍ରିଭିକାଉନ୍‌ସିଲ୍ କେସ୍‌ରେ ବିଲାତଠାରେ ସ୍ନେହପୁତ୍ର ବୋଲି ପ୍ରମାଣିତ
        ୧୯୩୧ / ନ ୧୭ କେସ୍ ଆଇନ ବହି ଦେଖନ୍ତୁ
- ସୁଦାମଚରଣ ରାଜଗୁରୁ
- କପିଳେଶ୍ୱର ଚୌଧୁରୀ
- ରାଧାଶ୍ୟାମ ପାଣିଗ୍ରାହୀ

(Children of ନରସିଂହ ପ୍ରହରାଜ:)

- ଗୋପାଳ
  - ଚନ୍ଦ୍ରଶେଖର ମୃତ
    - ରେବତୀକାନ୍ତ, ଉମାକାନ୍ତ
- ଉଦୟନାଥ ପୋଷ୍ୟପୁତ୍ର ହୋଇ ଗଲେ
- ବାଂଛାନିଧି
- ଲୋକନାଥ
- ବଟକୃଷ୍ଣ
- ରାଜକିଶୋର
- ଫକୀର ଦିବ୍ୟ
  - ପଦ୍ମନାଭଙ୍କୁ ପୋଷ୍ୟପୁତ୍ର କରିନେଲେ

(Children of ଉଦୟନାଥ ଆଚାର୍ଯ୍ୟ:)

- ଗଜେନ୍ଦ୍ର କୁମାର ଆଚାର୍ଯ୍ୟ
- ପଦ୍ମନାଭ ଆଚାର୍ଯ୍ୟ ପୋଷ୍ୟପୁତ୍ର ହୋଇ ଗଲେ
- ଚକ୍ରଧର ଆଚାର୍ଯ୍ୟ ସତ୍ୟଭାମାପୁରରୁ ପୋଷ୍ୟପୁତ୍ର ହୋଇ ଗଲେ
- ୬ ହେମଚନ୍ଦ୍ର

ନରସିଂହ ପ୍ରହରାଜଙ୍କର ପୁଅ ଝିଅ ହୋଇ ସତରଗୋଟି ହୋଇଥିଲେ । ଗୋଟିଏ ଝିଅ ପରେ ରାଏ ବାହାଦୁର ସାହିତ୍ୟ ବିଶାରଦ ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ, ରାଏସାହେବ ସ୍ୱର୍ଗତ ଶ୍ରୀ ଉଦୟନାଥ ପ୍ରହରାଜ, ବାଞ୍ଛାନିଧି ପ୍ରହରାଜ, ଲୋକନାଥ ପ୍ରହରାଜ, ବଟକୃଷ୍ଣ ପ୍ରହରାଜ ଓ କନିଷ୍ଠ ରାଜକିଶୋର ପ୍ରହରାଜ, ଏଭଳି ଛଅଗୋଟି ପୁତ୍ରଙ୍କ ମଧ୍ୟରୁ ରାଏ ସାହେବ ଉଦୟନାଥ ପ୍ରହରାଜଙ୍କୁ ନରସିଂହ ପ୍ରହରାଜଙ୍କ ବଡଭାଇ କୁଳମଣି ଆଚାର୍ଯ୍ୟ ମଧ ଏହି ପ୍ରାସାଦ ମଧ୍ୟରେ ପୋଷ୍ୟପୁତ୍ର ରୂପେ ଗ୍ରହଣ କଲେ । ଏଥିପାଇଁ ଉଦୟନାଥ ପ୍ରହରାଜଙ୍କୁ ନରସିଂହ ପ୍ରହରାଜ ବେଶୀ ସ୍ନେହ କରୁଥିବାରୁ ନିଜ ସମ୍ପତ୍ତିର କସମତ୍ ଆଠଅଣାରୁ ସିଦ୍ଧେଶ୍ୱର ମାହାଲରୁ ଦୁଇଅଣା ଦେଲେ । ଏଣେ କୁଳମଣିବାବୁଙ୍କର ବଡଭାଇ ଭାଗ ଆଠଅଣା ଓ ନରସିଂହବାବୁ ସ୍ନେହପୁତ୍ର ନିମିତ୍ତ ଦେବା ଦୁଇଅଣା ଏଭଳି ଦଶଅଣା ସଂପତ୍ତି ଉଦୟନାଥବାବୁ ଭୋଗ କଲେ । ଏହା ମଧ୍ୟରେ କୁଳମଣି ଆଚାର୍ଯ୍ୟଙ୍କର ସ୍ତ୍ରୀ ଉଦରରୁ ଅଭିମନ୍ୟୁ ନାମଧେୟ ଏକ ସନ୍ତାନ ଜାତ ହେଲେ । ଏଣୁ ଉଦୟନାଥ ଓ ଅଭିମନ୍ୟୁ ଦଶଅଣା ସଂପତ୍ତିର ମାଲିକ ହେଲେ । ଅବଶିଷ୍ଟ ଛ'ଅଣା ସଂପତ୍ତିରେ ଗୋପାଳବାବୁ ପ୍ରଭୃତି ଚାରିଭାଇ ରହିଲେ । ପୁଣି ଲୋକନାଥବାବୁଙ୍କୁ ଏହି ସିଦ୍ଧେଶ୍ୱରପୁରର ଅନ୍ୟ ଜମିଦାର ପୋଷ୍ୟପୁତ୍ର କରିନେଲେ ।

ଏଠାରେ ଦେଖିବାକୁ ଗଲେ ନରସିଂହ ଆଚାର୍ଯ୍ୟ ପୋଷ୍ୟପୁତ୍ର ହୋଇଯିବାରୁ ସେ ନରସିଂହ ପ୍ରହରାଜ ବୋଲାଇଲେ । ତେଣୁ ତାଙ୍କ ପୁତ୍ର ଗୋପାଳଚନ୍ଦ୍ର ଗୋପାଳ ପ୍ରହରାଜ ନାମରେ ନାମିତ ହେଲେ । ଉଦୟନାଥ ପ୍ରହରାଜ ନରସିଂହ ପ୍ରହରାଜଙ୍କର ପୁତ୍ର ହେଲେ ମଧ୍ୟ ଅଙ୍ଗୀକାର ପଦବୀରେ ରହିଲେ । କୁଳମଣି ଆଚାର୍ଯ୍ୟଙ୍କର ପୋଷ୍ୟପୁତ୍ର ଶ୍ରୀ ଉଦୟନାଥ ପ୍ରହରାଜ ଦଦେଇଙ୍କ ପୋଷ୍ୟପୁତ୍ର ହେବାରୁ ସେ ଉଦୟନାଥ ଆଚାର୍ଯ୍ୟ ବୋଲାଇଲେ । ଉଦୟନାଥ, ଗୋପାଳଙ୍କର ଆତ୍ମା ଏକ ବୋଲି କହିଲେ ଚଳୁଥିଲା । ଗୋପାଳ ପ୍ରହରାଜ ତାଙ୍କର ମା ପେଟର ଏଇ ଭାଇ ଉଦୟନାଥଙ୍କୁ ଅଶେଷ ଆଦର ଓ ସ୍ନେହ ମଧ୍ୟ କରୁଥିଲେ । ନରସିଂହ ପ୍ରହରାଜ ନିଜ ପୁତ୍ର କନ୍ୟାମାନଙ୍କୁ ପୁରୀ ଜିଲ୍ଲାର ବଡ ବଡ ଶାସନ ଓ ବିଶୁଦ୍ଧ ବ୍ରାହ୍ମଣ ଘରମାନଙ୍କରେ ବିବାହ ଦେଇଥିଲେ ।

ପୁତ୍ରମାନଙ୍କୁ ଗରିବ ବ୍ରାହ୍ମଣଘରୁ ଝିଅ ଆଣି ସେମାନଙ୍କ ସହିତ ପାଣି-ଗ୍ରହଣ କରାଇଥିଲେ ଏବଂ ଆପଣା ଝିଅଙ୍କୁ ଧନୀଘର ଦେଖି ବିବାହ ଦେଉଥିଲେ । ସେକାଳର ପ୍ରଥା ଏହିଭଳି ଭାବରେ ପ୍ରଚଳନ ଥିଲା । ଆମର ପ୍ରଥମ ବର୍ଣ୍ଣବୋଧର ରଚୟିତା ଶ୍ରୀ ଦଇତ୍ୟାରି ନନ୍ଦଙ୍କୁ ନରସିଂହ ପ୍ରହରାଜଙ୍କର ଶ୍ରୀମତୀ ଅପସରା ଦେବୀ ନାମ୍ନୀ ଏକ କନ୍ୟା ପୁରୀ ଜିଲ୍ଲାସ୍ଥିତ ସିନ୍ଦୂରପଦାରେ ବିବାହ କରିଥିଲେ । ତାଙ୍କର ଜ୍ୟେଷ୍ଠପୁତ୍ର ଶ୍ରୀ ପ୍ରାଣକୃଷ୍ଣ ନନ୍ଦ ।

କୁଳମଣି ଆର୍ଯ୍ୟଙ୍କ ଜନ୍ମିତପୁତ୍ର ଅଭିମନ୍ୟୁ ପ୍ରକୃତରେ ଅଭିମନ୍ୟୁ ଭଳି ହୋଇଥିଲେ । ସେ ଥିଲେ ଉଚ୍ଚରେ ଛଅ ଫୁଟଛଅ ଇଞ୍ଚ, ପାଚିଲା ଆମ୍ବ ରଙ୍ଗର ଦେହର କାନ୍ତି । ଯାହା କଥାରେ କହନ୍ତି ଶାଳୁଆ ଗଛଭଳି ସିଧାସଳଖ, ସେ ସେମିତି ସୁଗଠିତ୍ ଥିଲେ । କଟି ଭାଗଠାରୁ ଛାତି ବହୁତ ବିସ୍ତୃତ ଥିଲା । ତାଙ୍କ ମୁଣ୍ଡରେ ଏତେ କେଶ ଥିଲା ଯେ, ତାହା ତାଙ୍କ ଗୋଡ ପେଣ୍ଡା ପର୍ଯ୍ୟନ୍ତ ଲମ୍ବି ଥିଲା । ଇଏଥିଲେ ଶାସନ କାର୍ଯ୍ୟରେ ଧୂରନ୍ଧର । ସତର ପ୍ରକାର ଘୋଡା ସ୍ୱାଙ୍କର ଥିଲା । କୁକୁର, ଘୋଡା, ଗାଈଗୋରୁଙ୍କ ପ୍ରତି ତାଙ୍କର ଖୁବ ଯତ୍ନ ଓ ସଉକ୍ ଥିଲା । ଆମ କଟକ ଜିଲ୍ଲାରେ ଜଗତ୍‌ସିଂହପୁର, ଗୋବିନ୍ଦପୁର ଓ କଟକ ସଦର ଅଞ୍ଚଳରେ ଜାଈନିଆ ଦଳ ଖୁବ କମ ଥିବାରୁ ତାହାକୁ ବୃଦ୍ଧି କରାଇଥିଲେ । ଗୃହରୁ ବାହାରକୁ ଯାତ୍ରା କରିବା ପୂର୍ବରୁ ଦୁଇଟି ଗୋଟିପୁଅ ସ୍ୱାଙ୍କ ଆଗରେ ସଙ୍ଗୀତ ଗାନ କରୁଥିଲେ । ସେ ନିଜର ବଡ଼ଭାଇ ଉଦୟନାଥବାବୁଙ୍କୁ ସମ୍ପୂର୍ଣ୍ଣଭାବେ ଜମିଦାରୀ ଭାର ଛାଡ଼ି ଦେଇଥିଲେ । ପଞ୍ଚ ଦଶଅଣା କିସମତ୍‌ରେ ଦୁଇଭାଇ । ଏମାନଙ୍କର ସିଦ୍ଧେଶ୍ୱରପୁର ମାହାଲରେ ଥିଲା ଜଗତ୍‌ସିଂହପୁରର ସୁଜଙ୍ଗଠାରୁ ମରିଚଆପଦା ଯାଏ, ଗୋବିନ୍ଦପୁର, ସରିତପୁଆଁ, ବୃନ୍ଦୁଲ, ବରାଳ ଇତ୍ୟାଦି ବସ୍ୟାଳିଶ ମୌଜା, କମାପୁର, ପାଇକସାହି, ଦଣ୍ଡୁଆସିପଡା, ପ୍ରହରାଜପୁର, ବୋଧପୁର, ସମପୁର, ସିଂହାଳା, ଦାମୋଦରପୁର, ନିମାଇସାପୁର, ବିରିବାଟି, ରାଜହଂସ, ସଫିପୁର, ପରମହଂସ, ମହୁରୀ, ରଘୁନାଥପୁର ମାହାଲର ବମୁଣ୍ଡି, ଅଥଙ୍ଗା, କାଇଜଙ୍ଗା, ବରଡା, ମଧ୍ୟଶାସନ, ଉତ୍ତରଶାସନ, ଇତ୍ୟାଦି ପଶ୍ଚିମରେ ବିରିବାଟିଠାରୁ

ଗୃଞ୍ଜାମ୍‌ଗଞ୍ଜ ମକଦମି ପୋଡ଼ାପୋଖରୀ, ଶିଖରପୁର, ଯୋବ୍ରାର କିଛି ଅଂଶକୁ ନେଇ ଖାନନଗର, ତେଲେଙ୍ଗାବଜାର, କଲେକ୍ଟରଏଟକୁ ନେଇ ପୁରୁଣା ଅଦାଲତଠାରୁ ତୁଳସୀପୁରରୁ କିଛି ଅଂଶ, କାଠଯୋଡ଼ି ନଦୀ, କୁଆଖାଇ ନଦୀ, ବାରଙ୍ଗ ପର୍ଯ୍ୟନ୍ତ, ଗଣପୁର, ପ୍ରତାପନଗରୀ, କାଜିପାଟଣା, ସୁଭଦ୍ରାପୁର, ଗୋପାଳପୁର, ତେଲଂଗାପେଣ୍ଠ, ଖଣ୍ଡେଇତା, ଅଡ଼ାଳିଆ, ଉତ୍ତମାପୁର, ଦେଉଳ, ଦହ୍ୱାଗାଁ, ଶୁଣୁଆ, ସମେତ ପୁରୀଜିଲ୍ଲା ସୀମା ପର୍ଯ୍ୟନ୍ତ ।

ଦେଉଳ, ଦହ୍ୱଗାଁ, ବରମପୁର, ଏରଣ୍ଡ, ନଅରପଦା, ତେଲଙ୍ଗାପେଣ୍ଠ, ନଛିପୁର ଇତ୍ୟାଦି— ଏହା ବ୍ୟତୀତ ଅନ୍ୟାନ୍ୟ ସ୍ଥାନମାନଙ୍କରେ ସଂପତ୍ତି ମାହାଲଥିଲା । କଟକର ବିହାରୀଲାଲ ପଣ୍ଡିତ ଏହାଙ୍କଠାରୁ ସଂପତ୍ତି ପାଇଥିଲେ । କଲେକ୍ଟରଏଟ୍ ଓ କାଠଯୋଡ଼ି ଉପରେ ହୋଇଥିବା ରେଲପୋଲ ଏବଂ ପୁରୁଣା ଅଦାଲତର ଖଜଣା ପଥକର ପ୍ରଭୃତି ବ୍ରିଟିଶଗଭର୍ଣ୍ଣମେଣ୍ଟ ଦେଉଥିଲେ । ଅଭିମନ୍ୟୁ ଆଚାର୍ଯ୍ୟ ଓ ଉଦୟନାଥ ଆଚାର୍ଯ୍ୟ, କୁଳମଣି ଆଚାର୍ଯ୍ୟଙ୍କ ପରେ କ୍ଷମତା ବହନ କରିଥିଲେ ଏବଂ ନରସିଂହ ପ୍ରହରାଜ ଥିବା ପର୍ଯ୍ୟନ୍ତ ତାଙ୍କଠାରୁ ତାଲିମ ପ୍ରାପ୍ତ ହେଉଥିଲେ । ନରସିଂହ ପ୍ରହରାଜଙ୍କର ଜ୍ୟେଷ୍ଠପୁତ୍ର ଗୋପାଳ ପ୍ରହରାଜ ଖୁବ୍ ପାଠପଢ଼ି ମହାପଣ୍ଡିତ ହେଲେ । ସେ ମଧୁବାରିଷ୍ଟରଙ୍କ ପରେ ଓଡ଼ିଶାରେ ଜଣେ ବିଶିଷ୍ଟ ଆଇନଜ୍ଞ ହିସାବରେ ନାମ ଅର୍ଜନକଲେ । ଏଥିପାଇଁ ସଂପତ୍ତିବାଡ଼ି, ସାମାଜିକ କି ସଂସ୍କୃତିକ— ପୂର୍ବପ୍ରଚଳିତ ପଦ୍ଧତିରେ ଯୁଆଙ୍କର ଭାଗ କମ୍ ରହିଲା । ଏ ସବୁକିଛିରେ ଭାଗନନେଇ ଓ ଏକାନ୍ନ ପରିବାରଟିକୁ ଭାଇଭାଗରେ ଭିନ୍ନ ଭିନ୍ନ ନକରି ଗୋପାଳ ଚନ୍ଦ୍ର ପ୍ରହରାଜ ଆପଣାର ଗୋଟିଏ ଅଲଗା ବଙ୍କ ଖଞ୍ଜା ନିର୍ମାଣ କଲେ ଖଣ୍ଡିଆ ମୁଣ୍ଡରେ । ଏହି ବଂଶର ମହାତ୍ମ୍ୟ ବଳରେ ସେ ସୁବିଖ୍ୟାତ ସର୍ବଜନାଦୃତ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ଅଭିଧାନ ରଚନା କରି ଓଡ଼ିଆ ଜାତିର ଓ ଓଡ଼ିଆ ଭାଷାର ଟେକ ସାରପୃଥିବୀରେ ରଖିବା ସଙ୍ଗେ ସଙ୍ଗେ ଓଡ଼ିଆ ଜାତିକୁ ପରିଚିତ କରାଇଦେଲେ । କିନ୍ତୁ ଏଥିପୂର୍ବରୁ ଓଡ଼ିଶାର ଲୋକେ ଓଡ଼ିଆ, ଏବଂ ଓଡ଼ିଆ ଗୋଟିଏ ଭାଷା ଅଛିବୋଲି ସାରା ଭାରତରେ ଓ ପୃଥିବୀରେ ମଧ୍ୟ ଜଣାପଡ଼ି ନଥିଲା । ମାତ୍ର

ଭାରତର ସର୍ବତ୍ର ଜଣାଥିଲା, ଓଡ଼ିଶା ହେଉଛି ଜଗନ୍ନାଥଙ୍କର ଦେଶ । କୁଳମଣି ଆଚାର୍ଯ୍ୟ, ନରସିଂହ ପ୍ରହରାଜ ଓ ତାଙ୍କ ସନ୍ତାନମାନଙ୍କ ପର୍ଯ୍ୟନ୍ତ ସିଦ୍ଧେଶ୍ୱରପୁର ସ୍ୱର୍ଗର ସମ୍ମାନ ଲାଭ କରିଥିଲା । କାହାରି ମନରେ ହିଂସା, ଦ୍ୱେଷ, କ୍ରୋଧ, ରାଗ, ଲେଶମାତ୍ର ନଥିଲା । ସେମାନଙ୍କ ଚରିତ୍ରରେ ଦୟା, କ୍ଷମାହିଁ ମହାପ୍ରାଣ ହୋଇ ଉଠିଥିଲା । ଅତିଥି ଦେଶ ବିଦେଶରୁ ଆସି ସମ୍ମାନିତ ହେଉଥିଲେ । ପାଣ୍ଡିତ୍ୟଚର୍ଚ୍ଚା ଚାଲିଥିଲା । ଦୋଳ ଦଶହରା, ସୁନିଆଁ, ଚନ୍ଦ୍ରାପୂର୍ଣ୍ଣିମା, ଶୀତଳଷଷ୍ଠୀ ବାରମାସରେ ତେରପର୍ବ ଏଠାରେ ପାଳିତ ହେଉଥିଲା । କେତେ ଲୋକ ଆସୁଥାନ୍ତି— କିପରି ଖାଉଥିଲେ ଯାଉଥାନ୍ତି— ତାର ହିସାବ କେହି ରଖୁନଥିଲେ । ଅବା କେଉଁମାନେ ତାହା ଦେଉଛନ୍ତି ତାହାମଧ୍ୟ ଅଜଣାଥିଲା । ଦୁର୍ଗାପୂଜା ଷୋଡଶଦ୍ଦିବସ ବ୍ୟାପୀ ଚାଲିଥିଲା । ଆଖଡ଼ା ଓ ଭାଗବତ ଟୁଙ୍ଗୀମାନଙ୍କରେ ସର୍ବସାଧାରଣ ଆଲୋଚନାଚକ୍ର ଚାଲିଥିଲା । ଅନ୍ୟାୟ, ଅତ୍ୟାଚାର ଖୁବ୍ କ୍ୱଚିତ୍ ଦେଖାଗଲେ ସେଥିପାଇଁ ଅତି କଠୋର ଶାସ୍ତିର ବିଧାନ ଥିଲା ଏବଂ ନିରପେକ୍ଷ ବିଚାର ହେଉଥିଲା । ଜମିଦାର ଓ ପ୍ରଜାଙ୍କ ମଧ୍ୟରେ ରଙ୍ଗ-ରହସ୍ୟ-ଥଟ୍ଟା-ପରିହାସ ମଧ୍ୟ ଦେଖିବାକୁ ମିଳୁଥିଲା । ଏ ସବୁ ସିଦ୍ଧେଶ୍ୱରପୁରର ମହାତ୍ମ୍ୟ ତଥା କଣେଇ ଆଚାର୍ଯ୍ୟଙ୍କର ଧର୍ମବଳର ପରିଣତି ବୋଲି କହିବାକୁ ହେବ ।

ଉଦୟନାଥଙ୍କ ଜ୍ୟେଷ୍ଠ ପୁତ୍ର ଗଜେନ୍ଦ୍ର କୁମାର ଆଚାର୍ଯ୍ୟ । ମହାତ୍ମାଗାନ୍ଧି ୧୯୨୭ ମସିହାରେ ଯେତେବେଳେ କଟକ ସଭାକୁ ଆସି ନରସିଂହ ପ୍ରହରାଜଙ୍କ ନିମଚଉଡ଼ି ଘରେ ରହିଥିଲେ ତାହା ବର୍ତ୍ତମାନ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଘର । କାଠଯୋଡ଼ି ନଦୀ ଗଜେନ୍ଦ୍ର କୁମାରଙ୍କ ଜମିଦାରୀ ସ୍ୱତ୍ତ୍ୱ ଥିବାରୁ ତାଙ୍କ ବଡ଼ଦେଇ ଗୋପାଳ ପ୍ରହରାଜଙ୍କ ପରାମର୍ଶ କ୍ରମେ ଉକ୍ତ ନଦୀ ବାଲି ଉପରେ ଗାନ୍ଧିମହାତ୍ମାଙ୍କୁ ସଭା କରିବା ନିମନ୍ତେ ଅନୁମତି ପ୍ରଦାନ କରିଥିଲେ । କଟକ ସହରରେ ବ୍ରିଟିଶ ସରକାର ମହାତ୍ମାଗାନ୍ଧିଙ୍କୁ ସଭା କରିବା ନିମନ୍ତେ ସେତେବେଳେ ବିରୋଧ କରିଥିଲେ ।

ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପୁତ୍ର ଚନ୍ଦ୍ର ଶେଖର ପ୍ରହରାଜ ଆଜି ଆଉ ଇହଜଗତରେ ନାହାନ୍ତି । ବର୍ତ୍ତମାନ ଉଦୟନାଥ ବାବୁଙ୍କର

କେବଳ ତିନିଗୋଟି ସନ୍ତାନ ଯଥା ଗଜେନ୍ଦ୍ର କୁମାର ଆଚାର୍ଯ୍ୟ, ପଦ୍ମଲଭ ଆଚାର୍ଯ୍ୟ ଓ ଚକ୍ରଧର ଶତପଥୀ । ଅତଏବ ଗୋପାଳ ଚନ୍ଦ୍ର ଓ ଉଦୟନାଥ ଏକ ଗୃହରେ ପୋଷ୍ୟପୁତ୍ର ନାମରେ ଭୂଷିତ ହୋଇ ପ୍ରହରାଜ ଇତ୍ୟାଦି ପଦବୀମାନ ଲାଭ କରିଥିଲେ । କିନ୍ତୁ ପ୍ରକୃତରେ ଏମାନେ ଅରଜନାଲ ଆଚାର୍ଯ୍ୟ ଅଟନ୍ତି । ୰ରାୟବାହାଦୁର ଚିନ୍ତାମଣି ଆଚାର୍ଯ୍ୟ ଏମାନଙ୍କ କୁଟୁମ୍ବ ଥିଲେ । ସ୍ୱର୍ଗତ ମୁରଲୀଧର ଆଚାର୍ଯ୍ୟ ଚୌଧୁରୀ ଥିଲେ, ମୋଟର ସାଇକେଲ ଆକ୍‌ସିଡେଣ୍ଟରେ ସମ୍ବଲପୁର ଇଲେକ୍ଟ୍ରୀ ସପ୍ଲାଇ କମ୍ପାନୀ କାର୍ଯ୍ୟରେ ମୃତ୍ୟୁବରଣ କରିଛନ୍ତି । ଏହାଙ୍କ ଭଗିନୀପତି ଭେଡାର ରାଏସାହେବ ୰ଚୌଧୁରୀ ରାଧାନାଥ ମିଶ୍ର ଥିଲେ । ସିଦ୍ଧେଶ୍ୱରପୁର ବଂଶର ପରିଚୟ ଭାରତରେ ବଡ ବଡ ସ୍ଥାନରେ ଓ ସାଧାରଣ ସ୍ଥାନରେ ମିଳିଥାଏ । ପ୍ରପର ସିଦ୍ଧେଶ୍ୱରପୁର ଆଖପାଖ ଅଞ୍ଚଳର ପ୍ରଜାମାନେ ନିଜଘର ସିଦ୍ଧେଶ୍ୱରପୁର ବୋଲି ପରିଚୟ ଦେଇ ଏବେ ଗର୍ବ ଅନୁଭବ କରୁଛନ୍ତି । ଗୋପାଳ ପ୍ରହରାଜଙ୍କ ପ୍ରକୃତ ପରିଚୟ ଯେଉଁଠି ମିଳୁଛି ସେଠାରେ ତାଙ୍କ ଅନ୍ତରଙ୍ଗ ଭାଇ ଉଦୟନାଥଙ୍କ ନାମ ବରାବର ରହିଆସୁଛି । ଏହାପରେ ଏ ବଂଶରେ ହାସ୍ୟ ରହସ୍ୟ ସାହିତ୍ୟ କିପରି ସ୍ଥାନ ପାଇଥିଲା, ରାଏ ରାଧାନାଥ ରାୟ, ଫକୀରମୋହନ ସେନାପତି ଇତ୍ୟାଦି ସାହିତ୍ୟିକମାନେ ଏହି ବଂଶକୁ କିପରି ସ୍ୱାଗତ କରିଛନ୍ତି, ନଅଙ୍କ ଦୁର୍ଭିକ୍ଷ ସମୟରେ କିପରି କୂଳମଣି ଆଚାର୍ଯ୍ୟ ବ୍ୟବସ୍ଥା କରିଥିଲେ ଆହୁରି ଭାରତରେ କେତେକ ସ୍ଥାୟୀ ଧର୍ମ ମଣ୍ଡପ ସ୍ଥାପନ ଆଜି ନରସିଂହ ପ୍ରହରାଜ କରିଥିଲେ । ଏହାଙ୍କ ମାହାଲମାନଙ୍କରେ ପର୍ବ ପର୍ବାଣିରେ ରାମାୟଣ ପାଠ ଓ ଆଲୋଚନା ଅତି ଭକ୍ତି ଓ ପବିତ୍ର ଭାବେ ହେଉଥିଲା । ସେଠାରେ ଅଜଣା ବ୍ୟକ୍ତି କଟୋଉପିନ୍ଧି କିପରି ଏହି ରାମାୟଣ ପାଠ ଶୁଣିବାକୁ ବସୁଥିଲା ତାହାସବୁ ଏହି ବଂଶାବଳୀ ପୋଥିରେ ଉଲ୍ଲିଖିତ ହୋଇଅଛି । ଏସବୁ ଅଧ୍ୟୟନ ସମୟ ସାପେକ୍ଷ— ବର୍ତ୍ତମାନ ପାଇଁ ଏତିକି ।

# ସ୍ୱର୍ଗତ ପ୍ରହରାଜ

## ଆତ୍ମଜୀବନୀ

**ମୋ ବାଲ୍ୟସ୍ମୃତି**—କଟକ ଜିଲାର କୋଦଣ୍ଡା ପ୍ରଗଣା ଅନ୍ତର୍ଗତ ସିଦ୍ଧେଶ୍ୱରପୁର ଗ୍ରାମରେ ମୋ ପୈତୃକ ବାସଗୃହରେ ତା ୨୭।୯।୭୪ ସାଲରେ ମୁଁ ଜନ୍ମଗ୍ରହଣ କରିଥିଲି । ମୋ ମାତୃଦେବୀ ବହୁ ସନ୍ତାନବତୀ ଥିବାରୁ ମୁଁ ଶିଶୁ ଅବସ୍ଥାରେ ମୋ ଜ୍ୟେଷ୍ଠ ପିତୃବ୍ୟ ( ସ୍ୱର୍ଗୀୟ ଶ୍ରୀ କୁଳମଣି ଆଚାର୍ଯ୍ୟ ) ଓ ଦେଠେଇଙ୍କ ଦ୍ୱାରା ଲାଳିତ ପାଳିତ ହୋଇଥିଲି । ମୋତେ ତିନବରଷ ବୟସ ହେବା ସମୟରେ ମୋର ଜ୍ୟେଷ୍ଠ ପିତୃବ୍ୟଙ୍କର ବିୟୋଗ ଘଟିଥିଲା । ତାଙ୍କ ସଙ୍ଗରେ ଆମ ପରିବାରର ସମସ୍ତେ ଜଗନ୍ନାଥ ଦର୍ଶନକୁ ପୁରୀ ଯାଇଥିଲୁଁ । ତେଣୁ ଫେରି ତାଙ୍କର ଓଲଉଠା ହେଲା ଓ ସେଥିରେ ସେ ଇହଧାମ ପରିତ୍ୟାଗ କଲେ । ମୁଁ ଯେତେଦୂର ମନରେ ସେ ସମୟର ଚିତ୍ର ଆଙ୍କି ପାରୁଛି, ଦଦେଇଙ୍କ ମୁହଁ ଗୋଲ ଓ ତାଙ୍କ ମୁହଁରେ ( କେଉଁ ଅଂଶରେ ମୋର ମନେ ହେଉନାହିଁ ) ଗୋଟିଏ ଋଚୁଡ଼ ଥିଲା । ମୋର ମଧ କ୍ଷୀଣ ଭାବରେ ମନେହେଉଅଛି ଯେ, ମୁଁ ତାଙ୍କ ପାଖରେ ରାତିରେ ଶୋଉଥିଲି । ରାତି ଘଡ଼ିଏ ଦୁଇଘଡ଼ିଥାଏ, ମୋର ନିଦ ଭାଙ୍ଗେ । ସେହି ସମୟରେ ସେ ମୋତେ ଗୁଡ଼ିଏ ବୃଦ୍ଧ କବିତା ଶୁଣାଉଥିଲେ । ସେଥିରୁ ଦୁଇ ଗୋଟି ମୋର ମନେ ଅଛି ।

ହମ୍ ଜାନେ ତୁମ୍ ହେମ ହୋ,
ବାତେ କହୋ ନବାନ୍
ଖୀର ଯେସେ ମୀଲନ ହୋ
ଖାତର ଫାଙ୍କେ ଗାନ୍ ।

ସୁଜନ ପୀରତ ହେମ ବରାବର
ତୋଡ଼ତ ଜେନ୍ତ ବଢ଼ାଇ,
କୁଜନ ପୀରତ କାଚ ବରାବର
ଟୁଟଇ ତ ଜୋଡ଼ ନଯାଇ ॥
ସୁଜନ୍ କୋ ସୁଜନ୍ ମିଲେ
କ୍ୟା ମିଲେଗା ମୂଢ଼,
ମକ୍ଖୀ ନ ବୈଠେ ଚନ୍ଦନ ପର୍
ବିଲ୍ଲୀ ନ ଖାଏ ଗୁଡ଼୍ ।
କୌନ୍ କୁଲେମେ କୌନ,
ବାଘ ବଗୁଲ ବସ୍ତେ କୌଁ,
ଝପଟ୍ ଶିଖାଯେ କୋନ ।

ପୁଣି ଆଉ ଗୋଟିଏ ଗୀତ—

ରାମ ନାମ ଲଡ଼ୁଆ, କୃଷ୍ଣ ନାମ ଘୀ
ହରିନାମ ଖଣ୍ଡ ମିଶ୍ରି
ଘୋରି ଘୋରି ପୀ'ରେ ମନ,ଘୋରି ଘୋରି ପୀ ।
ରାମ କହୋ ମନ କାମସରେ,
ରଘୁନାଥ ବିନା ଦୁଃଖ କୌନ ହରେ
ଜବ୍ ରାମକେ ରାବନ ଯୁଦ୍ଧ ପଡ଼େ
ତବ ଦୋନୋ ସିପାହିକୋ ଦୋନୋ ଘୋଡ଼େ
କେହୁ ଢାଲ ଧରେ, ତଲବାରି ଧରେ,
ଦଶାନନକେ ଶିରମେ ବାନ ଗିରେ
ଦଶାନନଗୀର ରଘୁବୀର ଚଲ୍,
ରଘୁବୀର ଠାକୁରଜୀକା ବୋଲ୍ ଭଲ୍,
ଭାଇ ବୋଲ୍ ଭଲ୍ ।

ସେ ସମୟରେ ବଦେଇ ମୋତେ ଚାଣକ୍ୟ ଶ୍ଲୋକ ଶିଖାଉଥିବା କଥା ମୋର ମନେ ପଡ଼ୁନାହିଁ । ସମ୍ଭବତଃ ସଂସ୍କୃତ ଶବ୍ଦମାନଙ୍କରେ

ଅନୁସ୍ୱାର ବିସର୍ଗ ଓ ଯୁକ୍ତବର୍ଣ୍ଣ ବେଶୀ ଥିବାରୁ ତାହା ଶିଶୁ ସ୍ପଷ୍ଟ ରୂପେ ଉଚ୍ଚାରଣ କରି ପାରିବ ନାହିଁ ବୋଲି ହାନ୍ଦୀ କବିତା ଶିଶୁମାନଙ୍କୁ ଶିଖାଇବା ରୀତି ଚଳୁଥିଲା । ପରେ ମୁଁ ଝୃହାକଲରେ ପଢ଼ିବା ବେଳେ ସନ୍ଧ୍ୟା ସମୟରେ ଅବଧାନେ ଆମ୍ଭମାନଙ୍କୁ ଗୁଣକ୍ୟ ଶ୍ଲୋକ ଘୋଷାଉଥିଲେ । କିନ୍ତୁ ଅତି ଶିଶୁ ଅବସ୍ଥାରେ ମୁଁ ଶ୍ଲୋକ ଘୋଷିଥିଲି କି ନାହିଁ ମନେ ହେଉନାହିଁ । ମନେ ପଡ଼ୁନାହିଁ ।

ଦଦେଇଙ୍କ ସାଙ୍ଗରେ ପୁରୀ ଯାଇଥିବା କଥା ମୋର କିଛିମାତ୍ର ମନେ ହେଉ ନାହିଁ । ତେବେ ପୁରୀଠାରେ ଆମ୍ଭେମାନେ ଗୋଟିଏ ପଡ଼ିଆରେ ଠିଆ ହୋଇଥିବା ବେଳେ ସେ ବାଟେ ଗୋଟାଏ ବୃହଦାକାର ପୋଷାହାତୀ ଯାଉଥିବାର ମୋର ମନେଅଛି । ସମ୍ଭବତଃ ତହିଁପୂର୍ବରୁ ଏପରି ବୃହଦାକାର ଜୀବ ଦେଖିନଥିବାରୁ ଓ ପ୍ରଥମେ ହାତୀ ଦେଖିବାରୁ ସେ କଥା ମୋର ମନେଅଛି । ମୋର ମନେହେଉଅଛି ଯେ ବୁଡ଼ା ନ ପାହୁଣୁ ଦଦେଇ ଯେତେବେଳେ ମୋତେ କବିତା ବୋଲିବାକୁ କହୁଥିଲେ, ସେତେବେଳେ ମୁଁ ବୋଲିବି ନାହିଁ ବୋଲି ନାହିଁ କରିବାରୁ ଆମ କୋଠାଘର ବାରଣ୍ଡାର ଛାତତଳ କାନ୍ଥସନ୍ଧିରେ ବସା କରିଥିବା ପାରାମାନେ ସେ ସମୟରେ ଧୁମୁ କରୁଥିବା ଶୁଣି ଦଦେଇ ମୋତେ କହୁଥିଲେ ଯେ "ପାରା ଦଦେଇ ପାରା ଗୋପାଳକୁ କବିତା ଶିଖାଉଛି । ତୁ ନଶିଖିଲେ ପାରାଦଦେଇ ହସିବ ପରା, କହିବ ତୁ ଗୁହ ଗୁଅଟାଏ" । ଦଦେଇଙ୍କର ଏ କଥାଶୁଣି ମୁଁ କବିତା ବୋଲୁଥିବାର ମୋର ମନେହେଉଛି । ମୋର ମଧ୍ୟ ପୁରୀ ଯିବା ସମୟରେ ମୋ ବୋଉ (ମାତା) ତାଙ୍କ ପିତ୍ରାଳୟ ପୁରୀ ଜିଲ୍ଲା ରାହାଙ୍ଗ ପ୍ରଗଣାର ବୀରନରସିଂହପୁର ଶାସନକୁ ଆମ୍ଭମାନଙ୍କୁ ସାଙ୍ଗରେ ନେଇ ଯାଇଥିଲେ । ସେତେବେଳେ ମୋ ମୁଣ୍ଡରେ ଗୋଛାଏ ବାଳଥାଏ ଓ ମୁଣ୍ଡରେ ଜଟ ବନ୍ଧା ହେଉଥାଏ । ଜଣେ ବୁଢ଼ା (ମୋ ଅଜା ସ୍ୱର୍ଗୀୟ ଜଗଧର ମହାପାତ୍ର) ତାଙ୍କ ପୂଜା ପେଡ଼ି (୨ ଫୁଟ ଲମ୍ବ ଓ ୧୪ ଇଞ୍ଚ ଓସାର ଓ ୮ ଆଙ୍ଗୁଳ ଉଚ୍ଚ ବେତବୁଣା ପେଡ଼ି)ରୁ ନାଲିଆ ପାଟଫୁଲ ଦୁଇଟି କାଢ଼ି ଆଣି ମୋ ଜଟରେ ବାନ୍ଧି ଦେଇଥିବା ମୋର ମନେ ଅଛି । ଦଦେଇଙ୍କ ପରଲୋକ ଗମନ ବେଳକୁ ମୋ ମାତାଙ୍କର ମୋ ଜ୍ୟେଷ୍ଠା ଭଗିନୀ (ସ୍ୱର୍ଗୀୟା ହରପ୍ରିୟା), ମୁଁ

ଓ ମୋର କନିଷ୍ଠ (ସ୍ୱର୍ଗୀୟ ଜଗନ୍ନାଥ), ଆମେ ତିନିଜଣ ପିଲା ଭୂମିଷ୍ଠ ହୋଇଥିଲୁ । ମୁଁ ପ୍ରାୟ ସବୁ ସମୟରେ ଦଦେଇ ଓ ଦେଠେଇଙ୍କ ପାଖରେ ରହୁଥିଲି । ମୋ ଜନ୍ମିବା ପୂର୍ବରୁ ଦେଠେଇଙ୍କର ଗୋଟିଏ ପୁତ୍ର ସନ୍ତାନର ଶିଶୁ ଅବସ୍ଥାରେ ମୃତ୍ୟୁ ହୋଇଥିବାରୁ ସେ ମୋତେ ପାଳି ପୁତ୍ରଶୋକ ନିବାରଣ କରୁଥିଲେ । ଏମନ୍ତକି ମୁଁ ତାଙ୍କଠାରୁ ସ୍ତନ୍ୟପାନ କରୁଥିଲି ଓ ତାଙ୍କୁ ବୋଉ ବୋଲି ଡାକୁଥିଲି ଓ ମୋ ଜନ୍ମକଲା ମାତାଙ୍କୁ ଖୁଡ଼ୀବୋଲି ଡାକୁଥିଲି । ମୁଁ ମଧ୍ୟ ସେ ସମୟରେ ବିଶ୍ୱାସ କରୁଥିଲି ଯେ, ଦେଠେଇ ମୋର ବୋଉ । ମୁଁ ବୋଉଙ୍କୁ ପଚାରୁଥିଲି, "ବୋଉ, ମୁଁ କାହୁଁ ଆସିଲି"? ସେ କହୁଥିଲେ ଯେ ମୁଁ ତାଙ୍କ ପେଟରେ ଥିଲି ବାହାରି ପଡ଼ିଲି । ମୁଁ ତାଙ୍କୁ ପଚାରୁଥିଲି "ତୋ ପେଟକୁ କାହୁଁ ଆସିଲି"? ସେ କହୁଥିଲେ ଯେ ରାତିରେ ଶୋଇଲା ବେଳେ ମହାପ୍ରଭୁ ଆଣି ମୋତେ ପାଟିବାଟେ ତାଙ୍କ ପେଟ ଭିତରେ ରଖିଦେଇ ଗଲେ । ଏହିପରି କେତେ ବାଲସୁଲଭ କୌତୁହଳ ପ୍ରଶ୍ନ କରୁଥିବାର ମୋର କ୍ଷୀଣ ଭାବରେ ମନେଅଛି । ସେ ସମୟରେ ଦାମବାରିକ ନାମରେ ଜଣେ ବୁଢ଼ା ଭଣ୍ଡାରି ଆମ୍ଭମାନଙ୍କ ତତ୍ତ୍ୱନେବା ପାଇଁ ନିଯୁକ୍ତଥିଲା । ଦଦେଇଙ୍କ ମରିବାର ୮।୧୦ ବର୍ଷ ପରେ ସେ ମଲା । ତା କଥା ଓ ତା ରୂପ ମୋର ସ୍ପଷ୍ଟ ମନେ ଅଛି । ମୋ ପିତାଙ୍କ ସହିତ ମୋର କ୍ୱଚିତ୍ ଦେଖା ହେଉଥିଲା । ମୋ ମାତା, ମୋ ବଡ଼ ଭଉଣୀ ଓ ସାନଭାଇଙ୍କ ସେବାରେ ବ୍ୟାପୃତା ଥାଆନ୍ତି । ବେଳେ ବେଳେ ମୁଁ ତାଙ୍କୁ ଦେଖେଁ ଓ ଖୁଡ଼ୀ ବୋଲି ତାଙ୍କୁ ଡାକେଁ । ଏହି ଖୁଡ଼ୀ ଡାକର ଅଭ୍ୟାସ ମୁଁ ଏନ୍‌ଟ୍ରାନସ ପାସ୍ କରିବା ପର୍ଯ୍ୟନ୍ତ (୧୫ ବର୍ଷ ହେବା ପର୍ଯ୍ୟନ୍ତ) ଥିଲି । ପରେ ଯେତେବେଳେ ଜାଣିଲି ଯେ, ତାଙ୍କ ଖୁଡ଼ୀ ବୋଲି ଡାକିବାରୁ ସେ ବ୍ୟଥା ଅନୁଭବ କରୁଅଛନ୍ତି, ସେତେବେଳେ ଦେଠେଇଙ୍କୁ ବଡ଼ବୋଉ ବୋଲି ଡାକିଲି ଓ ମାତାଙ୍କୁ ସାନବୋଉ ବୋଲି ଡାକିଲି । ଏତ ପରବର୍ତ୍ତୀ ସମୟର କଥା । ଦଦେଇଙ୍କ ମରିବା ସମୟ କଥା ଓ ସେ ମରିବା ଯୋଗୁଁ ମୁ ତାଙ୍କର ଯେଉଁ ବିଚ୍ଛେଦ ଅନୁଭବ କରିଥିଲି, ତାହା ମୋର କିଛି ମନେନାହିଁ । ସେ ଶଯ୍ୟାରେ ଶୋଇଥିବାବେଳେ ଘଣ୍ଟମାର୍ଦ୍ଦଳ ବାଜୁଥିଲା ଓ ଜଣେ କାଳସୀ ବେକରେ ଫୁଲମାଳା ପକାଇ ହାତରେ ବେତଧରି ଆମଘରକୁ

ଆସିଥିଲା । ତା ଆଗରେ ପଣାହାଣ୍ଡିଏ ରଖାଯାଇଥିବାର ଦେଖିଥିବା ମୋର ମନେଅଛି ଓ ଜଣେ ରୁଦ୍ରାକ୍ଷ ମାଳାଧାରୀ ଊର୍ଦ୍ଧ୍ୱପୁଣ୍ଡ୍ର ଚିତା କାଟିଥିବା ବ୍ରାହ୍ମଣ (ପରମହଂସ ନାଥଙ୍କ ପଣ୍ଡା) ଗୋଟିଏ ଥାଳରେ ଗୁଡ଼ିଏ ଫୁଲମାଳ ଆଣି ବଡଦେଇଙ୍କ ପାଖରେ ରଖିଥିଲା । କିନ୍ତୁ ବଡଦେଇ ମରିଯିବା କଥା ସେ ସମୟରେ ମୋର ଆଦୌ ମନେ ନାହିଁ । ସମ୍ଭବତଃ ବଡଦେଇ ମଝିରେ ମଝିରେ ମାସେ ଦୁଇମାସ ଅମ ଜମିଦାରୀକୁ ଯାଇ ଘରୁ ଅନୁପସ୍ଥିତ ରହୁଥିବାରୁ ସେ ମରିବା ସମୟରେ ସମ୍ଭବତଃ ତାଙ୍କୁ ନଦେଖିବା ଯୋଗୁଁ ମୋ ମନରେ ସେତେବେଳେ କୌଣସି କ୍ଷତି ଅନୁଭୂତ ହୋଇଥିବା କଥା ମୋର ମନେହେଉ ନାହିଁ । ବଡଦେଇଙ୍କର ଏକାଧିକ ପୁତ୍ର ସନ୍ତାନ ଶିଶୁ ଅବସ୍ଥାରେ ମରିଯାଇଥିବାରୁ ସେ ମୋ କନିଷ୍ଠ ଉଦୟନାଥକୁ ପୋଷ୍ୟପୁତ୍ର କରିଥିଲେ । ଓ ତାଙ୍କ ମୃତ୍ୟୁବେଳକୁ ଉଦୟନାଥର ବୟସ ଏକବର୍ଷ ମାତ୍ର ହୋଇଥିଲା । ମୋର କାନଫୋଡ଼ା ଓ ବିଦ୍ୟାରମ୍ଭ ହେବାକଥା ମୋର ମନେନାହିଁ । କିନ୍ତୁ ଆମଗୃହ ସଂଲଗ୍ନ ଦାଣ୍ଡ ମେଲରେ ଭୂଇଁରେ ମୁଁ ଖଡ଼ିପାଠ ପଢ଼ୁଥିବାର ମୋର ମନେ ଅଛି । ସ୍ୱର୍ଗୀୟ କାଶୀନାଥ ମହାପାତ୍ର (ଜ୍ୟୋତିଷ ନାୟକ)ଙ୍କ ନିକଟରେ ମୁଁ ପ୍ରଥମେ ଚାହାଳିରେ ପଢ଼ିଲି । ଚାହାଳୀ ହେବା ସମୟରେ ମୁଁ ସେଠାରେ ବସେଁ । ତା ପରେ ସନ୍ଧ୍ୟାବେଳେ ତାଙ୍କ ପାଖରେ କବିତା ଓ ଶ୍ଳୋକ ବୋଲେ କାଶୀ ପଣ୍ଡିତେ ମୋର ଶିକ୍ଷକ ଓ ଜଗୁଆଳୀ ଥିଲେ । ମୋର ମନେଅଛି ସେ ମୋତେ ଲୁଗାପିନ୍ଧା ଶିଖାଉଥିଲେ । ମୁଣ୍ଡ ବାଳରେ ଗଣ୍ଠି ପକାଇବାକୁ ଶିଖାଉଥିଲେ । ମୁ ହଳଦୀ ଲଗାଇବାକୁ ବା ମୁଣ୍ଡ କୁଣ୍ଡାଇବାକୁ ବୋଉଙ୍କୁ ହଇରାଣ କଲେ କାଶୀପଣ୍ଡିତଙ୍କ ପାଖୁ ଖବର ଯାଉଥିଲା । ସେ ଆସି ପାଟି ଶୁଣାଇ ଦେଲେ ମୁଁ ଶାନ୍ତ ମୂର୍ତ୍ତି ଧାରଣ କରୁଥିଲି । ସେ ସମୟରେ ବଡଦେଇଙ୍କର ଗୋଟିଏ କନ୍ୟା (ମାଗୁଣୀନାମୀ) ମୋ ସଙ୍ଗରେ ଚାହାଳିରେ ପଢ଼ୁଥିଲେ । ବଡଦେଇ ମରିବାପରେ ତାଙ୍କର ବିବାହ ହୋଇଥିଲା । ମୋ ପିତାମହୀ ମଧ୍ଯ ସେ ସମୟରେ ଥିଲେ । ସନ୍ଧ୍ୟାବେଳେ କାଶୀପଣ୍ଡିତଙ୍କ ପାଖରୁ କବିତାବୋଲା ଓ ଶ୍ଳୋକ ବୋଲାରୁ ମୁକ୍ତି ପାଇଲେ ନିଦ ମାଡ଼ିବା ପୂର୍ବରୁ ଆମେ ହରିଁଙ୍କ ଘରେ ବୁଢ଼ୀମାଆଙ୍କ ପାଖେ ରୁଣ୍ଡ ହେଉଥିଲୁଁ । ବୁଢ଼ୀମା ହରିଁଙ୍କ ଘରେ ବସି

ଆଗରେ ଗୋଟିଏ ପୂଜାପେଡ଼ି ରଖି ତୁଳସୀ ମାଳ ଗଡ଼ାଉଥା'ନ୍ତି । ଆମେମାନେ ଯାଇ ପହଂଚିଲେ ମାଆଙ୍କୁ କଥାକହିବା ପାଇଁ ଜିଦ ଲଗାଉଁ ଓ ମାଆ ଆମମାନଙ୍କୁ କାହାଣୀ କହନ୍ତି । ମୋତେ ପାଞ୍ଚବର୍ଷ ବା ଛବର୍ଷ ବୟସ ହେବା ସମୟଠାରୁ ସେ କାଳର କଥାମାନ ମୋର ସ୍ପଷ୍ଟତର ଭାବରେ ମନେ ଅଛି । କ୍ରମଶଃ ତାହା ପାଠକମାନଙ୍କୁ ଜଣାଇବି ।

ଦଦେଇଙ୍କ ମୃତ୍ୟୁର କେତେକାଳପରେ ମୋ ପିତୃଦେବ ଆମଘର କଚେରି ମେଲରେ ଗୋଟିଏ ଇସ୍କୁଲ ବସାଇଲେ । ପ୍ରଥମରୁ ଏ ସ୍କୁଲଟି ମାଇନର ସ୍କୁଲ ହୋଇ ଖୋଲିଥିଲା । ସ୍କୁଲର ଉପକରଣମାନ ଓ ଶିକ୍ଷକ ତିନିଜଣଙ୍କ ଦରମା ମୋ ପିତୃଦେବ ଦେଉଥିଲେ । କେତେଦିନପରେ ଆମ୍ଭମାନଙ୍କ କୁଟୁମ୍ବୀ ସ୍ୱର୍ଗୀୟ ଶ୍ରୀ ରଘୁନାଥ ସାମନ୍ତରାଙ୍କ ଦ୍ୱିତୀୟ ପୁତ୍ର ଶ୍ରୀ ରାଧାମାଧବ ସାମନ୍ତରାୟ ( ଡାକନାମ ମାଧବବାବୁ ) ଖଣ୍ଡିଏ ଟେବୁଲ ଓ ୪।୫ ଖଣ୍ଡ ବେଞ୍ଚ ସ୍କୁଲକୁ ସାହାଯ୍ୟ କରିଥିଲେ । ସ୍କୁଲରେ ଜଣେ ହେଡ୍‌ମାଷ୍ଟର ଜଣେ ହେଡ଼ପଣ୍ଡିତ ଓ ଜଣେ ସେକେଣ୍ଡ ପଣ୍ଡିତ ଥିଲେ । ଗଭର୍ଣ୍ଣମେଣ୍ଟରୁ ମଧ୍ୟ ସ୍କୁଲକୁ ଗ୍ରାଣ୍ଟ-ଇନ୍-ଏଡ୍ ମିଳୁଥିଲା । ଛାତ୍ରଦତ୍ତ ବେତନ ହିସାବରେ ଲେଖା ହେଉଥିଲା । କିନ୍ତୁ ସେ ସମୟରେ ସ୍କୁଲ ପଢ଼ାପଢ଼ି ଲୋକଙ୍କର ଆଦର ନଥିବାରୁ ପ୍ରାପ୍ୟ ସବୁ ଛାତ୍ରଙ୍କ ଦରମାକୁ ପିତୃଦେବ ଭରଣା କରୁଥିଲେ । ଗ୍ରାଣ୍ଟ-ଇନ୍-ଏଡ୍ ଟଙ୍କା ଛଡ଼ା ସ୍କୁଲର ଅନ୍ୟ ସମସ୍ତ ବ୍ୟୟ ପିତୃଦେବ ବହନ କରୁଥିଲେ । ମାସକୁ ମାସ ଗ୍ରାଣ୍ଟ-ଇନ୍-ଏଡ୍ ବିଲ୍ ଡେପୁଟି ଇନସ୍‌ପେକ୍ଟରଙ୍କ ଅଫିସକୁ ମୋ ପିତୃଦେବ (ସେକ୍ରେଟାରୀ)ଙ୍କ ସ୍ୱାକ୍ଷରରେ ଯାଉଥାଏ ଓ ଏହିସବୁ ମାଷ୍ଟରମାନଙ୍କ ମାସିକ ଦରମାର ସମାପ୍ତି ରସିଦ ମଧ୍ୟ ପଠାଯାଉଥାଏ । କିନ୍ତୁ ମାଷ୍ଟରମାନେ ମାସକୁମାସ ନିୟମିତ ରୂପେ ଦରମା ନେଉନଥିଲେ । ପିତୃଦେବଙ୍କର ମାସିକ ନିର୍ଦ୍ଧାରିତ ଆୟ ନଥିଲା । ଜମିଦାରୀର ଆୟଛଡ଼ା ତାଙ୍କର ଅର୍ଥାଗମର ଅନ୍ୟ ପନ୍ଥା ନଥିଲା । ଛ' ମାସରେ ଥରେ ବୈଶାଖ କିସ୍ତୀ ଓ ଛ' ମାସପରେ କାର୍ତ୍ତିକ କିସ୍ତୀ ଉପଲକ୍ଷ୍ୟରେ ପ୍ରଜାମାନଙ୍କଠାରୁ ଖଜଣା ଆଦାୟ ହେବା ସମୟରେ ଜଣେ ଶିକ୍ଷକ ପିତୃଦେବଙ୍କଠାରୁ ଚିଠା ନେଇ ମଫସଲର ତହସିଲ୍‌ଦାରମାନଙ୍କ ନିକଟକୁ ଯାଉଥିଲେ । ସେମାନଙ୍କଠାରୁ ଯାହା ଟଙ୍କା ଆଣୁଥିଲେ ତାହା ସେମାନଙ୍କ ଦରମାରେ ମଜୁରା ହେଉଥିଲା ।

ଏପରି ଅବସ୍ଥାରେ ସ୍କୁଲର କର୍ତ୍ତୃପକ୍ଷମାନଙ୍କ ପରିଦର୍ଶନ ଓ ମାସିକ ଗ୍ରାଣ୍ଟ-ଇନ୍-ଏଡ୍ ବଲ ସଙ୍ଗେ ଆୟବ୍ୟୟର ଗୋଟିଏ କାଳ୍ପନିକ ହିସାବ ଲେଖାହେଉଥିଲା । ଆଉ ଗୋଟିଏ ଘରୋଇ ଟୀପା ହିସାବ ମୋ ପିତୃଦେବଙ୍କ ପାଖରେ ରହୁଥିଲା । ପ୍ରତି ନାଟବନ୍ଦୀ ପରେ ଶିକ୍ଷକମାନଙ୍କ ପୂର୍ବବର୍ତ୍ତୀ ଛ' ମାସର ବେତନର ହିସାବର ଚୂକ୍ତି ହେଉଥିଲା । ନିକଟବର୍ତ୍ତୀ ଜଣେ ଦୁଇଜଣ ବ୍ୟକ୍ତି ଓ ଶ୍ରୀ ରାଧାମାଧବ ସାମନ୍ତରାଯ ସ୍କୁଲପାଇଁ ମାସିକ କିଛି କିଛି ଚାନ୍ଦାଦେବାକୁ ପ୍ରସ୍ତାବ କରିଥିଲେ । କିନ୍ତୁ ପିତୃଦେବ କହିଲେ— "ମାସିକ ଚାନ୍ଦାଉପରେ ନିର୍ଭର କଲେ ସ୍କୁଲଟି ବେଶୀଦିନ ଚଳିବ ନାହିଁ ।" ପ୍ରଥମେ କଟକ ଜିଲ୍ଲା କୋଠପଦାମଠର ତଦାନୀନ୍ତନ ମହନ୍ତଙ୍କ ଚେଲା ଶ୍ରୀ ଦଇତ୍ୟାରି ପୁରୀ ହେଡ଼ମାଷ୍ଟର ହୋଇଥିଲେ । ଆମ ଗ୍ରାମର ବାହାରେ ପାର୍ଶ୍ୱବର୍ତ୍ତୀ କମପୁର ଗ୍ରାମରେ ବିଶ୍ୱାଳ ଡିଅରେ ଶ୍ରୀ ରାଧାମାଧବ ସାମନ୍ତରାଙ୍କ ବଙ୍ଗଳାଥିଲା । ସେଇଠାରେ ହେଡମାଷ୍ଟର ପୁରୀ ମହାଶୟ ବସାକରି ରହିଥାନ୍ତି ଓ କୋଟ୍ ପେଣ୍ଟଲୁନ୍ ପିନ୍ଧି ଆମ ଦାଣ୍ଡ ବାଟେ ସ୍କୁଲକୁ ଯିବାଆସିବା କରନ୍ତି । ସେ ସମୟରେ ଆମ ଗ୍ରାମର ପଣ୍ଡିତ ଶ୍ରୀ ମଧୁସୂଦନ ନନ୍ଦ ଗ୍ରାମରେ ରହୁଥାନ୍ତି । ପୁରୀ ମହାଶୟ ଗ୍ରାମ ଦାଣ୍ଡରେ ଗଲାବେଳେ ତାଙ୍କ ଦାଣ୍ଡ ପିଣ୍ଡାରେ ବସିଥିବା ନନ୍ଦ ମହାଶୟଙ୍କୁ ଅଭିବାଦନ କରୁନଥିଲେ । ଏଥିପାଇଁ ଦୁର୍ବାସା ପ୍ରତିମ ନନ୍ଦଙ୍କର ହେଡ୍‌ମାଷ୍ଟରଙ୍କ ଉପରେ କ୍ରୋଧାଗ୍ନି ବର୍ଷିଲା । ପୁରୀ ମହାଶୟ ସ୍ୱାଧୀନଚେତା ମଣିଷ ଥିଲେ । ତାଙ୍କ ଗୁରୁଙ୍କ ସାଙ୍ଗରେ କେତେକ ବିଷୟ ନେଇ ଅପଡ଼ ହେବାରୁ ସେ ମଠ ଛାଡ଼ି ସିଦ୍ଧେଶ୍ୱରପୁର ସ୍କୁଲରେ ହେଡ୍‌ମାଷ୍ଟରୀ କଲେ । ଏପରି ବ୍ୟକ୍ତିଙ୍କର ନନ୍ଦଙ୍କ ଆଗରେ ମୁଣ୍ଡ ନୁଆଁଇବା ଅସମ୍ଭବ । ନନ୍ଦ କେତେକ ବ୍ୟକ୍ତିଙ୍କ ଆଗେ ପୁରୀ ମହାଶୟଙ୍କ ଚାଲିଚଳନର ତୀବ୍ର ସମାଲୋଚନା କଲେ । ପୁରୀ ମହାଶୟ ଦେଖିଲେ ଯେ, ଯେଉଁ ଅଶାନ୍ତିରୁ ତ୍ରାହି ପାଇବା ପାଇଁ ସେ ନିଜମଠ ଛାଡ଼ିଚାଲି ଆସିଥିଲେ ସେଇ ଅଶାନ୍ତି ପୁଣି ଏଠାରେ ଘଟିଲା । ତେଣୁ କିଛିଦିନପରେ ସେ ଇସ୍ତଫା ଦେଇ ବିଦାୟ ନେଲେ । ତାଙ୍କପରେ ଆମଗ୍ରାମଠାରୁ ତିନିମାଇଲ ଦୂରବର୍ତ୍ତୀ ନିମେଇଷାପୁର ଗ୍ରାମର ଶ୍ରୀ ବାଞ୍ଛାନିଧି ମହାନ୍ତି ହେଡ୍‌ମାଷ୍ଟର ହେଲେ । ସେ ଏଣ୍ଟ୍ରାନସ୍ ପାଶ୍‌କରିଥିଲେ । ରାଧାମାଧବ ସାମନ୍ତରାଙ୍କ ବଙ୍ଗଳାରେ

ବସା ନକର ଆମର ଯେଉଁ କଚେରୀ ମେଳରେ ସ୍କୁଲ ହେଉଥିଲା ସେଇଠି ଚୋଟିଏ କଣଘରେ ବସାକଲେ । ବାଞ୍ଛାନିଧି ମହାନ୍ତିଙ୍କଠାରୁ ମୁଁ ଇଂରାଜୀ ଶିକ୍ଷା ପାଇଲି । ଏଇଠାରେ ତାଙ୍କ ଶିକ୍ଷକ ଜୀବନର ଆରମ୍ଭ ଓ ସମାପ୍ତି । ହେଡ଼ପଣ୍ଡିତ କର୍ମରେ ଏକାଧିକ ବ୍ୟକ୍ତି ନିଯୁକ୍ତ ହେଲେ ଓ ବିଦାୟ ନେଲେ । ପ୍ରଥମେ ବାଙ୍କୀ ସୁବର୍ଣ୍ଣପୁର ନିବାସୀ ଶ୍ରୀ ବୈଦନାଥ ପଣ୍ଡା (ସେ ପରେ ରାୟସାହେବ ଓ ରାୟବାହାଦୁର ଉପାଧି ପାଇଥିଲେ) ହେଡ଼୍‌ପଣ୍ଡିତ ନିଯୁକ୍ତ ହୋଇଥିଲେ । କିନ୍ତୁ ସେ କଠିନ ପୀଡ଼ାଗ୍ରସ୍ତ ହୋଇ କର୍ମରୁ ବିଦାୟ ନେଲେ । ତତ୍‌ପରେ ଅଣ୍ଟୁରେଣ୍ଟ୍ରର ନିବାସୀ ଶ୍ରୀ ଜାନକୀରାମ ସ୍ୱାମୀ ତାଙ୍କପରେ ପଣ୍ଡିତ ଶ୍ରୀଧର ଦାସ ଓ ତାଙ୍କପରେ କଟକର ଚଦାମାନ୍ତନ ନର୍ମାଲ୍ ସ୍କୁଲରୁ ପଣ୍ଡିତ ବିଭାଗ ପାଶ୍ କରିଥିବା ପୁରୀ ଜିଲ୍ଲାର ଗିରଙ୍ଗୋ ଗ୍ରାମବାସୀ ଶ୍ରୀ ଈଶ୍ୱର ଚନ୍ଦ୍ର ମିଶ୍ର ହେଡ଼୍‌ପଣ୍ଡିତ ହେଲେ । ଆମଗ୍ରାମଠାରୁ ଦେଢ଼ମାଇଲ ଦୂରବର୍ତ୍ତୀ ବରଡ଼ା ଶାସନ ନିବାସୀ ଶ୍ରୀ କାଶୀନାଥ ମହାପାତ୍ର ମାଇନର୍ ସ୍କୁଲର ସେକେଣ୍ଡ୍ ପଣ୍ଡିତ ହେଲେ । ସେ ସ୍କୁଲର ପ୍ରତିଷ୍ଠା କାଳ ସନ ୧୮୭୮ ସାଲରୁ ଶିକ୍ଷକତା କରିଥିଲେ । କଥା ପ୍ରସଙ୍ଗରେ ଏଠାରେ ପରବର୍ତ୍ତୀ କାଳର ବିଷୟ ଉଲ୍ଲେଖ କରିବାକୁ ପଡ଼ିଲା । ବାଞ୍ଛାନିଧି ମାଷ୍ଟରେ, ଈଶ୍ୱର ପଣ୍ଡିତେ ଓ କାଶୀପଣ୍ଡିତେ ବାର୍ଦ୍ଧକ୍ୟ ବଶତଃ ସ୍କୁଲରୁ ବିଦାହେବା ସମୟରେ ଗ୍ରାଣ୍ଟ ପ୍ରାପ୍ତ ସ୍କୁଲମାନଙ୍କରେ ପେନ୍‌ସନ୍ ବା ପ୍ରୋଭିଡେଣ୍ଟ୍ ଫଣ୍ଡ୍ ଆଦିର ବ୍ୟବସ୍ଥା ନଥିବାରୁ ସେମାନଂକର କେତେଜଣ ଛାତ୍ର ପ୍ରତ୍ୟେକଙ୍କୁ ଆମରଣ ମାସିକ କିଛି କିଛି ଅର୍ଥ ସାହାଯ୍ୟ କରୁଥିଲେ ।

କାଶୀପଣ୍ଡିତେ ସ୍କୁଲର ସେକେଣ୍ଡ୍ ପଣ୍ଡିତ ଥିଲେ । ସେ ରାତିରେ ଆମ ଘରେ ରହି ଆମମାନଙ୍କୁ ପଢାଉଥିଲେ । ତାଙ୍କଠାରୁ ହିଁ ମୋର ଓଡ଼ିଆ ବର୍ଣ୍ଣମାଳାର ଆରମ୍ଭ ହୋଇଥିଲା । ମୁଁ ଥରେ ମାଇନର ପରୀକ୍ଷା ଦେଇ ଭର୍ଣ୍ଣାକୁଲାର ତୃତୀୟ ଶ୍ରେଣୀରେ ପାଶ କଲି । ପରବର୍ଷ ମାଇନର ପାଶ କରିବା ଆଶାରେ ପୁଣି ପଡି ମୋତେ ପରୀକ୍ଷା ଦେବାକୁ ହେଲା । କିନ୍ତୁ ଏ ପରୀକ୍ଷାରେ ମଧ୍ୟ ସେହି ଭର୍ଣ୍ଣାକୁଲାରରେ ପାଶ କଲି । ଆଶ୍ୱାସନାର ବିଷୟ ଏତିକି ଯେ ଏଥର ଦ୍ୱିତୀୟ ଶ୍ରେଣୀରେ ପାଶ କଲି ।

ମାଇନର ପାଶ ନ କଲେ ମଧ୍ୟ ମୋର ଇଂରାଜୀ ଜ୍ଞାନ ସାଧାରଣ ମାଇନର ପାଶ କରିଥିବା ପିଲାଙ୍କଠାରୁ ଅଧିକ ଥିଲା । ପିଲାଦିନେ ବାଞ୍ଛାନିଧି ମାଷ୍ଟ୍ର ଇଂରାଜୀ ପଢ଼ାର ଯେଉଁ ମୂଳଦୁଆ ମୋଠାରେ ଗଢିଥିଲେ ତାହା ଏନ୍‌ଟ୍ରାନ୍‌ସ ପାଶ କରିବା ପର୍ଯ୍ୟନ୍ତ ଉପକାରରେ ଆସିଥିଲା । ଏପରି ଅବସ୍ଥାରେ ମୋର ମାଇନର ଫେଲ ହେବା ଓ ହର୍ଷ୍ଟାକୁଲରେ ୨ୟ ଓ ୩ୟ ଶ୍ରେଣୀରେ ପାଶ କରିବାର କାରଣ ଏହି କି ମୋର ବାଲ୍ୟକାଳରୁ ଗୋଟିଏ ଦୁରଭ୍ୟାସ ଅଛି ଯେ ଥରେ ମୁଁ ଯାହା ଲେଖେ ତାକୁ ରିଭାଇଜ୍ (ସମାର୍ଜନ) କରିବାକୁ ମୋର ଧୈର୍ଯ୍ୟ ରହେ ନାହିଁ । ଆଜି ପର୍ଯ୍ୟନ୍ତ ମଧ୍ୟ ମୋର ଏ ମନ୍ଦ ଅଭ୍ୟାସ ଏକଦମ ଯାଇନାହିଁ । ଯେଉଁ ପତ୍ରପତ୍ରିକାର ସମ୍ପାଦକମାନେ ମୋଠାରୁ ସନ୍ଦର୍ଭ ଆଜି ପାଆନ୍ତି ସେମାନେ ଦେଖି-ଥିବେ ଯେ ମା ସରସ୍ୱତୀ ମୋ କଲମ ମୁନରେ ବସିକି କରିବା ଫଳରେ ମୋ କଲମରୁ ଏକାଥରକେ ଯାହା ଲେଖା ହୋଇଯାଇଥାଏ ତହିଁରେ କ୍ୱଚିତ୍ କୌଣସିଠାରେ ସମାର୍ଜନର ଚିହ୍ନଥାଏ । ଏହି କେତେ ବର୍ଷର ଘଟଣାମାନଂକ ସ୍ମୃତି ମୋ ମନରେ ଏକାଦିକ୍ରମେ ସଂଚିତ ନଥାଇ ଘାଣ୍ଟି ତିଅଣ ଭଳି ହୋଇଛି । ଏହି କେତେ ବର୍ଷର ଘଟଣାମାନଂକ ବର୍ଣ୍ଣନାରେ ଆଗପଛ କେତେକଥା ହୁଏତ ରହିଯିବ ।

ଆମ୍ଭେମାନେ ଯେତେବେଳେ ଗ୍ରାମ ସ୍କୁଲରେ ପଢୁଥିଲୁ ମାଟିବଂଶ ଅବଧାନଂକ ଦଣ୍ଡବିଧାନ ମାତ୍ର ବରାବର ଉଠିଯାଇ ନ ଥିଲା । ଛାତ୍ରମାନଙ୍କୁ ଦଣ୍ଡ ଦେବା ପାଇଁ ବେତ, ଅରଖଡାଳ, ଖଜୁରିଡାଳ, ତେନ୍ତୁଳି ଗୁଟି ଆଦିର ଖୁବ ପ୍ରଚଳନ ଥିଲା । କେତେବର୍ଷ ବାଦ ସ୍କୁଲ ପାଇଁ ପିତୃଦେବ ଆମ ଗ୍ରାମର ପଶ୍ଚିମ ମୁଣ୍ଡରେ ଗୋଟିଏ ସ୍ୱତନ୍ତ୍ର ଘର ତୋଳାଇଲେ । ତହିଁ ନିକଟରେ ଗୋଟିଏ ନୂଆ ପୋଖରୀ ଥିଲା । ମୋ ଜନ୍ମ ହେବାର କେତେମାସ ପରେ ସେ ପୋଖରୀଟି ଖୋଳା ହୋଇଥିଲା ଓ ବଡବାଇ ସ୍ନେହରେ ସେ ପୋଖରୀର ନାମ 'ଗୋପାଳ ସାଗର' ଦେଇଥିଲେ । ସେ ପୋଖରୀ ହୁଡ଼ାରୁ କୋଡ଼ିଏ ତିରିଶହାତ ଛଡାରେ ଇସ୍କୁଲ ଘର ପୋଖରୀ ହୁଡାରେ ଅନେକ ଅରଖବୁଦା ଉଠିଥାଏ । ସେ ବୁଦାର ଅଧିକାଂଶ ଡାଳ ଇସ୍କୁଲ ପିଲାଂକ ପିଠିରେ ଉଡ଼େ । ମଠୁଆଣାଂକୋଳି,

କାନ୍ଧ ଚଉକ, ନାକବାଲ ଧରା, ଏକଗୋଡ଼ିକଆ ଆଜ୍ଞା ପୁରୁଣା ଦଣ୍ଡ ସଙ୍ଗେ ବେଞ୍ଚ ଉପରେ ଠିଆ ହେବା ( Stand up on the Bench ) ଦଣ୍ଡ ଯୋଗ ହେଲା ।

ସେ ସମୟରେ ସ୍କୁଲରେ ଛାତ୍ରାବାସ ନ ଥାଏ । ଏଥିପାଇଁ ଚାରି ପାଞ୍ଚ ମାଇଲ ଦୂରବର୍ତ୍ତୀ ଗ୍ରାମମାନଂକରୁ ଛାତ୍ରମାନେ ପ୍ରତିଦିନ ସ୍କୁଲକୁ ଯିବା ଆସିବା କରି ପଢ଼ୁଥିଲେ । ହେଡ଼ମାଷ୍ଟ୍ରେ ଓ ହେଡ଼ପଣ୍ଡିତ ଆମ ଘରର ଗୋଟିଏ ଗୋଟିଏ କୋଠରୀରେ ବସା ପାଇଥାନ୍ତି । ସେମାନଂକ ସଙ୍ଗେ ଦୁଇଚାରିଜଣ ଛାତ୍ର ରହୁଥା'ନ୍ତି । ସେମାନେ ଗୋଲଡ୍‌ସ୍ମିଥ୍‌ଙ୍କ 'ଡେଜର୍ଟେଡ ଭିଲେଜ୍'ରେ ବର୍ଣ୍ଣିତ 'A bed by night, a chest of drawyers by day' (ରାତିରେ ଶୋଇବା ଖଟ ରୂପେ ଓ ଦିନରେ ଦରାଜବାଲା ସିନ୍ଦୁକ ରୂପେ ବ୍ୟବହାର ଏପରି ଦୁଇକାମ ଏକବସ୍ତୁରେ ଚଳୁଥିବା) ପରି ଏ ଛାତ୍ରମାନେ ଘରେ ଶିକ୍ଷକମାନଙ୍କ ପାଚକ ଅବତାର ଓ ସ୍କୁଲବେଳେ କ୍ଲାସରେ ପଢ଼ୁଆ ଛାତ୍ର ଅବତାର ଗ୍ରହଣ କରୁଥିଲେ । ଆମେ ଛାତ୍ରମାନେ ଶ୍ରେଣୀ ଅନୁସାରେ ବାଣ୍ଟିକୁଣ୍ଟି ହୋଇ କେତେଜଣ ହେଡ୍‌ମାଷ୍ଟର ଓ କେତେଜଣ ହେଡ୍‌ପଣ୍ଡିତଙ୍କ ବସାକୁ ଯାଉ । ସେଠାରେ ସ୍କୁଲ ପଠିତ ଓ ପଠନୀୟ ବିଷୟମାନ ଶିକ୍ଷକଙ୍କଠାରୁ ବୁଝୁ । ଶିକ୍ଷକଙ୍କ ବସା ନାମ ଶୁଣି ଆପଣମାନେ ଆଧୁନିକ କ୍ୱାର୍ଟରସ୍ ବୋଲି ମନେ କରିବେ ନାହିଁ । ଆମ ଘରର ଗୋଟିଏ ଗୋଟିଏ ମାତ୍ର କୋଠରୀରେ ଶିକ୍ଷକ ବସା କରିଥା'ନ୍ତି । କୋଠରୀର ଗୋଟିଏ କୋଣରେ ଦୋପଖା ଚୁଲି, ଅନ୍ୟ କୋଣରେ ଜାଳକାଠ । କୋଠରୀର ଅନ୍ୟ ଦୁଇ କୋଣର ମଧ୍ୟବର୍ତ୍ତୀ ଅଂଶରେ ଶିକ୍ଷକଙ୍କର ପେଟରା, ବିଛଣା ଓ ଲୁଗାପଟା ରଖିବା ଅଲଗୁଣି ରହୁଥିଲା । ଆମେ ପିଲମାନେ ମାଷ୍ଟରଙ୍କ ବସାରେ ସକାଳ ସାତଟାଠାରୁ ସାଢ଼େ ନଅ ଓ ସଂଧ୍ୟା ସାତଟାଠାରୁ ସାଢ଼େ ନଅ ପଢୁଁ । ଆମ୍ଭେମାନେ ପଢ଼ାସାରି ବାହାରି ଆସିଲେ ଶିକ୍ଷକମାନଙ୍କର ସେହି ସ୍ଥାନରେ ଠା'ପିଢ଼ା ଓ ପହଡ଼ ହୁଏ । ପାଠପଢ଼ା ଓ ପାକକର୍ମ ଏକାବେଳେ ଚାଲୁଥାଏ । ବେଳେବେଳେ ଦେଖୁଁ ଶିକ୍ଷକଙ୍କ ଜାଳ କାଠଗୁଡ଼ିକ ଓଦା । ମୁଁ ଆମ ଘର ଭିତରକୁ ପଶିଯାଇ ଶୁଖିଲା ଜାଳ କାଠ ଗୋଛାଏ ଆଣି

ଶିକ୍ଷକଙ୍କ ଚୁଲି ପାଖରେ ପହଞ୍ଚାଇ ଦିଏ । ଆଜ ଦେଖାଗଲା ଶିକ୍ଷକଙ୍କ ତିଅଣ ପାଇଁ କଦଳୀଟିଏ ମାତ୍ର କଟା ହେଉଛି; ମୁଁ ଘର ଭିତରକୁ ଦଉଡ଼ିଯାଏଁ, ଘରେ ମୋ ପିତାଙ୍କ ପାଇଁ ତିଅଣ ହେବାକୁ କେତେ ପ୍ରକାରର ପରିବା କଟା ହେଉଛି; ସେ କଟା ପରିବାରୁ ଅଞ୍ଜୁଳାଏ ଉଠାଇ ଆଣି ଶିକ୍ଷକଙ୍କ ପାଚକ ଛାତ୍ରକୁ ଦିଏ । ଯେବେ ପଣ୍ଡିତ ମହାଶୟଙ୍କ ପାଇଁ ଭାତ ବଢ଼ା ହେଲାବେଳେ ମୁଁ ଠିଆ ହୋଇଥିଲି । ଦେଖିଲି ଯେ ପ୍ରତିଦିନ ସେ ଭାତସଙ୍ଗେ ଖାଇବା ପାଇଁ ଘିଅ ଯେଉଁ ଠେକିରୁ କାଢ଼ନ୍ତି ସେ ଠେକି ଥାଳି ପାଖେ ନାହିଁ । ପଣ୍ଡିତଙ୍କୁ ପଚାରିବାରୁ ସେ କହିଲେ 'ଘିଅ ସରିଯାଇଛି ପୁଣି ଆଣିବା ।' ଏହାଶୁଣି ମୁଁ ଆମ ଘର ଭିତରକୁ ପଶିଗଲି । ଦେଖିଲି ଯେ ନନାଙ୍କ 'ଠାଆ' ପାଇଁ ଆମର ଭୃତ୍ୟବ୍ରାହ୍ମଣ ଟୋକା ଘିଅଖିଆ ଗିନାରେ ଅଧଗିନାଏ ଘିଅ ନନାଙ୍କ ଖାଇ ବସିବା ସ୍ଥାନକୁ ନେଉଛି । ମୁଁ ସେ ବ୍ରାହ୍ମଣ ଟୋକାଠାରୁ ଗିନା ସୁଦ୍ଧା ଘିଅକୁ ଛଡାଇ ନେଇ ପଣ୍ଡିତଙ୍କ ପାଇଁ ଥାଳିରେ ବଢ଼ା ହୋଇଥିବା ଭାତ ଉପରେ ଘିଅଯାକ ଢାଳି ଦେଲି ଓ ଗିନାଟି ସେହିଠାରେ ପକାଇ ଦେଇଗଲି । ପଣ୍ଡିତେ କାବାଭୂତ ହୋଇ ରହିଁଥାଆନ୍ତି । ମୋତେ ପଚାରିଲେ "ଏ ଘିଅ କେଉଁଠୁ ଆଣିଲୁ ?" ମୁଁ କହିଲି "ବ୍ରାହ୍ମଣଟୋକା ଘିଅ ନେଉଥିଲା ମୁଁ ତାଠାରୁ ଛଡ଼ାଇ ଆଣିଲି ।" ସେତେବେଳେ ସମସ୍ତଙ୍କର ଖାଇବସିବା ବେଳ (ସକାଳ ପ୍ରାୟ ୧୦ଟା) । ପଣ୍ଡିତେ ମୋ କ୍ଷିପ୍ରକାରିତା ଦେଖି ସାବଧାନ ହୋଇ ଭାତଖାଇବାକୁ ନବସି ଆମ ଘରଭିତରକୁ ଚୁଲି ଚୁଲି ହୋଇଗଲେ । ଦେଖିଲେ ଯେ ନନାଙ୍କ ସର୍ଦ୍ଦାର ବେହେରା, ଛାମୁକରଣ, ବ୍ରାହ୍ମଣଟୋକାଙ୍କ ମଧ୍ୟରେ ଭୟଙ୍କର ବାଗ୍‌ଯୁଦ୍ଧ ଲାଗିଛି । ବ୍ରାହ୍ମଣଟୋକା କାନ୍ଦି କରି କହୁଛି "ବଡ଼ବାବୁ ଠାଆରେ ବସିଛନ୍ତି । ମୁଁ ତାଙ୍କ ପାଇଁ ସରଘରିଆଠାରୁ ଘିଅ ନେଇ ଯାଉଥିଲି ସାନବାବୁ ମୋ ହାତରୁ ଛଡ଼ାଇ ନେଇ ଦାଣ୍ଡ ଆଡ଼କୁ ପଳାଇଲେ ।' ତେଣେ ବଡବାବୁ ଠାଆରେ ଘିଅ ପାଇଁ ରହିଁ ବସିଛନ୍ତି । ସରଘରିଆ ଗାଧୋଇବାକୁ ଗଲାଣି, ଘିଅଗିନାତ ସାନବାବୁ .ନେଇଗଲେ, ମୁଁ ତ ଗାଳିଖାଇବି, ମୁଁ କରେଁ କଅଣ ?" ପଣ୍ଡିତେ ଏହାଶୁଣି କ୍ଷିପ୍ରପାଦରେ ନିକଟସ୍ଥ ପୋଖରୀ କୂଳରୁ ସରଘରିଆକୁ ଡାକିଆଣିଲେ

ଓ ଆପଣାପାଇଁ ବଢ଼ା ହୋଇଥିବା ଘିଅ ଥାଳୀ ପାଖେ ମୁଁ ଯେଉଁ ଘିଅଗିନାକୁ ଥୁଇଦେଇ ଆସିଥିଲି, ସେ ଗିନାକୁ ଧୋଇ ସରଘରଅ ଠାରୁ ଘିଅ ନେଇ ନନା ଠାଆରେ ବସିଥିବା ଜାଗାରେ ପହଞ୍ଚିଲେ, ଦେଖିଲେ ଯେ ନନା ପୀଢ଼ାରେ ବସିଛନ୍ତି, ଆଗରେ ଖାଦ୍ୟଦ୍ରବ୍ୟ ବଢ଼ାହୋଇଛି । ବ୍ରାହ୍ମଣଟୋକା ଘିଅ ନେଇ ଆସିବ ବୋଲି ରହି ବସିଛନ୍ତି । ଏହି ଅବସ୍ଥାରେ ଘିଅଗିନାଧାରୀ ପଣ୍ଡିତଙ୍କୁ ଦେଖି ନନା ଆଶ୍ଚର୍ଯ୍ୟ ହୋଇ ଏଥିର କାରଣ ପଚାରିବାରୁ ପଣ୍ଡିତେ ମୋ କୀର୍ତ୍ତି ବର୍ଣ୍ଣନା କଲେ । (ଏଠାରେ ଉଲ୍ଲେଖ କରିବା ଉଚିତ ଯେ ସ୍କୁଲକୁ ମୋ ପିତୃଦେବ ଏପରି ଆପଣାର ବୋଲି ଜ୍ଞାନ କରିଥାନ୍ତି ଯେ ଶିକ୍ଷକମାନଙ୍କୁ ଏମନ୍ତକି ସ୍କୁଲର ଛାତ୍ରମାନଙ୍କୁ ଆମ ଘରର ଅନ୍ଦର ମହଲ ପର୍ଯ୍ୟନ୍ତ ବାରଣ ନଥାଏ ଓ ସେମାନଙ୍କୁ ମୋ ପିତୃଦେବ, ପିତାମହୀ, ବଡ଼ବୋଉ (ଦେଠେଇ), ସାନବୋଉ (ଜନନୀ), ପିତାମହସ୍ୱସା (ରାଧାନାନୀ) ଆମ ପରିବାର ଭୁକ୍ତ ବୋଲି ମନେ କରୁଥାଆନ୍ତି ଓ ସେମାନଂକ ସଙ୍ଗେ ସେହିପରି ବ୍ୟବହାର ମଧ୍ୟ କରୁଥାଆନ୍ତି । ଶିକ୍ଷକ ବା ଛାତ୍ରମାନଙ୍କ ମଧ୍ୟରୁ କେହି ପୀଡ଼ିତ ହେଲେ ଆମ ପାରିବାରିକ ଚିକିତ୍ସକ (ଶ୍ରୀ କୃତ୍ତିବାସ ଚଉଧୁରୀ) ସେମାନଙ୍କୁ ମାଗଣା ଚିକିତ୍ସା କରୁଥିଲେ ଓ ଔଷଧ ଦେଉଥିଲେ । ଧୁନିଆଁ ପର୍ବରେ ଶିକ୍ଷକମାନଙ୍କୁ ଓ ଛାତ୍ରମାନଙ୍କୁ ଆମଘରେ ଖାଇବାକୁ ନିମନ୍ତ୍ରଣ କରାଯାଉଥିଲା । ଆମଘରେ ଖୁବ୍ ଆଡ଼ମ୍ବରରେ କାର୍ତ୍ତିକ ମାସରେ ହବିଷ୍ୟାନ୍ନ ବ୍ୟଞ୍ଜନାଦି ପ୍ରସ୍ତୁତ ହେଉଥିଲା । ପରିବାରରେ ପିତାମହୀ, ବଡ଼ବୋଉ ଓ ନନା ହବିଷ୍ୟ ବ୍ରତ କରୁଥିଲେ । କିନ୍ତୁ ୨୮ଜଣ ବାନ୍ଧବ ପରିବାରର ବିଧବା ହବିଷ ଭାତ ରାନ୍ଧିବାକୁ ଆସି ଆମ ଘରେ ହବିଷ କରିବାକୁ ମାସକପାଇ ରହୁଥିଲେ । ମାସକ ମଧ୍ୟରେ କେତେକ ଗ୍ରାମବାସୀଙ୍କୁ, ଶିକ୍ଷକମାନଙ୍କୁ, ବିଶିଷ୍ଟ ପ୍ରଜାମାନଙ୍କୁ ଦିନେଦିନେ ହବିଷ ଭାତ ଖାଇବାକୁ ନିମନ୍ତ୍ରଣ କରାଯାଉଥିଲା । ଏପରି ସ୍ଥଳରେ ଶିକ୍ଷକମାନେ ଅବାଧରେ ଆମ ଘର ଭିତରକୁ ପଶିପାରୁଥିଲେ ଓ ସେମାନଙ୍କୁ ପରିବାରର ସମସ୍ତେ ସ୍ନେହଚକ୍ଷୁରେ ଦେଖୁଥିଲେ । ) ଘିଅଗିନା ନେଇ ନନାଙ୍କ ପାଖରେ ଥୋଇ ଦେଲେ । ନନା ପଣ୍ଡିତଙ୍କଠାରୁ ଜାଣିଲେ ଯେ ତାଙ୍କପାଇଁ ବଢ଼ା ହୋଇଥିବା ଭାତ ପଣ୍ଡିତଙ୍କ ବସାରେ ଅଛୁଆଁ ଥୁଆ

ହୋଇଛୁ । ସବୁ ଶୁଣି ସହାସ୍ୟ ବଦନରେ ମୋ ପିତାମହୀଙ୍କୁ ପାଟିକରି ଡାକ ପକାଇଲେ "ବୋଉ ! ନୂଆପଣ୍ଡିତଙ୍କ ପାଇଁ ଭାତ ଆଣ, ସେ ଏଠେଇଁ ଖାଇବେ ।" ମୋ ପିତାମହୀ ହାଣ୍ଡିଶାଳେ ଥିଲେ ଓ ଡାକଶୁଣି ପଣ୍ଡିତଙ୍କ ପାଇଁ ନନାଙ୍କ ପାଖରେ ପୀଢ଼ାଖଣ୍ଡେ ପକାଇ ଦେଲେ ଓ ଥାଳୀରେ ଅନ୍ନବ୍ୟଞ୍ଜନାଦି ରଖିଦେଲେ । ନନା ସେତେବେଳ ପର୍ଯ୍ୟନ୍ତ ବସି ରହିଥାନ୍ତି । ସେ ଘିଅଗିନା ଧରି ପଣ୍ଡିତଙ୍କ ଭାତ ଉପରେ କିଛି ଢ଼ାଳଦେଲେ ଓ ଦୁହେଁ ଖାଇଲେ, ପଣ୍ଡିତଙ୍କ ଭାତ ଉପରେ ଘିଅତକ ଢାଳଦେଇ ଘିଅଗିନାକୁ ପକାଇଦେଇ ମୁଁ ଅନ୍ତର୍ହିତ ହେଲି । ଘିଅ ଢାଳିବା ପରେ ହେଜିଲି ଯେ ବ୍ରାହ୍ମଣ ଟୋକାଠାରୁ ନନାଙ୍କପାଇଁ ନିଆ ହୋଇଥିବା ଘିଅ ଛଡ଼ାଇ ଆଣିବା ଯୋଗୁଁ ଆଜି ବୁଢ଼ୀ ମାଆ (ପିତାମହୀ)ଙ୍କଠାରୁ ମୋ ଉପରେ ଗୁଡ଼ାଏ ଗାଳିବୃଷ୍ଟି ହେବ । ଏହି ଭୟରେ ମୁଁ ଘର ଭିତର ଆଡ଼କୁ ନ ଯାଇ ଦାଣ୍ଡ ଆଡ଼କୁ ପଳାଇ ଗଲି । ନନାଙ୍କ ଭୋଜନାନ୍ତେ ତାକତରକ ଦେଖି ଘରଭିତରକୁ ଗଲାବେଳକୁ ପହିଲେ ଯାହାକୁ ଡରୁଥିଲି ତାକୁହିଁ ଭେଟିଲି । ବୁଢ଼ୀମାଆ ମୋତେ କିଛି କହିଲେ ନାହିଁ, କିନ୍ତୁ ମୋତେ ଗୁହାଁ ଅପ୍ରସନ୍ନତା ପ୍ରକାଶ କଲେ । କହିଲେ "ହଇରେ ! ତୁ ଏଡେ ବଡ଼ୁଟାଏ; ନନାଙ୍କ ଖାଇବା ପାଇଁ ଘିଅ ଆଣୁଥିଲି; ବାଟରେ ତା ହାତରୁ ଛଡ଼ାଇନେଇ ପଳାଇଲୁ ! ଦିନକୁ ଦିନ ତୋ ବୁଦ୍ଧିବିବେକ ତ ଖୁବ୍ ବଢୁଛି ! ଏ ପାଠସବୁ ମାଷ୍ଟର ଶିଖାଉଛନ୍ତି ସବୁ ।"

ପଛରେ ମୋ ବଡ଼ ଭଉଣୀ ହରନାମୀଙ୍କଠାରୁ ଶୁଣିଲି, ଘିଅ ଛଡ଼ାଇ ନେବାକଥା ଶୁଣି ବୁଢ଼ୀମାଆ ମୋ ଉପରେ ରାଗିକରି ବଡ଼ର ବଡ଼ର ହେଲେ । ପୂର୍ବରୁ ଶିକ୍ଷକମାନଙ୍କ ପାଇଁ କଟାପରିବା, ବଟାବେସର ମୁଁ ନେଇଛୁ ବୋଲି କହୁଥାଆନ୍ତି । ନନା ଏହା ଶୁଣି ତାଙ୍କୁ ଡାକିକରି କହିଲେ "ବୋଉ ! ତୁ ପିଲାଙ୍କୁ ଏଥିପାଇଁ ଆକଟ କରିବୁ ନାହିଁ । ଯେଉଁ ପିଲା ମାଷ୍ଟରଙ୍କୁ ଏଭଳି ଭକ୍ତି କରନ୍ତି ତାଙ୍କର ଭଲ ପାଠ ହୁଏ । ଆଗେ ସବୁ ପିଲାମାନେ ଗୁରୁଙ୍କ ଘରେ ରହି ତାଙ୍କର ସବୁ ଘରକାମ ତୁଲାଉଥିଲେ । ତାଙ୍କ ଗୋଡ଼ ଘଷୁଥିଲେ, ତାଙ୍କ ପାଇଁ ବଣରୁ ଜାଳକାଠ

ଆଣୁଥିଲେ । ଆମ ପିଲାଏ ଡାକଲେ ବୋଲି ତାଙ୍କୁ ଆନନ୍ଦ କରିବୁ ନାହିଁ । ବରଞ୍ଚ ସେମାନଙ୍କର କେତେବେଳେ କଅଣ ଅଭାବ ହେଉଥିବ, ବୁଝିକରି ଭରଣା କରି ଦେଉଥିବୁ । ତାଙ୍କର ଏଠାରେ କିଏ ଅଛୁ ? ଆମେ ପରା ତାଙ୍କର ସବୁ ।" ମାଆ ଏକଥା ଶୁଣି ଥଣ୍ଡା ହୋଇଗଲେ । କିନ୍ତୁ ମନ ଭିତରର କୋହ ଥାଏ କେତେକେ ? ତାଙ୍କ ମନୋରାଜ୍ୟରେ ମକଦ୍ଦମା ଦାଏରହେଲା "ପୁଅ— ବନାମ୍— ନାତିର ପଢାମାଷ୍ଟର ।" ଏଣୁ ପୁଅ ମୋର ରୁହିଁ ବସିଛି, ଏ ଚଣ୍ଡାଳ ନେଇ ଘିଅ ଗିନାକ ମାଷ୍ଟର ପତରରେ ଅଜାଡ଼ିଦେଲା ! ଅତଏବ ରକ୍ତସମ୍ପର୍କ ବଶିଷ୍ଟ ପୁଅଙ୍କୁ ବୁଢୀଙ୍କ କୋର୍ଟରେ ଡ଼ିଗ୍ରୀ ମିଳିଲା । ସେଥିପାଇଁ ମୁଁ ଘରକୁ ଆସିଲାବେଳେ ବୁଢ଼ୀ ଏତିକରେ ଥଣ୍ଡା ହୋଇଗଲେ ।

ପୂର୍ବରୁ କହିଛି ଯେ ଆମଗ୍ରାମ ସ୍କୁଲରେ ବୋଡ଼ିଙ୍ଗ୍ ଥିବାରୁ ପିଲାମାନେ ୩।୪ କୋଶ ବାହରୁ ଆସି ପଢ଼ୁଥିଲେ । ଆମ ଗ୍ରାମର ନିକଟବର୍ତ୍ତୀ କଇଜଙ୍ଗା, କନ୍ଦରପୁର, କମ୍ପୁର ଗ୍ରାମମାନଙ୍କର ପରିବାରମାନଙ୍କରେ ସେହି ସେହି ପରିବାର ଦୂର ଗ୍ରାମବାସୀ ବାନ୍ଧବମାନଙ୍କ ପିଲାମାନେ ମଧ୍ୟ ଆମଗ୍ରାମରେ ଓ ନିକଟବର୍ତ୍ତୀ ଗ୍ରାମରେ ରହୁଥିଲେ । ଆମ ଗ୍ରାମଟି ଅତିଶ୍ରେଷ୍ଠ । ସେଥିରେ ଆମ୍ଭମାନଙ୍କ କୁଟୁମ୍ବ (ଆଚାର୍ଯ୍ୟଉପାଧିଧାରୀ) ସପିଣ୍ଡ, ଅସପିଣ୍ଡ, ସମାନୋଦକମାନଙ୍କର ୮ଟି ପରିବାର, ନନ୍ଦବଂଶଙ୍କର ୩ଟି ପରିବାର, ଗୋଟିଏ ଗଉଡ ଓ ଗୋଟିଏ ତେଲି ପରିବାର ରହୁଥିଲେ । ସବୁ ପରିବାରରେ ଗୋଟିଏ ଦୁଇଟି, ତିନୋଟି ବାନ୍ଧବ ପିଲା ସ୍କୁଲରେ ପଢ଼ିବାକୁ ଆଶ୍ରୟ ପାଇଥାନ୍ତି । ଆମଘରେ ମୋ ମାମୁପୁଅ ଭାଇ, ମାମୁ ଅଜା ପୁଅ କକେଇ, ନନାଙ୍କ ପିଇସୀ ପୁଅ ଭାଇଙ୍କ ପୁଅ ଥାଆନ୍ତି । ଶିକ୍ଷକମାନଂକ ଘରେ ୨।୩ଟି ଓ ଆମ ଗ୍ରାମକରଣଂକଘରେ ତାଂକ ପୁଅ, ପୁତୁରା ହୋଇ ୨।୩ଜଣ ଥାଆନ୍ତି । ଏ ସମସ୍ତେ ଆମ ପରିବାର ଦୃଷ୍ଟିରେ ଆମ ପରିବାର ଭୁକ୍ତ । ମୋ ପିତାଂକ ପିଇସୀ ରାଧୀନାନୀ ବହୁକାଳ ଆମଘରେ ରହୁଥିଲେ, ତାଂକ ନାତି ଆମଘରେ ଥାଏ, ସେତେବେଳେ ଆମ ନିଜର ଗୋଠରେ ୩୦।୪୦ ଗାଈଥିଲେ ଓ ତାଙ୍କୁ ଜଗିବାକୁ ୨ଜଣ ଗଉଡ଼ ଥିଲେ । ଆମ ଗାଈମାନଙ୍କଠାରୁ ଦିନକୁ ୧୦।୧୨ ସେର ଦୁଧ

ମିଳୁଥିଲା । ଆମେ ସେ ସମୟରେ ଦୁଧରେ କୁଳୁକୁଞ୍ଚା କରୁଥିଲୁ । ଦୁଧ, ବସାଦହି, ଘୋଳଦହି ଓ ଦୟୂଳଖାନ (ଘରମରା ଗୁଆଘିଅ) ପର୍ଯ୍ୟାପ୍ତ ମିଳୁଥିଲା । ପିଲାଦିନେ ମୁଁ ଦେଖିଛି ଯେ କ ଖାଇବାପିଇବାରେ, କ ଶୋଇବାରେ, କ ଲୁଗା ପିନ୍ଧିବାରେ, କ ଗୁରୁଜନଙ୍କଠାରୁ ସମାନ ବ୍ୟବହାର ପାଇବାରେ, କେଉଁଥିରେ ଘରପିଲାଂକ ସଙ୍ଗେ ବାନ୍ଧବମାନଙ୍କ ପଢ଼ୁଆ ପିଲାଙ୍କର କୌଣସି ପାର୍ଥକ୍ୟ କରାଯାଉ ନଥିଲା । ଦୋଳ, ଦଶହରା, ଗମ୍ଭାପୂର୍ଣ୍ଣିମା ଓ ପ୍ରଥମାଷ୍ଟମୀ ବର୍ଷକ ମଧ୍ୟରେ ଏ ଚାରିଗୋଟି ଉତ୍ସବରେ ଘରର ଆବାଳବୃଦ୍ଧ ବନିତା, ଚାକରବାକର, ଗୁମୁକରଣ ସଦରଗୁମାସ୍ତା, ମୂଲିଆ ହଳିଆ, ଗଉଡ଼ ଭଣ୍ଡାରୀ, ଏବାନ୍ଧବ ପଢ଼ୁଆପିଲା, ସମସ୍ତେ ନଆ ଲୁଗା ପିନ୍ଧୁଥିଲେ । କେବଳ ପ୍ରଥମାଷ୍ଟମୀ ଓ ଶ୍ରୀପଞ୍ଚମୀ ଦିନ ଶିକ୍ଷକମାନଙ୍କୁ ଆମଘରୁ ନଆଲୁଗା ମିଳୁଥିଲା । ଆମ ଘରେଥିବା ବାନ୍ଧବ ପଢ଼ୁଆ ପିଲାମାନେ ଆମ ସାଙ୍ଗରେ ଖାଉଥିଲେ; ଶୋଉଥିଲେ, ଆସପର ଅଳିକରୁଥିଲେ, ଅଳଅଟ ହେଉଥିଲେ, ଅମାନିଆ ହେଉଥିଲେ । ପିଲାଦିନେ କାଶୀପଣ୍ଡିତଙ୍କଠାରୁ ବର୍ଣ୍ଣବୋଧ, ପଣିକିଆ, ବାଞ୍ଛାନିଧି ମାଷ୍ଟରଙ୍କଠାରୁ ଇଂରାଜୀ ପଢ଼ିଲି । ଜାନକୀରାମ ସିଂହ ପଣ୍ଡିତଙ୍କଠାରୁ ଉତ୍ତମ ହସ୍ତାକ୍ଷର ଶିଖିଲି ଓ ଈଶ୍ୱରଚନ୍ଦ୍ର ପଣ୍ଡିତଙ୍କଠାରୁ ଭର୍ଣ୍ଣାକୁଲର ପାଇଁ ପଢ଼ାହେଉଥିବା ସାହିତ୍ୟରେ ରୁଚି ଲଭ କଲି ।

ନନା ତ ସବୁବେଳେ ଗ୍ରାମରେ ରହୁ ନ ଥାନ୍ତି; ସେ ବେଶୀ ସମୟ ମଫସଲରେ ଓ କେତେକ ସମୟ କଟକରେ ରହୁଥିଲେ । ଯେତେବେଳେ ନନା ଗ୍ରାମକୁ ଆସୁଥିଲେ, ସେତେବେଳେ ସବାରକାନ୍ଧିଆ ବେହେରାମାନଙ୍କ ଡାକରେ ଆମ ଗାଆଁ ଉଚ୍ଛୁଳି ଉଠୁଥିଲା । (ନନା ମଧ୍ୟ ଘୋଡ଼ା ଚଢ଼ୁଥିଲେ ଓ ଅନେକ ଭଲ ଘୋଡ଼ା ଆଣି ରଖୁଥିଲେ କିନ୍ତୁ ତାଙ୍କର ସିଂହରାଶି ଥିବାରୁ କୌଣସି ଘୋଡ଼ା ତାଙ୍କ ନିକଟରେ ଉଧେଇଲେ ନାହିଁ) । ସେ ସମୟରେ ନନାଙ୍କ ପାନ ପେଟରାରୁ ପାନଗୁଆ ଖାଉଥିଲୁ । ତାଙ୍କ ସରଘଣିଆ ପ୍ରସାଦରୁ ପ୍ରତିଦିନ ଭାତ ଖାଇଲାବେଳେ ଗିନାଏ ଅଧଗିନାଏ ଘିଅ ଆମେ ନେଉଥିଲୁ । ନନା ଗ୍ରାମରେ ଥିଲାବେଳେ ଆମକୁ ଘରେ ପଢ଼ାଉଥିବା ଶିକ୍ଷକମାନେ ତାଙ୍କ ଉପରେ ଆମକୁ ବେଶି

ମାଡ଼ ମାରନ୍ତି ନାହିଁ । ନନା ଥିବା ସମୟରେ ତାଙ୍କ ପାଇଁ ଛ'ତିଅଣ ନଅଭଜା ହେଉଥାଏ । ଆମେ ଇସ୍କୁଲକୁ ଗଲାବେଳକୁ ତାଙ୍କର ଠାଆ ବଢି ନ ଥାଏ । ତେଣୁ ଇସ୍କୁଲକୁ ଯିବା ପୂର୍ବରୁ ୧୦ଟା ବେଳେ ଆମେ ଭାତ ଖାଇ ବସୁ । ସେତେବେଳେ ନନାଙ୍କ ପାଇଁ ରନ୍ଧାବଢା ହୋଇଥିବା ତିଅଣ ଭଜା ଆଦିର ପାକ ସରି ନ ଥାଏ ଓ ସେହି ଦ୍ରବ୍ୟ ଦିଅଁଙ୍କ ପାଖେ ନିବେଦିତ ହେବ ବୋଲି ସେଥିରୁ 'ଭଗୁରି' କରି ଆମକୁ ଦିଆ ହୁଏ ନାହିଁ । କିନ୍ତୁ ଖେଳକୁଟି ବେଳେ ଘରକୁ ଆସି ଖାଇ ବସିଲାବେଳେ ସେଦିନ ନନାଙ୍କ ପାଇଁ ପ୍ରସ୍ତୁତ ହୋଇଥିବା ତିଅଣ, ଶାକର, ବଡ଼ିଫୁଲ, ନଡ଼ିଆଭଜା, ଚଟଣି ଆଦି ସବୁ ଆମ ଭାଗରେ ପଡେ । ତେଣୁ ନନାଙ୍କ ଗ୍ରାମରେ ଥିବା ସମୟଟିକ ଆମକୁ ଭାରି ଉତ୍ସବମୟ ଲାଗେ । ତାପରେ ଦିନରାତି ନନାଙ୍କ ପାଖକୁ ଲୋକବାକ ଯିବା ଆସିବା ବନ୍ଦ ନ ଥାଏ । ନନାଙ୍କ ସାଙ୍ଗରେ ସବୁଦିନେ ଜଣେ ଦି'ଜଣ ବାବାଜି ଓ ଦୁଇଜଣ ବାନ୍ଧବ ଥାଆନ୍ତି । ଏଥି-ପାଇଁ ନନାଙ୍କର ଗ୍ରାମରେ ଥିବା ସମୟ ଆମକୁ ଉତ୍ସବମୟ ଲାଗେ ଓ ସେ ଘରୁ ଚାଲିଗଲେ ଆମକୁ 'ଖାଇ ଗୋଡ଼ାଏ' । ପିଲାଦିନେ ମୋର ଦେଉଡ଼ୁଚା ପୁଅ ଭାଇ ( ରାୟ ବାହାଦୁର ଚିନ୍ତାମଣି ଆଚାର୍ଯ୍ୟଙ୍କ ଜ୍ୟେଷ୍ଠ ପିତାମହ ) ଶ୍ରୀ ରାଧାମାଧବ ସାମନ୍ତରାୟ ଖୁବ ଅଯ୍ୟସରେ ରହି ଖୁବ ଧନବ୍ୟୟ କରୁ-ଥାଆନ୍ତି । ସେ ଇଂରାଜି ପଢି ନ ଥିଲେ, କିନ୍ତୁ ତାଙ୍କର ସହଚର, ଅନୁଚର, ପାର୍ଶ୍ୱଚରମାନଙ୍କ ସଙ୍ଗେ ସେ 'ସି ସି' ଠାଉରେ କଥାବାର୍ତ୍ତା କରୁଥିଲେ । ସେ ବେଳେ ବେଳେ ଆମ ଘରକୁ ଆସୁଥିଲେ ଓ ବର୍ଷକେ ୩ ଥର ଶ୍ରାଦ୍ଧ (ମୋ ଦାଦେଇ, ପିତାମହ ଓ ଜ୍ୟେଷ୍ଠ ପିତାମହୀଙ୍କର) ହେଉଥିଲା । ସେହି ଉପଲକ୍ଷେ ତାଙ୍କୁ ନିମନ୍ତ୍ରଣ କରିବାକୁ ମୋତେ ବା ମୋ ସାନଭାଇ 'ଉଦ୍ଧି'କୁ 'ଡରତୋ' ଶାସନ ଯିବାକୁ ପଡେ । ପାରି-ବାରିକ ବିଷୟ ଓ ଇତିହାସ ପ୍ରସଙ୍ଗରେ ତାଙ୍କର ଆମର କୁଟୁମ୍ବିତା କଥା କହିବି । ଡରତୋ ଯିବାକୁ ହେଲେ ଆମକୁ ପାଇକା ନଈ ଓ ମହାନଦୀ ପାରି ହେବାକୁ ପଡ଼େ । ସେ ଗ୍ରାମ ଆମ ଗ୍ରାମଠାରୁ ପ୍ରାୟ ୭ ମାଇଲ ହେବ ଓ ସେଠାରେ ରାଧାମାଧବଙ୍କ ପିତାମହ ( ଗୋପବନ୍ଧୁ ରାଏଗୁରୁ ) ବାସବାସ କରି ରହୁଥିଲେ, ମୁଁ ଯେତେବେଳର କଥା କହୁଛି, ସେତେ-ବେଳେ ତାଙ୍କ ଗ୍ରାମରେ ଦୋମହଲା କୋଠା, ୫।୭ଟା ବେଶି ଦାମିକା,

ଜାତଆ ଘୋଡା, ପଦବବାଲ, ବରକନ୍ଦାଜ, ଝାଡ଼ ଲଣ୍ଠନ ସଜ୍ଜିତ ବୈଠକଖାନା ହେତୁ ତଣତୋ ହସି ଉଠୁଥାଏ । (ଦୁଃଖର କଥା ଯେ ରଘୁନାଥ ସାମନ୍ତରାୟଙ୍କ ୪ ପୁଅ ମଧ୍ୟରୁ ଜ୍ୟେଷ୍ଠ କୃଷ୍ଣଚନ୍ଦ୍ର, ତାଙ୍କ ପିତୃ-ଵିୟୋଗ (ମୋ ଦଦେଇଙ୍କ ମୃତ୍ୟୁ ବର୍ଷ) ପୂର୍ବରୁ ଦେହତ୍ୟାଗ କରିଥିଲେ । ରଘୁନାଥ ସାମନ୍ତରଙ୍କ ଅନ୍ତେ କୃଷ୍ଣଚନ୍ଦ୍ରଙ୍କ ବିଧବା ସ୍ତ୍ରୀ ଶ୍ରୀମତୀ ଅପ୍ସରା ଦେବ୍ୟା ଓ ପୁତ୍ର ଶ୍ରୀ ବ୍ରଜସୁନ୍ଦର ପାଟଯୋଷୀ ତରତୋରୁ ୧୫ ମାଇଲ ଦୂରବର୍ତ୍ତୀ ପୁରୁଣା ହାଟରେ ରହୁଥିଲେ । ଅନ୍ତରକ୍ତ ବ୍ୟୟ ଯୋଗୁଁ ଦେଏଣା ହେବାରୁ ରାଧାମାଧବ ଓ ତାଂକର ଅନ୍ୟ ଦୁଇଭାଇଙ୍କ ସମ୍ପତ୍ତି ନିଲାମ ହୋଇଗଲା । କେବଳ ଶ୍ରୀମତୀ ଅପ୍ସରାଂକ ଦୂରଦର୍ଶିତା ଯୋଗୁଁ କୃଷ୍ଣଚନ୍ଦ୍ରଂକ ସମ୍ପତ୍ତି ଉଡ଼ିଗଲା ନାହିଁ ଓ ସେ ସମ୍ପତ୍ତି ତାଂକ ପୁତ୍ର ବ୍ରଜସୁନ୍ଦର ଓ ତାଂକ ଅନ୍ତେ ବ୍ରଜସୁନ୍ଦରଂକ ପୁଅମାନେ ଭୋଗ କରୁ-ଅଛନ୍ତି) । ତରତୋର ସାଜସଜା ଓ ଆଡ଼ମ୍ବର ଦେଖି ମୋ ମନ ବାୟା ହୋଇ ଯାଉଥାଏ । ରାଧାମାଧବ କେବେ କେବେ ଘୋଡ଼ାରେ ଚଢି ଆମ ଘରକୁ ଆସୁଥିଲେ, କିନ୍ତୁ ସେ ଆମ ଘରେ ନ ରହି ବିଶ୍ବାଳଢ଼ଢରେ ଥିବା ତାଂକ କୋଠିରେ ରହୁଥିଲେ । ତାଂକର ବିଶେଷତ୍ୱ ଥିଲା ଯେ, ତାଂକର ଗୋଡ଼ା ସର୍ଦ୍ଦାର ବେହେରା ରାଧୁ ବେହେରା ତାଂକଠାରୁ ବଳି ମୂଲ୍ୟବାନ ପୋଷାକ ପିନ୍ଧି ଥିଲା; ଥରେ ରାଧାମାଧବ (ମୁଁ ତାଙ୍କୁ ଡ଼ାକୁ-ଥିଲି ମାଧବ ଭଇନା) ଓ ସର୍ଦ୍ଦାର ବେହେରା ଆମ ଘରକୁ ଆସିଥିଲେ, କିନ୍ତୁ ରାଧୁ ବେହେରାଂକ ଚେହେରା ଓ ପୋଷାକରେ ଭ୍ରମରେ ପଡ଼ି ମାଧବ ଭଇନାଙ୍କୁ ନମସ୍କାର ନ କରି ରାଧୁ ବେହେରାକୁ ନମସ୍କାର କଲି ଓ ଉପସ୍ଥିତ ବ୍ୟକ୍ତିମାନଂକ ହାସ୍ୟାସ୍ପଦ ହେଲି । କାଶୀ ପଣ୍ଡିତ ଗୀତରେ 'ନଡଆ ଘରେ' ଆମକୁ ଚିଡାଉ ଥାଆନ୍ତି । ସେତେବେଳେ କିରାସିନି ତେଲ ବା କିରାସିନି ଲଣ୍ଠନ ଆଦୌ ଚଳି ନ ଥାଏ । ନନା କୁଆଡ଼େ ଗଲେ ତାଂକ ସଙ୍ଗେ ଚୃଉକୋଣିଆ ମହମବତୀ ଜଳା ଲଣ୍ଠନ ଯାଉଥିଲା ଓ ଘରେ ବସିଲାବେଳେ କାଚ ଗିଲାସରେ ନଡ଼ିଆ ତେଲ ଜଳା ହେଉଥିବା ତେଙ୍ଗା ଚୃଉକୋଣିଆ ଓ ଦେଉଳିଆ ଲଣ୍ଠନ ବ୍ୟବହୃତ ହେଉଥିଲା । ଆମଘରେ ଅନ୍ୟତ୍ର ଜଡା ତେଲର ଦୀପମାନ ଜଳୁଥାଏ । ଆମମାନଙ୍କୁ ପଢାଇବାରେ ଡାମ ବାରିକ ଅନ୍ଦାଜ ଅଧପାଏ ଜଡାତେଲ ଢଳା ଦୀପରେ

ଦୁଇଟି ବଳଡା ଲଗାଇ ଧାପରୁଖା ଉପରେ ସନ୍ଧ୍ୟାବେଳେ ରଖି ଦେଇ ଯାଏ । ସେ ଧାପରେ ତେଲ ନ ସରିବା ପର୍ଯ୍ୟନ୍ତ କାଶୀ ପଣ୍ଡିତ ଆମକୁ ଘରକୁ ଯାଉଦିଅନ୍ତି ନାହିଁ । ଏଥିପାଇଁ ଆମେ ପିଲାଯାକ ଦାମ ବାରିକକୁ ଜିତିବା ପାଇଁ ଗୋଟିଏ ଫିକର କଲୁ । ଦିନ ବେଳେ ଧାପରୁଖା ସହିତ ଧାପସବୁ ଘରକଣରେ ରଖା ହୋଇଥାଏ । ସେହି ସମୟରେ ଘରେ ଦାମ ବାରିକ ନଥିଲାବେଳେ ଗୁମୁକରଣଙ୍କ ପାଞ୍ଜି ବିଡ଼ାରୁ ଲୁଚେଇ କରି ତାଂକ ଲେଖଣୀ ଆଣି ମୁଁ ସେ ଧାପ ତଳେ ଗୋଟିଏ ସରୁଆ କଣା ଫୋଡ଼ିଲି । ଅନ୍ୟ ସାଙ୍ଗମାନଙ୍କର ଏ କାମ କରିବାକୁ ସାହସ ପାଇଲେ ନାହିଁ । କୌଣସି ଦୁଃସାଧ୍ୟ ବା ବଦନାମିଆ କାମ କରିବାକୁ ପଡ଼ିଲେ ସାଙ୍ଗଯାକ ମୋତେ ମୁଖିଆ କରନ୍ତି ଓ ମୋ ହାତରେ ସେ କାମ କରାନ୍ତି । ତାପରେ ଦାମ ବାରିକ ନିତି ସନ୍ଧ୍ୟାବେଳେ ସେ ଧାପରେ ତେଲ ପୂର୍ଣ୍ଣ କରି ସେ ଧାପକୁ ଆମ ପଢ଼ାଘରେ ଜାଳି ଦେଇଯାଏ । ଅଧଘଣ୍ଟାଏ ମଧ୍ୟରେ ଲେଖନିଫୁଟା ଜଳାବାଟେ ତେଲତକ ବୋହିଯାଇ ବହୁକାଳଯାବତ୍ ତୈଳ ଚର୍ଚ୍ଚିତ କାଠର ପ୍ରକାଣ୍ଡ ରୁଖାରେ ଭେଦିଯାଏ । ଧାପରୁ ତେଲ ସରିଯିବାରୁ ଆମେ କାଶୀ ପଣ୍ଡିତଙ୍କଠାରୁ ଛୁଟି ପାଇ ଓ ବାଉଁଙ୍କ ଘରେ ମାଳ ଗଡ଼ାଉଥିବା ବୁଢ଼ୀ ମାଆଂକ ପାଖରେ ପହଞ୍ଚି ତାଂକଠାରୁ ପୁରାଣ କାହାଣୀ ଶୁଣିବାକୁ ଫର୍ମାସ କରୁ ।

ଏଠାରେ ଉଲ୍ଲେଖ କରିବା ଉଚିତ ଯେ ମୋ ବୁଢ଼ୀ ମା ମୋ ପିତାଂକ ଜନ୍ମଦାତ୍ରୀ ମାତା ଓ ମୋ ଜ୍ୟେଷ୍ଠ ପିତାମହଂକ ସ୍ତ୍ରୀ, ମୋ ନିଜ ପିତାମହଂକ ସ୍ତ୍ରୀଙ୍କର ମୋ ବଦେଇଂକ ସଙ୍ଗେ ହଇଜାରେ ମୃତ୍ୟୁ ଘଟିଥିଲା । ମୋ ପିତାମହ ମୋ ନନାଂକୁ ପୋଷ୍ୟପୁତ୍ର କରି କୁଳରକ୍ଷା କରିଥିଲେ । ମୋ ବୁଢ଼ୀ ମା' ଆଦୌ ଲେଖାପଢ଼ା ଜାଣି ନ ଥିଲେ । ଯେଉଁ ସମୟର କଥା କହୁଚି ସେତେବେଳକୁ ତାଙ୍କ ବୟସ ସତୁରିକୁ ଟପିଥିଲା । ଆମ ବାଉଁଙ୍କ ଘରେ ପ୍ରତିଦିନ ବିଷ୍ଣୁ ସହସ୍ର ନାମ ପୁରୁଷସୂକ୍ତ ଓ ଜଗନ୍ନାଥ ଦାସଂକ ଭାଗବତ, ଓଡ଼ିଆ ରାମାୟଣ, ମହାଭାରତ ବୋଲାଯାଉଥାଏ । ଏ ସମସ୍ତ ଶୁଣିଶୁଣି ଏସବୁର ପଂକ୍ତିମାନ ସେ ଏପରି ସ୍ପଷ୍ଟଭାବରେ ମନେରଖିଥିଲେ ଯେ ଯେବେ ବୋଲିବାବାଲା କେଉଁଠି ଝୁଣ୍ଟି ପଡନ୍ତି ତେବେ ବୁଢ଼ୀମା' ସଙ୍ଗେ

ସଙ୍ଗେ ବଡ଼ାଇ ଦିଅନ୍ତି । ଆମଘରେ ପ୍ରତିଦିନ ବୈଶ୍ବଦେବ ବଳି ଦିଆଯାଉଥିଲା । ବୈଶ୍ବଦେବ ପରିବାରର ଉପଞ୍ଜୀବଧାର୍ଯ୍ୟ ବ୍ୟକ୍ତି କରନ୍ତି । ଯେଉଁଦିନ ବୈଶ୍ୱଦେବ କରିବାକୁ ଘରେ କେହି ନଥାନ୍ତି ବା କେହି ବ୍ରହ୍ମଚାରୀ ବ୍ୟକ୍ତି ନ ମିଳନ୍ତି ସେଦିନ ମୁଁ ବ୍ରତ ହୋଇଥିବାରୁ ବୁଢ଼ୀମା ମୋତେ ଡ଼ାକିନିଅନ୍ତି ଓ ବୈଶ୍ବଦେବ ପାଇଁ ହୋଇଥିବା ଠା' ଉପରେ ପାଞ୍ଚ ଖଣ୍ଡି ପତ୍ରରେ ବଡ଼ାହୋଇଥିବା ଅନ୍ନକୁ କପର ଓ କେଉଁଠି ବଳି ଦିଆଯିବ ତାହା ହାତଠାରି ଦେଖାଇ ଦେଉଥା'ନ୍ତି । ସେ ମୁହେଁ ମୁହେଁ ବୈଶ୍ବଦେବର ଅଗ୍ନିସ୍ଥାପନ, ଅଗ୍ନିବଳି, ଦିଗପାଳବଳି, ପିତୃପିତାମହ ଓ ମାତାମହ ଆଦିଙ୍କବଳି, ସପ୍ତର୍ଷିବଳି, ଯକ୍ଷବଳି, କୁକୁର, ଚଣ୍ଡାଳ ଓ କାକମାନଙ୍କ ବଳି ମନ୍ତ୍ରମାନ ବୋଲି ଯାଉଥା'ନ୍ତି । ଏ ବିଷୟ ଏଠାରେ ଅବତାରଣା କରିବା ଉଦ୍ଦେଶ୍ୟ ଏହିକି ଆମ ବୁଢ଼ୀମା କାହାଣୀ ଓ ପୌରାଣିକ ଉପାଖ୍ୟାନର ଖଣି ଥିଲେ । ତାଙ୍କଠାରୁ ମୁଁ ଆମ ବଂଶର ଇତିହାସ, ବର୍ଗୀମାନଙ୍କ ଗ୍ରାମ ଆକ୍ରମଣ ଓ ଲୁଟ୍‌ପାଟ ଆଦି ଶିଶୁକାଳରେ ଶୁଣିଥିଲି । ଲୋକେ ଜାଣିବାକୁ ମୋ ପିତୃଦେବ (ନନା) ଆମଘରର 'କର୍ତ୍ତା' ଥିଲେ, କିନ୍ତୁ ପ୍ରକୃତରେ ବୁଢ଼ୀମାଆହିଁ ଆମ ପରିବାରର କର୍ତ୍ତା ଥିଲେ । ନନା ସବୁକଥାରେ ତାଙ୍କ ଆଦେଶ ପାଳନ କରୁଥିଲେ । ବୁଢ଼ୀମାଆ ଓ ରାଧାନାନୀ (ମୋ ପିତାଙ୍କ ପିଉସୀ)ଙ୍କ ପିଡ଼ାଲୁଗା କାନିରେ ଲୁଣ, ଲଙ୍କାମରିଚ, ଆମ୍ବୁଲ, ତେନ୍ତୁଳି ଆଦିର ସବୁବେଳେ ବନ୍ଧାହୋଇଥାଏ । ପିଲାବେଳେ ମୋ ପାଇଁ ଏହା ଗୋଟିଏ କୌତୂହଳର ବିଷୟ ଥିଲା ।

ଆମ ପରିବାରରେ ଗୃହଶାଳାର୍ମ ପରିବାରର ସ୍ତ୍ରୀମାନେ ଓ ଆତ୍ମସ୍ବାର୍ଥ ସମାଗତ ବାନ୍ଧବ-ସ୍ତ୍ରୀ ଓ ବିଧବାମାନେ କରୁଥିଲେ । ପରିବାରର ସ୍ତ୍ରୀ ପୁରୁଷ, ଆବାଳବୃଦ୍ଧବନିତା, ଇସ୍କୁଲ ପଢ଼ୁଆ ନିଜପିଲା ଓ ବାନ୍ଧବ ପିଲା ଗୃହମୁକରଣ, ସରଘରିଆ, ଗାଈରଖାଗଉଡ଼, କୋଠିଆ, ହଳିଆ ଓ ଖମାରେଇ ସମସ୍ତଙ୍କୁ ଶିଖାଇଲେ । ସେମାନଙ୍କ ସଂଖ୍ୟା ୩୦ରୁ କମ୍ । ଏ ୩୦ ଜଣଙ୍କ ଛଡ଼ା ନନା ଘରେଥିବା ବେଳେ ସେ ଓ ତାଙ୍କ ସଙ୍ଗେ ଥିବା ବନ୍ଧୁ ବାନ୍ଧବ ଓ ବଦାନ୍ୟ ବୈଷ୍ଣବ, ତାଙ୍କ ସର୍ଦ୍ଦାର ବେହେରା ଓ ତାଙ୍କର

ପ୍ରବାସକାଳୀନ ପାଚକ ଓ ତାଙ୍କ ସଦର ସିରସ୍ତାର ଗୁମାସ୍ତା ଏମାନଙ୍କ ସଂଖ୍ୟା ପ୍ରତିଦିନ ୫୦ରୁ ୧୦୦ଥିଲା । ଏହାଛଡ଼ା ସମାଗତ ଯୋଗୀମାନଙ୍କୁ ପ୍ରତିଦିନ ଦୁଇ ପ୍ରହରେ ପଖାଳଭାତ ଓ ତୋରାଣି ଆଳଗୁଣ୍ଡିକରି ଦିଆହେଉ ଥିଲା । ଏପରି ବହୁକୁଟୁମ୍ବୀ ପରିବାରଙ୍କ ପାଇଁ ପାକ ଘର ପାଖରେ ହେଉଥିଲା । ଖାଇବା ଲୋକଙ୍କର ଅନ୍ନ ନଅଣ୍ଟ ନଥିଲା । କିନ୍ତୁ ବେଳେ-ବେଳେ ଖାଇବା ପାଇଁ ପଛରେ ଆସି ପହଞ୍ଚିଥିବା ଅଖିଆ ଲୋକଙ୍କ ପାଇଁ ପାଗହାଣ୍ଡିରେ ତିଅଣ ଅଳ୍ପ ମାତ୍ର ବାକି ଥାଏ । ତିଅଣ ନ ଅଣ୍ଟିବାରୁ ଦରଖିଆ ଗୁଳକର, କୋଠିଆ, ହଳିଆମାନେ ଖାଲି ଭାତ ଗଳାଧଃକରଣ କରିବାକୁ ଚେଷ୍ଟା କରୁଥାଆନ୍ତି । କେଜାଣି କିଏ ଅନ୍ଦର ମହଲରୁ ତିଅଣ ଶୀଘ୍ର ଆଣି ପହଞ୍ଚିବ । ସେଥିଲାଗି ଚାହିଁ ରହିଥାଆନ୍ତି । ଏତିକିବେଳେ ବୁଢ଼ୀମାଆ ଓ ରାଧାନାନୀ ଆସି ପହଞ୍ଚିଯାଆନ୍ତି ଓ କାନିରୁ ଆମ୍ବୁଲ ବା ଆମ୍ବୁର ବା ତେନ୍ତୁଳି ଓ ଲୁଣ, ଲଙ୍କା କାଢ଼ି ଦରଖିଆ ଲୋକଙ୍କ ପତରରେ ଦିଅନ୍ତି, ସେମାନେ ତତ୍ପ୍ରସାଦାତ୍ ପତରରେ ଥିବା ଭାତତକ ଆନନ୍ଦରେ ନିଃଶେଷ କରନ୍ତି । ବୁଢ଼ୀମାଆ ଓ ରାଧାନାନୀଙ୍କର ଗୋଟିଏ ଗୁଣ ମୁଁ ଦେଖିଥିଲି । ପରିବାରର ପାକରେ ଯେଉଁମାନେ ଖାଉଥିଲେ ଖାଇଲାବେଳେ ସେମାନଙ୍କୁ ଦେଖିବାକାମ ଏ ଦୁହିଁଙ୍କର ଥିଲା । ଦିନ, ଦଶଘଡ଼ିଠାରେ ଗୃହଧନ୍ଦାରୁ ସମାଗତ କୋଠିଆ, ହଳିଆ, ଗୋରୁଜଗିଆ ଓ ଗୁଳକରମାନେ ପୂର୍ବାହ୍ନସେବ୍ୟ ଭାତ ଖାଉଥିଲେ ଓ ରାତି ଦୁଇପ୍ରହର ବେଳକୁ ସନ୍ଧ୍ୟା ସେବ୍ୟ ଭାତ ଖାଉଥିଲେ । ସେମାନେ ଖାଇସାରିବାପରେ ବୁଢ଼ୀମାଆ ବା ରାଧାନାନୀ କିମ୍ବା ଦୁହେଁ ଆମ୍ଭ ଦାଣ୍ଡଦୁଆରକୁ ଯାଇ ଡାକ ପକାଉଥିଲେ— ଆରେ କିଏ ଅଖିଆ ଅଛ, ଆସ । ଏ ଡାକଶୁଣି ଯେଉଁ ଦୀନଦୁଃଖୀ କାଙ୍ଗାଳୀ ଅଭ୍ୟାଗତ ଥାଆନ୍ତି ସେମାନେ ଆମ ସଦର ଦୁଆରକୁ ଆସନ୍ତି ଓ ପାକଶାଳାରେ ଯାହାଥାଏ ସେମାନଙ୍କୁ ଆଣିଦିଅନ୍ତି । ଦୁଇଓଳି ପରିବାରର ବା ଆଗନ୍ତୁକ ଜଣେ ହେଲେ ଅଭୁକ୍ତ ରହୁନାହିଁ, ଏହା ଦେଖିଲାପରେ ସେ ଦୁହେଁ ଖାଇବାକୁ ଯାଆନ୍ତି ଓ ତାଙ୍କ ଭାଗ୍ୟକୁ ଯାହାଥାଏ (ଅବଶ୍ୟ ଅନ୍ନର ଅଭାବ ନଥାଏ, କିନ୍ତୁ ବହୁକୁଟୁମ୍ବୀ ପରିବାରରେ ଅନେକ ଧନୀ ପରିବାରରେ ତିଅଣର ଅଭାବ ମୁଁ ସ୍ୱଚକ୍ଷୁରେ ଦେଖିଛି) ତାହା ଖାଆନ୍ତି । ବହୁଥର ମୁଁ ସ୍କୁଲରୁ ଦିନ ୧୨ଟା ବେଳେ

ଖେଳୁଛନ୍ତି ଅବସରରେ ଘରକୁ ଆସି ଦେଖିଛୁ ଯେ ବୂଢ଼ୀମାଆ ଓ ରାଧୀନାନୀ ତରକାରୀ ନଥିବାରୁ ବାଇଗଣଟାଏ ଆଣି ନିଆଁ ଉହ୍ଲକ ଥିବା ଚୂଲିରେ ପୋଡ଼ି ଖାଇ ତାହାର ସାହାଯ୍ୟରେ ଭୋଜନ କରିଥାଆନ୍ତି । ଆମଘରେ ତିନିପ୍ରକାର ଭାତରନ୍ଧା ହେଉଥିଲା—୧। ନନାଙ୍କ ପାଇଁ ଓ ତାଙ୍କ ସଙ୍ଗେ ଖାଇବସିବା ବାବାଜୀମାନଙ୍କ ପାଇଁ ସରୁଅରୁଆ ଅନ୍ନ, ୨। ପରିବାରର ପିଲ୍ଲ ଓ ସମାଗତ ବାନ୍ଧବମାନଙ୍କ ପାଇଁ ସରୁ ଉଷୁନା ଅନ୍ନ ଓ ୩। ଅନ୍ୟାନ୍ୟ ଲୋକଙ୍କ ପାଇଁ ମୋଟ ଉଷୁନା ଅନ୍ନ । କିନ୍ତୁ ତିଅଣ ସମସ୍ତଙ୍କ ପାଇଁ ଏକପ୍ରକାର ହେଉଥିଲା, ଯେଉଁଦିନ ତିଅଣ ସରିଯାଏ ଓ ରାନ୍ଧିବାକୁ ବେଳଥାଏ ସେଦିନ ଆଉଥରେ ତିଅଣ ରନ୍ଧାହୁଏ । ନଚେତ୍ ତିଅଣ ସରିଗଲେ ବ୍ୟଞ୍ଜନ ରହିତ ଲୋକଙ୍କୁ ଲୁଣ, ଲଙ୍କା, ଆମ୍ବୁଲ, ଆମ୍ବସଢା, ଆଚୁର ଦ୍ୱାରା ତୃପ୍ତ କରାହୁଏ । ତିଅଣ ବିଷୟରେ ଶୋଇଲ ପୁଅର ଭାଗନାକ୍ଷି' 'ଆଗ—ସୁନାପାଗ'; 'ମଝି—ମର୍ଦ୍ଦଗାଜ'· "ପଛ—ଗୁହପୋଛ" ଆମ ପାକଶାଳାରେ ଖାଉଥିବା ଲୋକମାନଙ୍କ ଦଶା ଏଇ ପ୍ରବଚନ ଭଳି ହେବାର ମୁଁ ଦେଖିଅଛି । ନନାଙ୍କର ଓ ତାଙ୍କ ସଙ୍ଗେ ବସିବା ବାବାଜି, ବୈଷ୍ଣବମାନଙ୍କର ଭାତ ଉପରେ ଘିଅ ଦିଆଯାଏ ଓ ଆମ ପିଲମାନଂକ ଭାତରେ ଘିଅ ଦିଆଯାଏ । ବାକି ଅନ୍ୟମାନେ ଘୃତହୀନାନ୍ନ ଭୋଜନ କରନ୍ତି । ନନା ଓ ତାଂକ ସଙ୍ଗେ ବସି ଖାଇବା ଲୋକମାନଂକ ପାଇଁ କଦଳୀ, ବାଇଗଣ, ନଡ଼ିଆ, ଦେଶୀଆଳୁ (ସେ ସମୟରେ ବିଲାତିଆଳୁ ଆମ୍ଭମାନଙ୍କୁ ସାତସପନ ଥିଲା, ନନା କଟକରୁ ଆସିଲାବେଳେ ଥରେ ଥରେ ସାଙ୍ଗରେ ୨।୪ ସେର ବିଲାତିଆଳୁ ଆଣିଥାନ୍ତି, ତାହା ଦିନାକେତେ ଭଜାହୁଏ), ବଡ଼ ନଡ଼ିଆ ପଡ଼ି ମଧୁରରସ-ପ୍ରଧାନ ଆମ୍ବିଳ ହୁଏ । ନନାଂକ ପାଇଁ ଥାଳିପାଖେ ଭିନ୍ନ ଭିନ୍ନ ପାତ୍ରରେ ଡାଲି, ତିଅଣ, ଆମ୍ବିଳ, ଭଜା ଓ ଚଟଣୀ ସଜ୍ଜିତ କରାହୁଏ, ଗୋଟିଏ ସାନ 'ଘିଅଗିନା'ରେ ସରଘରୁ ଘିଅ ପୂର୍ଣ୍ଣ ହୋଇ ଆସିଥାଏ ଓ ନନାସ୍ୱୟଂ ସେହିଗିନା ଧରି ପଙ୍କ୍ତିରେ ବସିଥିବା ବ୍ୟକ୍ତିମାନଂକ ଭାତ ଉପରେ ଘିଅ ଢାଳନ୍ତି ଓ ବାକି ଘିଅ ତାଂକ ଭାତ ଉପରେ ରଖନ୍ତି । ଏସବୁ ଦେଖି ଆମେ ପିଲମାନେ ବଡ଼ୁରୁ ନନାଂକ ବେଳକୁ କିଆଁ ଏତେ ଥାଳିଆ, ଗିନା, ଗିଲାସ, ଆଉ ଆମ ବେଳକୁ ଭାତ ଥାଳିରେ ସବୁ ଜିନିଷ ଦିଆ

ହେଉଛି । ଦିନେ ଦିନେ ମୋର ଝିଙ୍କ ଉଠେ ଯେ ନନା ଖାଇଲାବେଳେ ଯେପରି ମୁରୁଜରେ ଚତୁଷ୍କୋଣ 'ଠାଆ' ହୁଏ ଓ ଭିନ୍ନ ଭିନ୍ନ ପାଖରେ ବ୍ୟଞ୍ଜନାଦି ବଢ଼ାହୁଏ, ମୋର ସେପରି ନହେଲେ, ଖାଇବି ନାହିଁ । ଏଥିରେ ବୁଢ଼ୀମାଆ, ସାନବୋଉ, ରାଧୀନାନି ଅଗତ୍ୟା ମୋ ପାଇଁ ସେ ଆଡ଼ମ୍ବର ଓ ମୋ ଦେଖାଦେଖି ସାନଭାଇ ଉଦି, ଅଭି ଓ ବାନ୍ଧବ ଗୁସମାନେ ମଧ୍ୟ ସେହି ଅଳି କରନ୍ତି, ତାଙ୍କ ଅଳି ମଧ୍ୟ ପୂରଣ କରାହୁଏ । ନନା ବରାବର ଦିନକେ ଥରେ ମାତ୍ର ଅରୁଆନ୍ନ ଖାଉଥିଲେ, ଓ ନିରାମିଷାଶୀ ଥିଲେ । ଆମ ପରିବାରରେ ୪।୫ଟି ବିଧବା ଥିଲେ, ସେମାନେ ନିରାମିଷାଶୀ । ଆମଘରେ ପାକଶେଷପରେ ଅନ୍ନାଦି ଗୃହଦେବତା ବିଷ୍ଣୁ, ଲକ୍ଷ୍ମୀ, ଶାଳଗ୍ରାମ, ମହାଦେବଙ୍କୁ ନୈବେଦ୍ୟ ଦିଆହୁଏ; ଭୋଗ ସରିଲେ ଯାଇ ପରିବାରର ଲୋକ ସେହି ଖାଦ୍ୟ ଖାଇବା ଆରମ୍ଭ କରନ୍ତି । ଅତଏବ ଆମର ଅସଲ ପାଗ ହାଣ୍ଡିରେ ବା ଚୁଲିରେ ମାଛ ରନ୍ଧାହେଉନଥିଲା । ପାକଶାଳାରୁ ଗୋଟିଏ ଅଧାକାନ୍ଥି ଦ୍ୱାରା ପୃଥକ୍‌କୃତ କୋଠରିରେ ଆମିଷ ରନ୍ଧା ହେବା ପାଇଁ ସ୍ୱତନ୍ତ୍ର ଚୁଲି ଓ ହାଣ୍ଡି ଆଇଁଷଧିଆ, ପନିକି ରହିଥାଏ । ଯେଉଁ ଦିନ ମାଛମିଳେ, ସେଦିନ ପାକକାରିଣୀମାନଙ୍କ ମଧ୍ୟରୁ ଜଣେ ଖାସ୍ ମାଛ କେଳେଇବା, ରାନ୍ଧିବା ଓ ଆମିଷାଶୀମାନଙ୍କୁ ମାଛ ପରଷିବା ଓ ଗୃହଦେବତା ଦୁର୍ଗାଙ୍କ ପାଇଁ ମାଛ ନୈବେଦ୍ୟ ବାଢ଼ିବା ଆଦି କାମରେ ମୁତଏନ୍ ରହନ୍ତି । ତତ୍‌ପରେ ହାଣ୍ଡିରୁ ସରିଲେ ଧୂଆଧୋଇ କରି ସେହିଘରେ ଥିବା ସ୍ୱତନ୍ତ୍ର ଶିକାରେ ହାଣ୍ଡି ରଖନ୍ତି ଓ ଚୁଲିକୁ ମାଟି ଗୋବରରେ ଲିପାପୋଛା କରି ସାରି ସ୍ନାନକରିବା ପରେ ଆମ ଘରର ପାଗହାଣ୍ଡି ଛୁଇଁବାର ଅଧିକାରିଣୀ ହୁଅନ୍ତି । ଆମ ଅସଲ ପାଗରେ ଲାଉ, ସଜନାଛୁଇଁ, ପିଆଜ, ରସୁଣ, କୋବି, ପଶୁନଥିଲା । ସେ ସବୁ ଆଇଁଷ ହାଣ୍ଡିରେ ଓ ଚୁଲିରେ ରନ୍ଧା ହେଉଥିଲା । ସଧବା ସ୍ତ୍ରୀ ଲୋକମାନେ ଶୁଖୁଆ ଖାଆନ୍ତି । କିନ୍ତୁ ବ୍ରତ ହେବା ପିଲାମାନେ ଶୁଖୁଆ ଖାଇବେ ନାହିଁ । କେବେକେବେ ଆଇଁଷ ଚୁଲିରେ ବଡ଼ି ଶୁଖୁଆ, ଚିଙ୍ଗୁଡ଼ି ଶୁଖୁଆ ଓ ପିତାଶୁଖୁଆ ପୋଡ଼ି ସଧବା ତାଙ୍କ ଲାଳସା ପରିତୃପ୍ତ କରିଥାଆନ୍ତି । ଜୀବ ମାଂସ ତରକାରି ଆମ ଭାଗ୍ୟରେ ବର୍ଷକେ ଥରେ ଦୁର୍ଗାପୂଜା ମହାଷ୍ଟମୀ ଦିନ ଘଟେ । ଆମ ଜମିଦାରୀରେ

ଥିବା ଠାକୁରାଣୀଙ୍କ ପାଖେ ବଳି ପଡ଼ୁଥିବା ଛେଳି ମେଣ୍ଢାଙ୍କର ଜମିଦାରଙ୍କ ପ୍ରାପ୍ୟ ଫଡ଼ଆ ଆମ ଘରକୁ ଆସେ ଓ ଆମ୍ଭମାନଙ୍କ ପାଇଁ ତହିଁରେ କଦଳୀ, ଦେଶୀଆଳୁ, ସାରୁ ମିଶାଯାଇ ମହୁର ତରକାରୀ ହୁଏ । ସଧବା ସ୍ତ୍ରୀ ଲୋକମାନେ ଓ ଅବିବାହିତା କନ୍ୟାମାନେ ମାଂସ ଖାଉ ନଥିଲେ ।

ଆଉ ଗୋଟିଏ କଥା ମୁଁ ପିଲାଦିନେ ଲକ୍ଷ୍ୟ କରିଥିଲି । ନନା କି ଘରେ, ବାହାରେ କଠାଉ ପିନ୍ଧି ଚାଲୁଥିଲେ । ତାଙ୍କର କଠାଉ ମାଡ଼ିବା ଏପରି ଅଭ୍ୟାସ ଯେ ଥରେ ମୁଁ କଟକରେ ପଢୁଥିବାବେଳେ ସେ ଖଡ଼ମମାଡ଼ି ଆମ ଖଣ୍ଡାୟତ କଟେଶ୍ୱରଠାରୁ ୭ ମାଇଲ ବାଟ ଅବଲୀଳାକ୍ରମେ ଚାଲି ଆସିଥିଲେ । ରାତିରେ ନନାଙ୍କ ବସିବା ଜାଗାରେ କାଚଗ୍ଲାସ ଭିତରେ ନଡ଼ିଆ ତେଲ ଦିଆ ଚେଙ୍ଗା ଗୋଡ଼ବାଲା ଦେଉଲିଆ ଲଣ୍ଠନ ଜଳାହୁଏ । ସେ କେଉଁଆଡ଼େ ବାହାରିଲେ ଆଗେ ଆଗେ ଜଣେ ଚାକର ମହାଣବତୀ ଜଳା ୪ଖଣ୍ଡି କାଚଫଳକଦିଆ ଚଉକୋଣିଆ ଲଣ୍ଠନଧରି ଚାଲେ । ନନାଙ୍କ ପାଖରେ ଗୋଟିଏ ଥାଳିଆରେ ପାନଖିଲି ଗୁଣ୍ଡିଏ, ଗୁଣ୍ଡି, ଭଙ୍ଗାଗୁଆ ଓ ଗୁଜୁରାତି ଅଳେଇଚ ଲବଙ୍ଗ ଆଦି ମସଲା ଅଲଗା ଅଲଗା ଗଦାରେ ସଜା ହୋଇଥାଏ । ନନାଙ୍କ କଠାଉଶବ୍ଦ ଶୁଭିବା ମାତ୍ରେ ଲୋକମାନେ ସାବଧାନ ହୋଇ ରହନ୍ତି । ସେ ପହଞ୍ଚିବା ମାତ୍ରେ ସମସ୍ତେ ଉଠି ଠିଆ ହୋଇ ଯାଆନ୍ତି ଓ ତାଙ୍କ ମଧ୍ୟରେ ଥିବା ନବାଗତମାନେ ନନାଙ୍କୁ ସୂକ୍ଷ୍ମକୋଣୀ ନମସ୍କାର କରନ୍ତି । ଯେଉଁ ନମସ୍କାରରେ ଅଣ୍ଟାଉପର ଦେହର ଅଂଶ, ତଳର ଅଂଶ ସହିତ ସୂକ୍ଷ୍ମକୋଣ ଉତ୍ପନ୍ନକରେ ତାକୁ ମୁଁ କହୁଚି ସୂକ୍ଷ୍ମକୋଣୀ ଓ ଯେଉଁଥିରେ ଅଣ୍ଟାଉପର ଦେହର ଅଂଶ, ଅଣ୍ଟାତଳର ଅଂଶ ସହିତ ସମକୋଣ କରେ ତାହା ସମକୋଣୀ ନମସ୍କାର । ସେହିପରି ସ୍ଥୂଳକୋଣୀ ନମସ୍କାର ମଧ୍ୟ ଅଛି । ଆଜକାଲି ଗଣିତ ପଢୁଆ ପିଲାଙ୍କୁ ବୁଝାଇବା ପାଇଁ ଡ଼ିଗ୍ରୀ ମାପ ଅନୁସାରେ ନମସ୍କାରମାନଙ୍କର ଶ୍ରେଣୀବିଭାଗ କଲେ ଭଲ ହେବ ଭାବି ଏହା ମୁଁ କହୁଛି । ୧୮୦ ଡ଼ିଗ୍ରୀଆ ଡବଲ ସମକୋଣୀ ନମସ୍କାର ମଧ୍ୟ ସେହିଭଳି । ଏହାଛଡ଼ା ମାନ୍ଧାତାଙ୍କ ଅମଳରେ ବୃତ୍ତାକାର ଓ ଆଧୁନିକ କାଇଦା ସୁଲଭ ତ୍ରିଭୁଜାକାର ନମସ୍କାର ଓ ଦଣ୍ଡବତ ଏପରି ୩ଟି ଅଛି ।



ପିତା ସ୍ୱର୍ଗତ ନରସିଂହ ପ୍ରହରାଜଙ୍କ ସାନ୍ନିଧ୍ୟରେ କଳାକୋର୍ଟ ପିନ୍ଧା
ଶ୍ରୀ ଗୋପାଳ ପ୍ରହରାଜ ଓ ଉଭୟ ପାର୍ଶ୍ୱରେ ଭାଇ ବଳକୃଷ୍ଣ ଓ ଉଦୟନାଥ

ସ୍ତୁଡ଼ନ୍ତୁ ଏ ପ୍ରସଙ୍ଗ 'ବହୁରୂପ'ର ଆଲୋଚନା) ନନାଙ୍କର ଏହିସବୁ ଉପଦେଶ ଦେଖି ମୁଁ ମନକୁ ବୁଝାଉ ଥାଏ ଯେ, ମୁଁ ମଧ୍ୟ ବଡ଼ ହୋଇଗଲେ କଟଉ ମାଡ଼ିବ, ଲଣ୍ଡନ ରଖିବ ଇତ୍ୟାଦି ଇତ୍ୟାଦି ।

ନନା ନିଜେ ଆମ ଜମିଦାରୀ ବିଷୟ ବୁଝାସୁଝା କରୁଥିଲେ । କାହାକୁ ମ୍ୟାନେଜର୍ କରିନଥିଲେ । ତାଙ୍କ ସଙ୍ଗେ ସଦର ଗୁମାସ୍ତା ଚିନ୍ତାମଣି ମହାନ୍ତି ଥାଆନ୍ତି । ଜମିଦାରୀର ଭିନ୍ନ ଭିନ୍ନ ତହସିଲ ଇଲାକାର ହିସାବ, ଚିଠୋଟ, ତହବିଲ ଆସିଲେ ସେଥିର ଲେଖାପଢ଼ା, ସଦର ହିସାବ ବହିରେ ଚଢ଼ାଇବା, ମଫସଲ ତହସିଲଦାରମାନଙ୍କଠାକୁ ପଠାଇବା ହୁକୁମମାନଙ୍କର ଲେଖାଲେଖି କାମ ଚିନ୍ତାମଣି ମହାନ୍ତି କରୁଥାଆନ୍ତି । ମୋ ପିଲାଦିନେ ଆମ ସ୍ତମ୍ଭକରଣ, ସଦର ଗୁମାସ୍ତା ଓ ମଫସଲ ତହସିଲଦାରମାନେ ତାଳପତ୍ର ଲେଖନ ସାହାଯ୍ୟରେ ସିରସ୍ତାର ପ୍ରାୟ ସମସ୍ତ ଲେଖାପଢ଼ି ଚଳାଉଥିଲେ । ଗୋଟିଏ 'ଲେଖାଁ' ପାଞ୍ଜି ବିଡ଼ା ପାଇଁ ତାଳପତ୍ରମାନ ଲେଖନ ମୁଣ୍ଡରେ ଥିବା ଛୁରୀ ଦ୍ୱାରା କଟାହେଉଥିଲା ଓ ପତ୍ରମାନଙ୍କ ମୂଳରୁ ପ୍ରାୟ ୪ଆଙ୍ଗୁଳ ଛାଡ଼ଦେଇ ଉକ୍ତ ତାଳପତ୍ରମାନ ସୂତୁଲି ବା ମଠୂଆ ଦ୍ୱାରା ଗୁନ୍ଥାହେଉଥିଲା । ପାଞ୍ଜିବିଡ଼ା ବନ୍ଧା ସରିବାପରେ ଲେଖା ହେବାପାଇଁ ତାଳପତ୍ରମାନଙ୍କ ଆଗପାଖ ଦୁଇଫାଳ ହୋଇ ଚିରା ହେଉଥିଲା ଓ ଏହି ତାଳପତ୍ର ପୃଷ୍ଠାର ଦୁଇପିଠି ଲେଖା ହେଉଥିଲା । ଏହିଭଳି କେତୋଟି ପାଞ୍ଜିବିଡ଼ା ସଜଡ଼ା ହୋଇ ମାଦଳପତ୍ର ରହୁଥିଲା । ଏହି ବନ୍ଧାହୋଇଥିବା ସୂତୁଲିକୁ ଧରି ମାଦଳାମାନଙ୍କୁ ଏକ ଜାଗାରୁ ଅନ୍ୟ ଜାଗାକୁ ଓହଳାଇ କରିନେଇ ହେଉଥିଲା । ୪ଗୋଟି କାଠଖୁଣ୍ଟିରେ ୧୨ହାତ ଉଚ୍ଚରେ ୧୨ହାତ ଲେଖା ଗୁଡ଼ କାଠର ଆଡ଼ଧାରଣା ମରାହେଉଥିଲା ଓ ସେହି ଚଉକୋଣିଆ ଆଡ଼ଧାରଣା ଉପରେ ମର୍ଦ୍ଦଳାକୃତି ପାଞ୍ଜିବିଡ଼ାମାନ ସାଇତା ହେଉଥିଲା । କେଉଁ ମାଦଳାରେ କେଉଁ ସନର କଥା ଲେଖାଅଛି ତାହା ଗୋଟେ ତାଳପତ୍ରରେ ଟିପାହୋଇ ରହୁଥିଲା, ଏହି ତାଳପତ୍ରକୁ ମାଦଳା ଡ଼ୋରିରେ ଝୁଲାଇ ଦିଆ ହେଉଥିଲା । ଚିଠିପତ୍ର ଓ ନିମନ୍ତ୍ରଣ ପତ୍ର ଆଦି ମଧ୍ୟ ତାଳପତ୍ରରେ ଲେଖା ହେଉଥିଲା । କେବଳ ସରକାରୀ ଚିଠିପତ୍ର ପାଇଁ ହରିତାଳ କାଗଜ (ଖୁବ୍ ବହଳିଆ,

ଶିଷ୍ଟର ହଳଦିଆ ବା ନେଳିଆ ଦେଶୀ କାଗଜ ଦୁଆତ ଓ କଲମ ଆବଶ୍ୟକ ହେଉଥିଲା, ଜରବ ଭଉଁରିଆ, ଜମାବନ୍ଦି, ଓ୍ୱାସିଲବାକି, ଓ୍ୱାରିଜା, ସିହା, ରେକର୍ଡ, ମହାଜନୀ ଓ ଜମିଦାରୀ, ଜମାଖରଚ ହିସାବ, ପାଉତି, ପଞ୍ଜା ତାଳପତ୍ରରେ ଲେଖା ହେଉଥିଲା । ଏମନ୍ତ କି ଖାତକ ମହାଜନଠାରୁ ଋଣକରି ତାଳପତ୍ରରେ 'ଗୋଜା' ଲେଖି ଦେଉଥିଲା । ଭଦ୍ର ଜମିଦାର ଓ କରଣବଂଶର ସବୁ ପାଠପଢ଼ୁଆ ପିଲା ପିଲାଙ୍କୁ ତାଳପତ୍ରରେ ଲେଖନ ଦ୍ୱାରା ଲେଖିବା ଓ ତାଳପତ୍ର ପାଞ୍ଜି କାଟିବା ପ୍ରଣାଳୀ ଶିକ୍ଷା କରୁଥିଲେ । ଭୂଇଁରେ ଏକ କଡରେ ପିଣ୍ଡିମାଡ଼ିବସି ଗୋଡର ଆଣ୍ଠୁ ଉପରେ ବାଆଁ ହାତରେ ତାଳପତ୍ର ଧରି ଡାହାଣ ହାତରେ ଲେଖନ ଧରି ଲେଖନ୍ତି । ବାମହାତର ବୁଢ଼ାଆଙ୍ଗୁଠି ଲେଖନ ମୂନର କିଛି ଉପରକୁ ଥାଇ ଲେଖନର ଗତିକୁ ନିୟନ୍ତ୍ରିତ କରୁଥାଏ । ତାଳପତ୍ର ଓ ଲେଖନରେ ଲେଖିବାବେଳେ ଲେଖକଙ୍କ ଆଣ୍ଠୁ ଡେସ୍କର କାମକରେ । ତାଳପତ୍ର ଓ ଲେଖନରେ ଲେଖିବା ଏକ ବିଦ୍ୟା ଓ ଏହାକୁ କଷ୍ଟ ସ୍ୱୀକାର କରି ଆୟତ୍ତ କରିବାକୁ ହୋଇଥାଏ । ଶୁଣାଅଛି ଯେ ଥରେ ଲେଖନ ବ୍ୟବହାର କରିବାରେ ଛାତ୍ରର ଅପାରଗତା ଦେଖି ଶିକ୍ଷକ ମାଟିବଂଶ ଅବଧାନ ଲେଖନ ମୂନରେ ଛାତ୍ରର ଦେହରେ ଏକଇଞ୍ଚ ଗଭୀର ଫୋଡଟିଏ କରିଦେଲେ । ତାହା ୨ ମାସରେ ଶୁଖିଲା । ମୋତେ ମଧ୍ୟ ପିଲାଦିନେ ଲେଖନ ତାଳପତ୍ରରେ ଲେଖା ଶିକ୍ଷାଦିଆ ଯାଇଥିଲା । ବହୁକାଳ ଅନଭ୍ୟାସ ଯୋଗୁ ଏବେ ଆଉ ତାଳପତ୍ର ଲେଖନରେ ଭଲ ଲେଖିପାରିବି ନାହିଁ । ଏହି ତାଳପତ୍ରର ଗୋଟିଏ ଦୁଇଟି ଖେଦା ମୁଁ ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ସର୍ ଜନ୍ ହବାକ୍ ଓ ଲେଡି ହବାକ୍‌ଙ୍କୁ ଓ ପରବର୍ତ୍ତୀ ଗଭର୍ଣ୍ଣର ସର୍ ହଥର୍ଣ୍ଣ-ଲୁଇସ ଓ ଲେଡ଼ି ଲୁଇସ୍‌ଙ୍କୁ ଉପହାର ଦେଇଛି । ଗୋଟିଏ ଲେଖାଏ ଲେଖନ ମଧ୍ୟ ଦେଇଛି, କିପରି ଏଥିରେ ଲେଖାଯାଏ ତାହା 'ସାକ୍ଷଲକ୍ଷ-ପ୍ରତ୍ୟକ୍ଷ' ଭଙ୍ଗୀରେ ଦେଖାଇ ଦେଇଛି । ତାଳପତ୍ର ଲେଖାକୁ ୩ଭାଗରେ ବିଭକ୍ତ କରାଯାଏ । ୧ । ପାଞ୍ଜି ୨ । ପୋଥି ୩ । ଖେଦା ଅଳ୍ପ କେତୋଟି ପତ୍ରରେ ନାତିଦୀର୍ଘ ସନ୍ଦର୍ଭ ବା ଛାନ୍ଦ ଲେଖାହୋଇ ପତ୍ରର କୋଣରେ ଲେଖନ ଦ୍ୱାରା କଣାହୋଇ ମଡ଼ୁଆ (ଗଛରୁ କଟା ହୋଇ ଶୁଖିଥିବା ବର-ଡାରୁ ଚମାର ସରିଥିବା ଗୋଟା ଗୋଟା ପତ୍ରର ଧାରରୁ ଶିରି ବାହାରେ)

ବା ସୂତ୍ରୁଲ ଦ୍ୱାରା ବନ୍ଧାହୋଇ ଖେଦା ତଆର ହୁଏ । ପାଞ୍ଜିରେ ବ୍ୟବହୃତ ତାଳପତ୍ର ଖଡ଼ିକା ସହୃତ ଲାଗି ଶର ହୋଇଥାଏ କିନ୍ତୁ ଖଡ଼ିକାକୁ କାଟି ବାହାର କରି ତାଳପତ୍ରକୁ ଗୁଚ୍ଛ କରି ପୋଥି କରାଯାଏ । ପୋଥିର ଆରମ୍ଭ ଓ ଶେଷରେ ୨ଟି କାଠ ତଆରି ଫୋଡ଼ ଥିବା ପଟା ଲଗାଯାଇଥାଏ । ଗୋଟି ଗୋଟି ତାଳପତ୍ରକୁ ଓମାର ବାଗରେ ଯୋଡ଼ ବା ବାନ୍ଧ ଅତି ପ୍ରଶସ୍ତ କାଗଜତଳ କରି ସେଥିରେ ସେବକାଳରେ ଚିତ୍ର ଇତ୍ୟାଦି ଓ ଲେଖା ଲେଖି ହେଉଥିଲା । ବିଶେଷତଃ ଜ୍ୟୋତିଷ ନାୟକ ବଂଶୀପ୍ସୁ ବହୁଲୋକ ଏହିପରି ଲେଖି ଜୀବିକା ନିର୍ବାହ କରୁଥିଲେ । କିନ୍ତୁ ମୋ ପିତୃଦେବଙ୍କ ପରି ସରସ ଲେଖାଳି ମଧ୍ୟ ସେ କାଳରେ ଅନେକ ଥିଲେ ।

ମୋ ଶିଶୁକାଳର ଘଟଣାବଳୀ କଥା କହୁଥିଲି । ନନାଙ୍କ ସଦର ଗୁମାସ୍ତା ଚିନ୍ତାମଣି ମହାନ୍ତି ମୋ ସଙ୍ଗରେ ଓ ମୋ ସାଙ୍ଗ ପିଲାଙ୍କ ସଙ୍ଗରେ ପରିହାସ କରିବାକୁ ଖୁବ ସୁଖ ପାଉଥିଲେ । ସେ ମୋତେ ସମ୍ବୋଧନ କରି ବ୍ୟଙ୍ଗୋକ୍ତିରେ କହୁଥିଲେ: —"ସାନବାବୁ, ଯେବେ ପଢ଼ିବ ତେବେ ଖୁବ୍ ବେଶୀ ପଢ଼ । ବି. ଏ. ଏମ. ଏ. ପାଶ କଲେ ଖୁବ୍ ବଡ ଚାକିରୀ ପାଇବ । ତା'ହେଲେ ଆମ ଏଇ ଗୁମାସ୍ତାଙ୍କ କାଗଜପତ୍ର ତନଖି ଭୁଲ ଧରିବାକୁ ଆପଣଙ୍କୁ ବେଳ ନ ଥିବ; ଆମେ ଅମଲାମାନେ ଆମ ପେଟ-ପାଟଣାରେ ଲାଗିଥିବୁ । ନଇଲେ ଯେବେ ନ ପଢ଼ିବ ତେବେ କମାରୁ ନ ପଢ, ତାହେଲେ ଗଣ୍ଡମୂର୍ଖ ହେବ ଓ ଆମେ ଆପଣଙ୍କ ଜମିଦାରୀରୁ ଲୁଟିକରି ପୋଷି ହେଉଥିବୁଁ । ତୁମେ ଆମ କାଗଜପତ୍ରରେ ପଶି ପାରିବ ନାହିଁ । କିନ୍ତୁ ବଡବାବୁ (ମୋ ପିତୃଦେବ)ଙ୍କ ଭଳି ଦରପାଠୁଆ ହେବ ନାହିଁ । ତାହେଲେ ବଡ଼ବାବୁଙ୍କ ଭଳି ଆମ କାଗଜପତ୍ରରେ ପଶି କଗରୁ ଶିରା କାଢ଼ି ଆମ କରଣିଆ ପେଞ୍ଚପାକ କାଟିବ ଓ ଆମେ ଛଟପଟ ହୋଇ ଗଡ଼ ମରିବୁଁ ।" ଆମେ ସେତେବେଳେ ଏକଥାର ରହସ୍ୟ ବୁଝିବୁ କାହୁଁ ? କିନ୍ତୁ ଆମେ ଦେଖୁଥାଉଁ ଯେ ନନା ସଦର ସିରସ୍ତାରେ ଦୁଇଓଳି ମନ ଲଗାଇ ହିସାବପତ୍ର ବୁଝୁଥାଆନ୍ତି ।

ଥରେ ନନା ଗ୍ରାମରେ ଥାଆନ୍ତି । ସନ୍ଧ୍ୟା ସାତଟା ଆଠଟା ବେଳେ କେତେଜଣ ଶିକ୍ଷକ ଓ ନନାଙ୍କ ସଦର ଗୁମାସ୍ତା ଓ ଆମ ଗ୍ରାମବାସୀ

କେତେଜଣ ଆମ କଚେରି ମେଲରେ ବସି ତାସ୍ ଖେଳୁ ଥାଆନ୍ତି । ପାଖରେ ଦୀପ ଜଳୁଥାଏ । ଏହି ସମୟରେ ନନାଙ୍କ କଠଉମଡ଼ା ଶବ୍ଦ ଶୁଣି ସମସ୍ତେ କିଂକର୍ତ୍ତବ୍ୟ ବିମୂଢ଼ ହେଲେ । କଣ କରି ବଡ଼ବାବୁଙ୍କ କୋପ ଦୃଷ୍ଟିରୁ ରକ୍ଷା ପାଇବେ ଓ ଏ ବିପଦରୁ ଏଡ଼ିବେ— କାହାକୁ କିଛି ବୁଦ୍ଧି ପଶୁ ନ ଥାଏ । ମୁଁ ନିକଟରେ ବସି ଖେଳ ଦେଖୁଥିଲି । ହଠାତ୍ ଦୀପ ପାଖକୁ ଉଠିଯାଇ ଦୀପକୁ ଧୀରେ ଫୁଙ୍କି ଲିଭାଇ ଦେଲି । ସମସ୍ତେ ଯଥା ସ୍ଥାନରେ ବସି ରହିଲେ । ନନା ଆସି ପହଞ୍ଚି ପାଟିଶୁଣି ଅନ୍ଧାରରେ ସେମାନେ କିଆଁ ବସିଛନ୍ତି ପଚାରିବାରୁ ଦୀପ ଲିଭି ଯାଇଛି ବୋଲି କହି ସମସ୍ତେ ନିସ୍ତାର ପାଇଲେ । ଆମ ଭିତରୁ ଜଣେ ଦୀପ ଲଗାଇ ଆଣିବାକୁ ଗଲା । ନନା ସେଠାରେ ଠିଆ ହୋଇ ରହିଲେ । ଉପସ୍ଥିତ ବିପଦରୁ ପାର ହୋଇ ସେଦିନ ସମସ୍ତେ ମୋ ଉପସ୍ଥିତ ବୁଦ୍ଧିର ପ୍ରଶଂସା କରିଥିଲେ ।

ମୋର ଶିଶୁକାଳରେ ଓ ସିଦ୍ଧେଶ୍ୱରପୁର ସ୍କୁଲରେ ପଢ଼ିବା ସମୟରେ ନାଗବାଲି ନିବାସୀ କାଶୀନାଥ ମହାନ୍ତି ଆମର ଗୁମାସ୍ତା ଥା'ନ୍ତି । ତାଙ୍କ ପୁଅ ଅନ୍ତର୍ଯାମୀ ଆମ ଘରେ ଥାଇ ପାଠ ପଢ଼ୁଥାଏ । ଶୀତ ଦିନେ ମୁଁ ଖୁବ ଭୋରୁ ଉଠି ଗୁମାସ୍ତାଙ୍କ ପାଖକୁ ଆସେ । ସେ ସେତେବେଳକୁ ଉଠି ମାଠ ଘୋଡ଼ି ହୋଇ ବସି ପ୍ରାତଃ ଭୋଜନ କରୁଥା'ନ୍ତି । ମୁଁ ତାଙ୍କ କୋଡ଼ରେ ଯାକସୁକ ହୋଇ ପଶିଯାଏ । ମୋ ମୁଣ୍ଡ ସୁଦ୍ଧା ତାଙ୍କ କୋଡ଼ରେ ଲୁଚିଯାଏ । ମୁଁ ତାଙ୍କ କୋଳରେ ଅଛି ବୋଲି କାହାକୁ ନ କହିବାକୁ ରାଣ ପକାଇଥାଏ । କାଶୀ ମହାନ୍ତି ସେତେବେଳେ ପ୍ରାଚୀନ ଓଡ଼ିଆ ସାହିତ୍ୟର କେତେକ ଛାନ୍ଦ ଗୀତ ବୋଲୁଥିବା ଏବେ ବି ମୋ ସ୍ମୃତିରେ ପ୍ରଖର ହେଉଛି ।

"କି ବିଚିତ୍ର କଲେ ନନ୍ଦନନ୍ଦନ, ଟିକି ପିଲାଟି (ଛୁଆଟି)
ଖାଇଲେ ମାଟି, ଘୁଟେକ ପିଟି, ଯଶୋଦା ବିସ୍ତାରି ଦେଖନ୍ତେ ପାଟି
ସପତ ଭୁବନ ପେଟରେ ଦିଶିଲା କି ଯୋଗ ମାୟା କରି ଦେଲେଟି ।"

ମତେ ଘରେ ନ ପାଇ ବଡ଼ବୋଉ ଓ ବୁଢ଼ୀମାଆ ଖୋଜି ହୁଅନ୍ତି ଓ କାଶୀ ମହାନ୍ତିଙ୍କୁ ପଚାରିବାରୁ ସେ ମୋ ରାଣକୁ ମାନି କିଛି କହନ୍ତି

ନାହିଁ । ସେମାନେ ଅତି ବ୍ୟସ୍ତ ହେବାରୁ ମୁଁ କାଶୀ ମହାନ୍ତଙ୍କ ଲୁଗା ଭିତରୁ ଚକ୍କାର କରି ଉଠେ ।

**ଭିକାଂନ୍ନା**—ମୋର କୁଟୁମ୍ବୀ ଦେଉଡ଼ା ଗ୍ରାମ ଶ୍ରୀ ଭିକାରୀଚରଣ ଆଚାର୍ଯ୍ୟ (ଭିକାନ୍ନ) ମୋର ସହପାଠୀ ଥିଲେ । ମୋର ପାଠପଢ଼ା ଆରମ୍ଭରୁ ମାଇନର ପର୍ଯ୍ୟନ୍ତ ଦୁହେଁ ସହପାଠୀ ଥିଲୁ । ସେ ମୋ ସାଙ୍ଗରେ ଭଣ୍ଡାରିକୁଳର ପାଶ କଲେ ଓ ତତ୍ପରେ ଉପରକୁ ପଢ଼ିବାପାଇଁ ମୋ ସଙ୍ଗେ କଟକ ଆସିଲେ ନାହିଁ । ତାଙ୍କର ମୋର ସ୍କୁଲରେ ଓ ଘରେ ଦଣ୍ଡେ ଛଡ଼ାଛଡ଼ି ନ ଥାଏ । ଆମେ ଇସ୍କୁଲରେ First Book ଓ Second Book of Reading ପଢ଼ି ସାରିବା ପରେ No. 2, No. 3 ଓ ମାଇନର କ୍ଲାସରେ 4 The New Royal Readers ପଢ଼ିଲୁ । ସେଥିରୁ ବାଛି-ବାଛି ପଦ୍ୟାବୃତ୍ତି ଓ କଥୋପକଥନ ହେଡ୍‌ମାଷ୍ଟର ମୋତେ ଓ ଭିକାରୀ ଭାଇନାଙ୍କୁ ଶିଖାଇ ଥାଆନ୍ତି ଓ ସ୍କୁଲର ପ୍ରାଇଜ୍ ବାଣ୍ଟ ହେଲା ବେଳେ ଆମେ ଦୁହେଁ ସେହି ଅଂଶ ବୋଲୁ । ଏହା ଶୁଣି ପ୍ରାଇଜ୍ ବାଣ୍ଟ ସଭାକୁ ଆସିଥିବା ପୁରୁଷମାନେ (ସେ କାଳରେ ସ୍ତ୍ରୀ ଲୋକମାନଙ୍କୁ ସଭାସମିତି ସ୍ୱପ୍ନ ଥିଲା) ଭାରି ଖୁସି ହୋଇ ଯେଝା ଘରେ ସ୍ତ୍ରୀଲୋକମାନଙ୍କୁ ଆମ ଦୁହିଁଙ୍କ ବାହାଦୁରୀ କଥା କହନ୍ତି । ଗାଁର ସ୍ତ୍ରୀ ଲୋକମାନେ ଆସି ଆମ ଘରର ଭିତର ଖଞ୍ଜାରେ ରୁଣ୍ଡ ହୁଅନ୍ତି । ବଡ଼ବୋଉ ଓ ସାନବୋଉଙ୍କ ଅନୁରୋଧ କ୍ରମେ ଆମେ ଦୁହେଁ ପଦ୍ୟାବୃତ୍ତି ଓ କଥୋପକଥନ କରୁ । ସେ ସମୟରେ ସ୍ତ୍ରୀମାନଙ୍କ କଥା ଦୂରରେ ଥାଉ, ପୁରୁଷମାନଙ୍କ ମଧ୍ୟରୁ ଅଧିକାଂଶ ଇଂରାଜୀ ଭାଷା ଶୁଣି ନ ଥିଲେ । ସ୍ତ୍ରୀମାନେ ଆମ ଦୁହିଁଙ୍କ ପ୍ରଗଲ୍‌ଭତା ଦେଖି ଓ ଶୁଣି ଯତ୍‌ପରୋନାସ୍ତି ପ୍ରୀତ ହୋଇ ହସି ହସି ଆମ ଭିତର ଖଞ୍ଜାକୁ ମୁଖରିତ କରୁଥିଲେ । Royal Readers No. 2 ର "We are Seven" 'The Better Land' ର The Fisherman's Reward' ଆବୃତ୍ତି ମୋର ବର୍ତ୍ତମାନ ପର୍ଯ୍ୟନ୍ତ ମନେ ଅଛି । ସେ ସମୟରେ ଏହି New Royal Reader's Series ଏକମାତ୍ର ଇଂରାଜୀ ସାହିତ୍ୟ ପାଠ୍ୟ-ପୁସ୍ତକ ଥିଲା । କଟକକୁ ଆସି ମୋର ରେଭେନ୍‌ସା କଲିଜିଏଟ ସ୍କୁଲର ପଞ୍ଚମ ଶ୍ରେଣୀରେ ନାମ ଲେଖାଇବା ପରେ ଆମ୍ଭେମାନେ ଏହି ବହିର ପରବର୍ତ୍ତୀ ସିରିଜ୍ ଗୁଡ଼ିକ କ୍ରମଶଃ ପଢ଼ିଲୁ ।

ଭିକାରିଗାଇନା କେତେ କେତେବେଳେ ସ୍କୁଲକୁ ନ ଆସି ପିତାମାତାଙ୍କୁ ଲୁଚ ଗୋରୁ ଚରାଇବାକୁ ଚାଲି ଯାଉଥିଲେ । ଏଥିପାଇଁ ଶିକ୍ଷକମାନଙ୍କଠାରୁ ଖୁବ୍ ମାଡ଼ ଖାଉଥିଲେ । ଆମ୍ଭେମାନେ ଘରେ-ଶିକ୍ଷକଙ୍କ ବଖାରେ ଶିକ୍ଷକଙ୍କ ପାଖେ ପଢୁଥାଉଁ । ଏହି ସମୟରେ ଥରେ ମାଷ୍ଟରେ ମତେ ମାଇଲେ । ସେ ସମୟରେ ପ୍ରାୟ ୨୦ ହାତ ଛଡ଼ା ବରଣ୍ଡାରେ ମୋ ନନା କଚେରି କରୁଥାଆନ୍ତି । ମତେ ମାଷ୍ଟରେ ମାରୁଛନ୍ତି, ଏକଥା ନନାଙ୍କୁ ଜଣାଇବା ପାଇଁ ମୋ ଉପରେ ଗୁରୁତର ପ୍ରହାର ହୋଇ ନ ଥିଲେ ମଧ୍ୟ ମୁଁ ପାଟି କରି 'ମରିଗଲି ଲୋ' ବୋଲି ଡକା ଛାଡ଼ିଲି । ମୋ ମନରେ ଦମ୍ଭ ଥିଲା ଯେ ମୋ ପାଟିଶୁଣି ମୋତେ ନ ମାରିବାକୁ ନନା ମାଷ୍ଟରଙ୍କୁ କହିବେ; କିନ୍ତୁ ନନା ମୋ ପାଟିଶୁଣି ତାଙ୍କର ବସିବା ଥାନରୁ ଡାକ ପକାଇଲେ, "ମାଷ୍ଟରେ ! ଆହୁରି ମାଡ଼ଦିଅ, କେବଳ ଆଖିକୁ ଓ ପାଟିକୁ ଛାଡ଼ି ଅନ୍ୟ ଜାଗାରେ ଆଚ୍ଛା କରି ମାଡ଼ ଦିଅ ।" ତଗଅଛି— 'ପଳେଇ ପଶିଲି ମାଉସୀ ଘରେ; ମାଉସୀ ମାଇଲା ଗଣ୍ଡ ଅଧରେ' ମୋକଥା ସେହିପରି ହେଲା; ନନା ମୋ ପିଠିରେ ପଡ଼ନ୍ତେ କଣ ? ଓଲଟି କରି ଆହୁରି ମାଡ଼ ମାରିବାକୁ କହିଲେ । ସେହିଦିନଠୁ ମାଷ୍ଟରଙ୍କଠାରୁ ମାଡ଼ ଖାଇଲାବେଳେ ମୁଁ ରଡ଼ି ଛାଡ଼ିଲି ନାହିଁ । ଅବଶ୍ୟ ମୁଁ ଭଲ ପଢ଼ାପଢ଼ି କରୁଥିଲି; କିନ୍ତୁ ବଗୁଲିଆପଣ ଓ ଅମନୋଯୋଗିତା ପାଇଁ ମାଡ଼ ଖାଉଥିଲି । ମାଷ୍ଟରେ ପ୍ରଶ୍ନ ପଚାରୁଥାଆନ୍ତି । ମୁଁ ତାର ଠିକ ଉତ୍ତର ଦେଇପାରେ ନାହିଁ । ଉତ୍ତର ମୋତେ ଜଣା ନାହିଁ ବୋଲି ପ୍ରଥମେ ପ୍ରଥମେ ମାଷ୍ଟରଙ୍କ ଧାରଣା ଥିଲା । ଥରେ ଧରା ପଡ଼ିଗଲି । ମାଷ୍ଟରେ ପ୍ରଶ୍ନ ପଚାରି ସାରିଲାପରେ ମୁଁ ଉତ୍ତର ଦେଲି ନାହିଁ । ସେ ମୋତେ ପୁଣି ପଚାରିଲେ—"ତୁ ମୋ ପ୍ରଶ୍ନର ଉତ୍ତର ଦେଲୁ ନାହିଁ; ଆଚ୍ଛା, କହିଲୁ, ମୁଁ କି ପ୍ରଶ୍ନ ପଚାରୁଥିଲି ? ପ୍ରଶ୍ନ ପଚାରିଲା ବେଳେ ମୁଁ ଅନ୍ୟମନସ୍କ ଥିଲି, ଅତଏବ ଅସଲ ପ୍ରଶ୍ନ ତ ଶୁଣି ନ ଥିଲି, ଉତ୍ତର ଦିଅନ୍ତି କୁଆଡ଼ୁ ?" ମୁଁ ପ୍ରଶ୍ନଟି କହି ନ ପାରିବାରୁ ମୋ ଅମନୋଯୋଗିତା ପାଇଁ ମୋ ଉପରେ ଦିଓଟି ଚାଟ ବାଜିଗଲା । ତହିଁର ଫଳରେ ମାଷ୍ଟରଙ୍କ ଦ୍ୱାରା ଆଉ ଥରେ ପଚରାଯିବା ସେହି ପ୍ରଶ୍ନ ବୋଲାଗଲା ଓ ମୋଠାରୁ ତହିଁର ସମୁଚିତ ଉତ୍ତର ମିଳିଲା । ଏହି ଅନ୍ୟମନସ୍କତା ବରାବର ମୋର ଗୋଟିଏ ଦୁର୍ଗୁଣ ହୋଇ ରହିଲା ।

ମୋର ଅବିବେଚନା ଓ ଦୁଷ୍ଟାମିର ଏଉଟି ଗୋଟିଏ ଉଦାହରଣ ଦେଉଛି ।

ଆମ ସ୍କୁଲରେ ଗୋଟିଏ ପୁରୁଣାକାଳିଆ Ansonia ଘଣ୍ଟାଥାଏ । ସେ ଘଣ୍ଟାରେ ଘଣ୍ଟାର ସଂଖ୍ୟା ନିରୂପକ ଘଣ୍ଟି ନ ଥିଲା । ଥରେ ସେ ଘଣ୍ଟା ବିଗିଡ଼ି ଯିବାରୁ ହେଡ଼ମାଷ୍ଟର ତାର କଳ ଆଦିକୁ ଆମ ଆଗରେ ଫିଟାଇ ଥିଲେ ଓ କଅଣ ସଜାଡ଼ି ଦେବାରୁ ଘଣ୍ଟା ଠିକ୍‌ରୂପେ ଚାଲିଲା । ଥରେ ଦେଖିଲି ଯେ ଘଣ୍ଟାଟି ବନ୍ଦ ହୋଇ ଯାଇଛି । ମାଷ୍ଟରେ ସେଦିନ ଗ୍ରାମକୁ ଯାଇ ଥାଆନ୍ତି । ସ୍କୁଲ ଛୁଟି ହେବା ପରେ ମୁଁ ଓ ଭିକାରିଭାଇନା ଯାଇ ସେ ଘଣ୍ଟାକୁ ଆଲମାରି ଉପରୁ କାଢ଼ିଲୁ । ମାଷ୍ଟରେ ତାକୁ ଯେଉଁଭଳି ଫିଟାଇ ଥିଲେ ବୋଲି ଦେଖିଥିଲି ମୁଁ ଠିକ୍ ସେଭଳି ଫିଟାଇବାକୁ ଚେଷ୍ଟା କଲି ! "ମାଙ୍କଡ଼ ହାତରେ ଶାଳଗ୍ରାମ, ହଲେଇ ହଲେଇ ନେଲା ପ୍ରାଣ" ଭଳି ଘଟଣା ହେଲା । ପିଲାଙ୍କ ହାତରେ କି ଘଣ୍ଟା ସଜଡ଼ା ହୁଏ ? ମୁଁ ଘଣ୍ଟାର ସ୍ପ୍ରିଂ ଧରି ଏପଟ୍ ହଂସାଉଡ଼ା ମୋଡ଼ାଟାଏ ଦେଲି ଯେ ଘଣ୍ଟା ଭିତରେ ଗୋଟାଏ ଗର୍ଜନ ଶବ୍ଦ ହେଲା ଓ ଘଣ୍ଟାର ଅଙ୍ଗମାନ ଏଣେ ତେଣେ ବିଛୁଡ଼ି ହୋଇଗଲା । ଏହା ଦେଖି ସେ ଘଣ୍ଟାକୁ ସେହିଠାରେ ତଦବସ୍ଥାରେ ପକାଇ ଦେଇ ମୁଁ ଓ ଭିକାନ୍ନା ସେଠାରୁ ପଳାଇଗଲୁ । ପରେ ମାଷ୍ଟରେ ଘରୁ ଆସି ଘଣ୍ଟାର ଏ ଦଶା ଦେଖି ଅତି ବ୍ୟସ୍ତ ହେଲେ । ତହୁଁ ତଦନ୍ତ ଚାଲିଲା । ପ୍ରଥମେ ମୁଁ ଓ ଭିକାନ୍ନା ଘଣ୍ଟାକୁ ଧରିବା କଥା ଏକାବେଳକେ ଭୁଲି ଯାଇଲୁ । ଭିକାନ୍ନାଙ୍କ ଉପରେ ଦୁଇ ତିନି ପାହାର ହେବାମାତ୍ରେ ସେ ଆମ କାର୍ତ୍ତିକୁ ମାନିଗଲେ । ତାପରେ ମୋ ଉପରେ ଭିକାନ୍ନାଙ୍କ ମାଡ଼ର ଆଠଗୁଣିଆ ପ୍ରହାର ହେଲା । ଏଥିରେ ପ୍ରଧାନ ଅପରାଧୀ ମୁଁ; ଭିକାନ୍ନା ଥିଲେ ସାହାଯ୍ୟକାରୀ । କିନ୍ତୁ ସେ ଖାଇଲେ ବେଶି ମାଡ଼, ମୋ ଭାଗରେ ପଡ଼ିଲା ତହିଁରୁ ଅଧେ ।

ଆଉ ଥରେ ସ୍କୁଲ ପାଇଁ ଗୋଟିଏ ବଡ଼ ଟେବଲ ୫' × ୪' କଣା ହୋଇ ଆସିଥିଲା । ଥରେ ସ୍କୁଲ ବାରଣ୍ଡାରେ ବଢ଼େଇମାନେ କଅଣ କାଠ କାମ କରୁଥିଲେ । ମୁଁ ବଢ଼େଇଙ୍କ ପାଖରେ ପହଞ୍ଚି ଦେଖିଲି ଯେ; ବଢ଼େଇ ଗୋଟିଏ ସାନ ରନ୍ଧାରେ କାଠର ଖଣ୍ଡରେ ଘଷି କରି ରନ୍ଧା

କରୁଛନ୍ତି । ତାପରେ ବଢ଼େଇ ଅନ୍ୟ କାମରେ ଲାଗିଲା । ମୁଁ ଖଞ୍ଜା-ଖାଞ୍ଜରେ ବଢ଼େଇର ଅଜ୍ଞାତରେ ସେ ରନ୍ଦାଟି ନେଇ ସ୍କୁଲ ମେଳରେ ଥିବା ନୂଆ ଟେବଲ୍ ଉପରେ ଦୁଇ ତିନିଥର ସାରିଦେଲି ଓ ଉକ୍ତ ଟେବଲ୍ ଉପରେ ଅଧଇଞ୍ଚ ଗଭୀର ଦୁଇତିନିଟି ଗାର ପଡ଼ିଗଲା । ଏହା ଦେଖି ରନ୍ଦାକୁ ସେଇ ଟେବଲ୍ ଉପରେ ରଖିଦେଇ ମୁଁ ସେଠାରୁ ଖସି ଆସିଲି । ପରେ ତଦନ୍ତ ହେଲା ଓ ମୁଁ ଧରାପଡ଼ି ଦଣ୍ଡ ପାଇଲି ।

ଗହ୍ମାପୂର୍ଣ୍ଣିମା ମଫସଲରେ ଗୋଟିଏ ବଡ଼ ପର୍ବ ବୋଲି ଗଣା ହୁଏ । ସେଦିନ ଆମ ସ୍କୁଲ ଛୁଟି ହେଉନାହିଁ । ଅନ୍ୟ ବ୍ୟକ୍ତିଙ୍କ ସଙ୍ଗେ କଥାବାର୍ତ୍ତା ପ୍ରସଙ୍ଗରେ ମାଷ୍ଟରେ କହିଲେ, "ଗହ୍ମାପୂର୍ଣ୍ଣିମା ଦିନ ଛୁଟି ହେବାପାଇଁ ମୁଁ ଜଏଣ୍ଟ ଇନସ୍‌ପେକ୍ଟରଙ୍କୁ ରିପୋର୍ଟ କରିଥିଲି । ସେ ମୋ ରିପୋର୍ଟକୁ ମଞ୍ଜୁର କଲେନାହିଁ ।" ଏ କଥାଗୁଡ଼ା ମୁଁ ଶୁଣିଥାଏଁ । ମୋର ଧାରଣା ହେଲା ଏସବୁ ଯେଉଁ ସରକାରୀ ଚିଠି ଆସୁଛି ତାରି ଯୋଗୁ ଆମ ସ୍କୁଲ ବନ୍ଦ ହେଉନାହିଁ ଓ ଆମେ ମନବୋଧ କରି ପିଠା ଖାଇ ପାରୁନାହିଁ । ଏ ସରକାରୀ କାଗଜ ଗୁଡ଼ିକ ନଷ୍ଟକରି ଦେଲେ ସବୁ ଅଡ଼୍‌ଆ ତୁଟିଯିବ । ଯେଉଁ ଚିଠିରେ ସରକାର ଗହ୍ମାପୁନେଇଁ ଛୁଟି ନାମଞ୍ଜୁର କରିଛନ୍ତି ସେ ଖଣ୍ଡିକ ଚିରିଦେଲେ ଏଣିକି ଗହ୍ମାପୁନେଇଁ ଦିନ ଆମ ସ୍କୁଲ ଛୁଟି ହେବ । ଏହା ବନ୍ଧୁ ଭିକା'ନ୍ନାଙ୍କ ସଙ୍ଗେ ସଲା କଲି । ସ୍କୁଲ ଛୁଟି ହେଲେ ମାଷ୍ଟରମାନଙ୍କ ଆଦେଶ ଅନୁସାରେ ଛାତ୍ରମାନେ ସ୍କୁଲଘରର କବାଟ ଓ ଝରକାମାନ ଭିତରଆଡ଼ୁ ଶିକୁଳି ଲଗାଇ ବନ୍ଦ କରନ୍ତି ଓ ତା'ପରେ ମାଷ୍ଟର ସଦର କବାଟକୁ ବାହାରଆଡ଼ୁ କୋଲପ ପକାଇ ବନ୍ଦ କରନ୍ତି । ଭିକା'ନ୍ନା ଆମର ପୂର୍ବ ଷଡ଼ଯନ୍ତ୍ର ଅନୁସାରେ ଗୋଟିଏ କବାଟର ଭିତରଆଡ଼ୁ ଶିକୁଳି ଲଗାଇଲେ ନାହିଁ ଓ ମାଷ୍ଟର ସଦର ଦରଜାରେ କୋଲପ ପକାଇ ବସାକୁ ଆସିଲେ । ସନ୍ଧ୍ୟା ପୂର୍ବରୁ ଭିକା'ନ୍ନା ଓ ମୁଁ ମେଲାଥିବା କବାଟବାଟେ ଭିତରକୁ ପଶି ଆଲମାରିରେ ଯେତେକ କାଗଜଥିଲା ତାକୁ ସବୁ ଚିରିକରି ସେଠାରେ ଜମାକରି ବୁଲିଆସିଲୁ । ତହିଁଆରଦିନ ସ୍କୁଲ ଖୋଲା ହେଲା ବେଳକୁ ମାଷ୍ଟରେ ଚିରା କାଗଜ ଗଦା ଓ ଖୋଲା ଥିବା କବାଟ ଦେଖିଲେ ।

ତା'ପରେ ତଦନ୍ତ ଚାଲିଲା। ପ୍ରମାଣ ହେଲା ଯେ ପୂର୍ବଦିନ ଭିକାରୀମା ସେ କବାଟରେ ଭିତରଆଡ଼ୁ ଶିକୁଳି ପକାଇବାକୁ ଯାଇଥିଲେ। ଦିଅଟି ଗୋଟିଏ ଚୀଙ୍କଠାରେ ବାଜିବାରୁ ସେ ଆମ ଷଡଯନ୍ତ୍ର କଥା ପ୍ରକାଶ କଲେ। ଏକଥା ସେକ୍ରେଟାରୀ (ନନା)ଙ୍କ କାନକୁ ଗଲା। ସରକାରୀ କାଗଜପତ୍ର ଅକସ୍ମାତ୍ ଉଇଙ୍କଦ୍ୱାରା ନଷ୍ଟ ହୋଇଛି ବୋଲି ରିପୋର୍ଟ ହେଲା ଓ ହେଡ଼ମାଷ୍ଟର କଟକ ଯାଇ ଆଠଦିନ ରହି କେତେଗୁଡ଼ିଏ ଚିଠିର ନକଲ ସରକାରୀ ଅଫିସମାନଙ୍କରୁ ଆଣିଲେ। ବାକି କାଗଜତକ ଅପୂର୍ଣ୍ଣ ରହିଲା। ଏ ଅପରାଧ ପାଇଁ ମୋ ଉପରେ ମଧ ବେହାଘାତ ହେଲା। କିନ୍ତୁ ଚହିଁର ଦାଉ ଓ ସଂଖ୍ୟା (quality and quantity) ଭିକାରୀମାଙ୍କର ଅଧା ଥିଲା କି ନାହିଁ ସନ୍ଦେହ। ଏସବୁ ବାଜେ କଥା ଏଠାରେ ଲେଖିବାର ଉଦ୍ଦେଶ୍ୟ ଏହିକି ପିଲାଦିନେ ମୋର ଆଗପଛ ବିଚାର ନଥିଲା ଓ ସେ ଦୋଷରୁ ମୁଁ ଆଜଯାଏ ମୁକ୍ତ ହୋଇନାହିଁ।

## ମୋ ବଡ଼ ଭଉଣୀ ହରନାନୀ—

ମୋ ବଡ଼ ଭଉଣୀ ହରନାନୀଙ୍କ ବୟସ ଆଠବର୍ଷ ଓ ମୋ ବୟସ ସାତବର୍ଷ ହୋଇଥିଲାବେଳେ ଏକାଦିନେକେ ତାଙ୍କ ବିବାହ ଓ ମୋ ବ୍ରତ ହେଲା। ବିବାହ ହେବାର ବର୍ଷକ ମଧ୍ୟରେ ହରନାନୀଙ୍କ ସ୍ୱାମୀ ବସନ୍ତ ରୋଗରେ ମୃତହେଲେ। ତାଙ୍କ ସ୍ୱାମୀଙ୍କ ନାମ ଥିଲା ବଳଭଦ୍ର ମହାପାତ୍ର। ହରନାନୀଙ୍କଠାରୁ ଖଡ଼ୁ ଆଦି କଢ଼ା ହେଲାବେଳେ ବଡ଼ବୋଉ, ସାନବୋଉ ଓ ବୁଢ଼ୀମା ସମସ୍ତଙ୍କ କ୍ରନ୍ଦନ ରୋଳରେ ଘର ପୂରିଥାଏ। କିନ୍ତୁ, ସେମାନେ କାହିଁକି କାନ୍ଦୁଛନ୍ତି ଓ କାହିଁକି ହରନାନୀଙ୍କ ଦେହରୁ ଅଳଙ୍କାର କଢ଼ା ହେଉଛି ସେକଥା ହରନାନୀ ଓ ମୁଁ ବୁଝି ନପାରି ପ୍ରଥମେ ପ୍ରଥମେ ଶିଶୁ ପ୍ରକୃତି ସୁଲଭ ସହାନୁଭୂତି ପ୍ରଣୋଦିତ ହୋଇ କିଛିକ୍ଷଣ ଅନ୍ୟ ସମସ୍ତଙ୍କ ସଙ୍ଗେ କାନ୍ଦିଲୁ। ହରନାନୀ ପଚାରିଲା "ମୋ ଦେହରୁ ଏସବୁ କିଆଁ କାଢ଼ୁଛ ?" ସେଠାରେ ଜଣେ ଲେଖାଯୋଖା ମାଉସୀ ଠିଆ ହୋଇଥିଲେ। ସେ କହିଲେ—"ଆଜି ଭଲ ଅଳଙ୍କାର ଗଢ଼ାହୋଇ ଆସିବ ବୋଲି ଏସବୁ ଭଙ୍ଗା ପୁରୁଣା ଅଳଙ୍କାର କଢ଼ା ହେଉଛି।" ନୂଆ ଅଳଙ୍କାର ପିନ୍ଧିବା କଥା ଶୁଣି ହରନାନୀ

ହସିଲା ଓ ମୁଁ ତା' ସଙ୍ଗେ ହସିଲି । ହରନାଣୀଙ୍କ ସ୍ୱାମୀଙ୍କ ମୃତ୍ୟୁ ସମ୍ବାଦ ଆମ ଘରେ ପହଞ୍ଚିଲା ବେଳେ ନନା ଦାଣ୍ଡପାଖ ପିଣ୍ଡାରେ ବସିଥିଲେ । ଏ ସମ୍ବାଦ ଶୁଣି ବସିବାଜାଗାରୁ ଉଠି ଗଡ଼ମ ମାଡ଼ି ଘରୁ ବାହାରିଗଲେ ଓ ପରେ ଚାକରମାନେ ତାଙ୍କ ଲୁଗାପଟା ଆଦି ନେଇକରି ଗଲେ । ନନା ଯାଇ ଆମ ଜମିଦାରୀର ଭିନ୍ନ ଭିନ୍ନ କଚେରୀରେ ରହିଲେ । କିନ୍ତୁ ଆଠ ନ'ମାସ କାଳ ସେ ଘରକୁ ଆସି ନଥିଲେ ।

ମୋର ମନେ ଅଛି, ଦିନେ ଦିନେ ସନ୍ଧ୍ୟା ବେଳକୁ ବୋଉ, ସାନବୋଉ, ବୁଢ଼ୀମା ଓ ରାଧୀନାନୀ— ସମସ୍ତେ ହରନାଣୀ ପାଖରେ ରୁଣ୍ଡ ହୋଇ କାନ୍ଦ ବୋବାଳି କରୁଥା'ନ୍ତି । ହରନାଣୀ ଅଜ୍ଞାନ ହୋଇ ପଡ଼ିଥାଏ । ତାକୁ କିଏ ବିଞ୍ଚୁଥାଏ, କିଏ ଘଷୁଥାଏ; କିଏ ତା ମୁଣ୍ଡରେ ଘିଅମହୁ ଘଷୁଥାଏ; କିଏ ତା ମୁଣ୍ଡରେ ପାଣି ଛିଞ୍ଚୁଥାଏ । ଏ ସବୁ କିଛି ମୁଁ ବୁଝି ପାରୁ ନଥାଏ । ତା'ପରଦିନ ହରନାଣୀ ପୁଣି ତାଜା ହୋଇ ମୋ ସାଙ୍ଗରେ ଖେଳା ବୁଲା କରେ । ତାକୁ ପଚାରିବାରୁ ସେ କହିଲା—"କାଲି ଦିନଯାକ ମୋତେ ବୋଉ କିଛି ଖାଇବାକୁ ଦେଲେ ନାହିଁ । ମୋ ମୁଣ୍ଡ ଘାଉଁରି ଖାଉଥାଏ । ମତେ 'ଚେକାମାଉଳି' ଖେଳିଲା ବେଳେ ଯିମିତି ଘରଦୁଆର ବୁଲିଲାପରି ଦିଶୁଥାଏ ମତେ ସିମିତି ଦେଖା ଯାଉଥାଏ ଓ ମୁଁ ଠିଆ ହେଲା ବେଳକୁ ପଡ଼ିଯାଉଥାଏଁ, ଆଉ ମୋ ଆଖିକି ସବୁ ଆଉ ଅନ୍ଧାର ଦିଶୁଥାଏ । ମୋ ଆଗରେ ଜୁଳୁଜୁଳିଆ ପୋକସବୁ ଉଡ଼ୁଥାଆନ୍ତି-ମୁଁ ଏତିକି ଜାଣେ ।" ମୁଁ ଏକଥା କିଛି ବୁଝି ପାରୁନଥାଏଁ । ପନ୍ଦର ଦିନକୁ ପନ୍ଦରଦିନ ହରନାଣୀର ଅବସ୍ଥା ଏହିପରି ହେଉଥାଏ । ପରେ ଟିକିଏ ଆହୁରି ଜାଣିବାର ହେଲାରୁ ଜାଣିଲି ଯେ ବ୍ରାହ୍ମଣୀ ବିଧବାମାନଙ୍କୁ ପ୍ରତି ଏକାଦଶୀ ଦିନ ନିରମ୍ବୁ ଉପବାସ (ନିର୍ଜଳା ଉପାସ) କରିବାକୁ ପଡ଼େ । ଆଠବର୍ଷ ବୟସ୍କା ହରନାଣୀ ପ୍ରତି ଏକାଦଶୀ ଦିନ କ୍ଷୁଧା ଜ୍ୱାଳା ସହି ନପାରି ଏପରି ହୁଏ । ଦିନଯାକ ତା'ର ଆମ ସଙ୍ଗେ ଖେଳରେ କଟିଯାଏ । ସନ୍ଧ୍ୟାବେଳକୁ ସେ ମୂର୍ଚ୍ଛା ଯାଇ ପଡ଼ିଯାଏ । ଅଥଚ ସେ ଏତେ ଅଳ୍ପ ବୟସ୍କା ହୋଇଥାଏ ଯେ କ୍ଷୁଧାଜ୍ୱାଳାରୁ ଏହା ହେଉଛି ବୋଲି ନିଜେ ବୁଝି ପାରୁନଥାଏ । ବୁଝି

ପାରୁଥିଲେ ମଧ୍ୟ ସେ କଷ୍ଟ କରିପାରନ୍ତା ନାହିଁ; କାରଣ ଘରେ ବୁଢ଼ୀମାଆ, ରାଧାନାମି ଓ ବଡ଼ବୋଉ (ଦେଠେଇ) ଏମାନେ ସମସ୍ତେ ଭୟଙ୍କର ରକ୍ଷଣଶୀଳା । ସେମାନଙ୍କ ବିଚାରରେ ହରନାମି କ୍ଷୁଧାରେ ଇହଜଗତରୁ ମୁକ୍ତ ହେଉ ପଛକେ ତା ପରକାଳୀନ ଜଗତ୍‌ରେ ଆଞ୍ଚ୍ ନ ଲାଗୁ ।

ହର ନାମି, ମୁଁ ଓ ମୋ ସାନଭାଇ ଜଦୁନାଥ (ଡାକ ନାମ ଜଦ); ଆମ୍ଭମାନଙ୍କ ବୟସରେ ୧୩।୧୪ ମାସ ଲେଖାଏଁ ଫରକ ଥିଲା । ଆମେ ତିନିଜଣ ଓ ଗ୍ରାମର ଅନ୍ୟ ପିଲାମାନେ ଏକାଠେଇଁ ଖେଳୁଥାଉଁ । ହରନାମି ଓ ଜଦ ଦୁହେଁ ମତେ ଖୁବ୍ ସ୍ନେହ କରୁଥିଲେ । ଗଜା ବାହାରି- ଥିବା ପାଚିଲା ତାଳର ଟାକୁଆକୁ ହାଣିଲେ ବା ଢ଼ିଙ୍କିରେ କୁଟିଲେ ତାହା ଦୁଇଫାଳ ହୋଇଯାଏ ଓ ତା ମଧ୍ୟରେ ଥିବା ତାଳଖଙ୍କୁ ଖାଇବାକୁ ସୁସ୍ୱାଦୁ । ଦିନେ ୨।୩ଟି ତାଳ ଟାକୁଆ ଆଣି ହରନାମି ଓ ମୁଁ ଢ଼ିଙ୍କିଶାଳକୁ ଗଲୁ । ମୁଁ ଢିଙ୍କି ଲଞ୍ଜ ଉପରେ ଠିଆ ହେଲି, ଢିଙ୍କିର ଆର ମୁଣ୍ଡଟି ଟେକ ହୋଇଗଲା । ହରନାମି ଢିଙ୍କି ଉଗଣ୍ଡିରେ ତାଳଟାକୁଆକୁ ରଖିଲା- ବେଳେ ମୁଁ ଢିଙ୍କି ଲଞ୍ଜିକୁ ସମ୍ଭାଳି ନ ପାରି ଗୋଡ଼ ଦେଲି । ଢ଼ିଙ୍କି ପାହୁରଣୀ ହରନାମିଙ୍କ ହାତ ଉପରେ ପଡ଼ିଲା । ହରନାମିଙ୍କ ଡାହାଣ ହାତର ଧଣି ଆଙ୍ଗୁଠିର ଦୁଇଟି ପବ ଆଙ୍ଗୁଠି ଦେହରୁ ଛିଣ୍ଡିଗଲା । ସେ ଓ ମୁଁ ରଡ଼ି ପକାଇଲୁ । ବଡ଼ବୋଉ, ସାନବୋଉ ଓ ବୁଢ଼ୀମାଆ ଆଦି ସମସ୍ତେ ଜମା ହୋଇଗଲେ । ମୋ ଦୋଷରୁ ତାଙ୍କ ହାତ ଛେଚି ହୋଇ ଯାଇଛି— ଏକଥା ହରନାମିଙ୍କ ତୁଣ୍ଡରୁ ବାହାରିଲା ନାହିଁ । ସେ କହୁଥାନ୍ତି— 'ଢ଼ିଙ୍କି ଉଗଣ୍ଡିରେ ତାଳଟାକୁ ରଖୁ ରଖୁ ପାହୁରଣୀ ମୋ ହାତରେ ପଡ଼ିଗଲା ।' ମୁଁ ତ ସହଜେ ଅପରାଧୀ । ଆପଣା ଅପରାଧ ମୁଁ ସ୍ୱୀକାର କରୁ ନ ଥାଏ । ସେ କ୍ଷତ ଆରୋଗ୍ୟ ହେବାକୁ ଚାରିମାସ ଲାଗିଲା ଓ ହରନାମିଙ୍କ ଡାହାଣ ଧଣି ଆଙ୍ଗୁଠି ଆଗ ଦୁଇପବ ବିହୀନ ହୋଇ ରହିଗଲା । ତାଙ୍କର ଆରୋଗ୍ୟ ହେଲା ପରେ ମୋ ଦୋଷରୁ ଏହା ଘଟି- ଥିଲା ବୋଲି ଲୋକେ ମୋ ମୁହଁରୁ ଶୁଣିଲେ । ହରନାମି ମୋତେ କହିଲେ— 'ଗୋପାଳ, ତୋ ଦୋଷରୁ ଏହା ହୋଇଛି ବୋଲି ତତେ ମୁଁ କ'ଣ ନର୍କକୁ ପେଲି ଦେଇଥା'ନ୍ତି ?'

**ସାନଭାଇ ଉଦ୍ଧ**—ଥରେ ଆମେ ସ୍କୁଲ ଛୁଟି ହେବା ପରେ ଆମ ବାଡ଼ ପାଖରେ ଥିବା ସ୍ତ୍ରୀଲୋକମାନଙ୍କ ପାଇଖାନା ବଟିବୃରେ ଥାଉ । ସେଠାରେ ଗୋଟାଏ କାଙ୍କ ପଡ଼ିଥିଲା । ମୁଁ ସେ କାଙ୍କକୁ ଉଁଚାଇ ବଗିଚ୍ଚର ମାଟି ଖୋଳିବାକୁ ବସିଲି । ପ୍ରଥମ ଥରକ କାଙ୍କର ଶ୍ରେଷ୍ଠ ମାଟି ଉପରେ ପଡ଼ିଲା । ସେତେବେଳେ ତ ଆମର ଶିଶୁହସ୍ତ କାଙ୍କ ବ୍ୟବହାର କରିବା ଶିଖି ନ ଥାଏ । ଆଉ ଶ୍ରେଷ୍ଠଟି ଉଦ୍ଧର ତାଳୁ ଉପରେ ପଡ଼ିଲା । ଅବଶ୍ୟ ସେତେବେଳେ ମୋ ଶିଶୁ ହସ୍ତରେ ବେଶୀ ବଳ ନ ଥିଲା । ନଚେତ୍ ଉଦ୍ଧ ସେହିକ୍ଷଣି ପଞ୍ଚତ୍ୱ ପ୍ରାପ୍ତ ହୋଇଥା'ନ୍ତା । ଆମେ ଦୁହେଁ ରଡ଼ି ଛାଡ଼ିଲୁ । ଘରର ଓ ବାହାରର ସମସ୍ତେ ଆସି ଜମା ହୋଇଗଲେ । ଉଦ୍ଧର ତାଳୁରୁ ସେତେବେଳେ ରକ୍ତ ବୋହି ତା ଦେହମୁଣ୍ଡ ରକ୍ତରେ ବୁଡ଼ିଥାଏ । ମୋତେ ସମସ୍ତେ ପଚାରିବାରୁ ମୁଁ ନିଜେ ଏହା କରିଛି ବୋଲି କହିବାକୁ ମୋ ପାଟି ଖୋଲି ମାରି ଯାଉଥାଏ । ଏପରି ଭୟଙ୍କର ଅବସ୍ଥାରେ ଥାଇ ସୁଦ୍ଧା ମୋତେ ଗାଳିମାଡ଼ରୁ ରକ୍ଷା କରିବା ପାଇଁ ଉଦ୍ଧ କହିଲା— 'ଭାଇନା ଓ ମୁଁ ଏଠି ଠିଆ ହୋଇଥିଲୁ । ଗୋଟାଏ ଇଟା କିଏ କେଉଁଆଡ଼ୁ ମାରିଲା । ସେଇଟା ମୋ ମୁଣ୍ଡ ଉପରେ ବାଜିବାରୁ ରକ୍ତ ବୋହୁଅଛି । ଏତିକି କହି ସୁଦ୍ଧା ଉଦ୍ଧର ସନ୍ତୋଷ ହେଲା ନାହିଁ । ଆମ ପାଖରେ ପଡ଼ିଥିବା ଖଣ୍ଡିଏ ଭଙ୍ଗା ଇଟା ଉଠାଇ ଆଣି ସମସ୍ତଙ୍କୁ ଦେଖାଇ କହିଲା 'ଏ ଇଟା ଆସି ମୋ ମୁଣ୍ଡ ଉପରେ ପଡ଼ିଲା ।' ଅବଶ୍ୟ କାଙ୍କର ତୀକ୍ଷ୍ଣ ଶସ୍ତ୍ର ଜନିତ କ୍ଷତ ଓ ଇଟାଜନିତ କ୍ଷତ ମାରିନା କରି ଉଦ୍ଧର ବୟାନର ସତ୍ୟତାକୁ ଅପ୍ରମାଣିତ କରିବାକୁ ସେଠାରେ କେହି ପାଶବାଲା ଡାକ୍ତର ନ ଥିଲେ । ସେ କ୍ଷତ ଶୁଖିବାକୁ ପ୍ରାୟ ତୁଇମାସ ଲାଗିଲା । ପରେ ଉଦ୍ଧକୁ ମୁଁ ପଚାରିଲି —'ଉଦ୍ଧ, ମୋ ନାଆଁ ନ କହି ତୁ ଇଟା କଥା କପରି ଘାନ୍ଧ-କରି କହିଲୁ ?' ଉଦ୍ଧ କହିଲା— 'ଭାଇନା, ମୁଁ ତୁହ୍ମ ରୂହ୍ମ ତୁମେ ବୁଢ଼ୀମାଆ ହେଡ଼କାଙ୍କଠାରୁ ଗାଳି ଖାଇଥାନ୍ତ । ତୁମ ଦୋଷକୁ ଲୁଚାଇ-ବାକୁ ମୋତେ ସେତେବେଳେ ମହାପ୍ରଭୁ ଏଇ ଇଟା ବୁଦ୍ଧି ଦେଲେ ।' ମୋର ବି.ଏ. ପାଶ କରିବା ପରେ ହରନାମଙ୍କ ମୃତ୍ୟୁ ଘଟିଲା । କିନ୍ତୁ ଯେଉଁ ଭ୍ରାତୃସ୍ନେହ ମୁଁ ତାଙ୍କଠାରେ ଅନୁଭବ କରି, ଜାଣିଛି, ଏପରି

ସ୍ନେହ ମୁଁ ସଂସାରରେ ଅନ୍ୟତ୍ର ବା ମୋର କନିଷ୍ଠାମାନଙ୍କଠାରେ ଦେଖିନାହିଁ ।

**ଶ୍ରାଦ୍ଧ ଉତ୍ସବ**—ବର୍ଷକରେ ଆମ ପରିବାରରେ ୩ଟି ଶ୍ରାଦ୍ଧ ହେଉଥିଲା । ସ୍ୱର୍ଗତ ଦଦେଇଙ୍କର, ସ୍ୱର୍ଗତ ପିତାମହଙ୍କର ଓ ସ୍ୱର୍ଗତା ଜ୍ୟେଷ୍ଠା ପିତାମହୀଙ୍କର । ପ୍ରତିଥର ହଜାରେ ଦୁଇ ହଜାର ବ୍ରାହ୍ମଣଙ୍କୁ 'ଚୂଡ଼ା ଦହି' ଓ ଦକ୍ଷିଣା ଦିଆ ହେଉଥିଲା । ଆମ ଗ୍ରାମର ୩।୪ ମାଇଲ ମଧ୍ୟସ୍ଥ ବ୍ରାହ୍ମଣ ଶାସନ (କେଇଜଙ୍ଗା, ଦଣ୍ଡଆସିପଡ଼ା, କନ୍ଦରପୁର, କମପୁର, ଫକରପଡ଼ା, ଚଉଁରପା)ସ୍ଥ ଆମ୍ଭମାନଙ୍କର କୁଟୁମ୍ବୀ ଓ ବନ୍ଧୁ ଓ 'ଭକ୍ଷଭୋଜୀ' ୩୦୦।୪୦୦ ବ୍ୟକ୍ତି ଓ ବ୍ରାହ୍ମଣେତର ୪୦୦।୫୦୦ ବ୍ୟକ୍ତି ଅନ୍ନବ୍ୟଞ୍ଜନ 'ଖିରପିଠା' ଭୋଜନ କରୁଥିଲେ । ସେ ସମୟରେ ଭିତର ଅଗଣାରେ ଗ୍ରୁମୁଣ୍ଡିଆମାନ ବନ୍ଧା ହେଉଥିଲା ଓ ରନ୍ଧା ହେବା ପାଇଁ 'ଖନ୍ଦା' (ପହଣି ପରି ୧୦।୧୨ ହାତ ଲମ୍ବ ଚୁଲ୍ଲୀମାନ) ଖୋଳା ହେଉ-ଥିଲା । ଉକ୍ତ ଖନ୍ଦାମାନଙ୍କରେ ଏକାଥରକେ ୧୦।୧୨ଟି ଲେଖାଏ ନଉତି ବସା ହେଉଥିଲା । ଏ ଖନ୍ଦାଶାଳ ପାଇଁ ପ୍ରତ୍ୟେକ ଶ୍ରାଦ୍ଧ ଉପଲକ୍ଷରେ ଅନ୍ୟୂନ ୨୦ ଗାଡ଼ି ଜାଳକାଠ ଖର୍ଚ୍ଚ ହେଉଥିଲା । ସେ ଚୁଲ୍ଲୀରେ ଶ୍ରାଦ୍ଧ-ଦିନ ପାକାର୍ଥ ଜଳିଥିବା ନିଆଁ ୩।୪ ଦିନ ପର୍ଯ୍ୟନ୍ତ ଜୀଇଁ ରହୁଥିଲା । କେବେବା କ୍ୱଚିତ୍ ସ୍ଥାନୀୟ କମାର ଆସି ଶ୍ରାଦ୍ଧର ପରଦିନ ସକାଳେ ଜଳନ୍ତା ଅଙ୍ଗାର ଦହକୁଥିବା ସେଇ ପହଣିମାନଙ୍କରେ ପାଣି ଢାଳ ଲିଭାଉଥିଲେ ଓ ସେ ଅଙ୍ଗାରକୁ ତା କମାରଶାଳରେ ବ୍ୟବହାର ପାଇଁ ନେଉଥିଲେ । ଥରେ ଖନ୍ଦାରୁ ନିଆଁ ନିଭି ହୋଇନଥାଏ । ଆମେ କେତେଜଣ ପିଲା ସେ ଖନ୍ଦା ଉପରେ ଆଡବାଗରେ ଜାଳ କାଠଖଣ୍ଡମାନ ପକାଇ ଖନ୍ଦାକୁ ନଈ କଳ୍ପନା କରି କାଠଖଣ୍ଡମାନଙ୍କ ଉପରେ ଗୋଡ଼ ପକାଇ ପହଣୀର ଏପାଖରୁ ସେପାଖକୁ ପାରି ହେଉଥିଲୁ । ଏହି ସମୟରେ ମୁଁ ଠାଣୁଆକାଠ ନ ପାଇ ଖଣ୍ଡେ ଖୋଲପା ରଖି ଦେଲି ଓ ତା' ଉପରେ ଗୋଡ଼ଦେବା ମାତ୍ରେ ବକଲଟି ଭାଙ୍ଗିଗଲା ଓ ମୋ ବାଆଁ ଗୋଡ ପହଣୀ ଭିତରେ ଥିବା ନିଆଁରେ ବଳାଗଣ୍ଠି ପର୍ଯ୍ୟନ୍ତ ପୋଡି ହୋଇ ପୋଡ଼ିଗଲା । ଡାହାଣ ଗୋଡ ମଧ୍ୟ ନିଆଁ ଧାସରେ ପୋଡ଼ିଗଲା । ମୁଁ କାନ୍ଦ ବୋବାଳ କଲି ଓ

ସାଙ୍ଗମାନେ ଏ ଦୁର୍ଘଟଣା ଦେଖି ଗୁଡ଼ ପଳାଇଗଲେ । ମୋ କାନ୍ଦ ଶୁଣି ଘରର ସମସ୍ତେ ଧାଇଁ ଆସିଲେ ଓ ଘୋଡ଼ା ଘାଆର ପ୍ରତିକାର କଲେ । ସେ ଘାଆ ଭଲ ହେବାକୁ ପ୍ରାୟ ଛଅମାସ ଲାଗିଲା ଓ ମୁଁ ଦୁଇମାସ କାଳ ଭୂମିରେ ପାଦ ଲଗାଇ ଚାଲି ପାରୁ ନ ଥିଲି ।

ଥରେ ୫।୬ ବର୍ଷ ବୟସ ସମୟରେ ମୋ ସାନବୋଉ (ଜନନୀ)ଙ୍କୁ କଣ୍ଟା ଦଂଶନ କଲା । ସେ ଘାରି ବିକଳ ହେଲେ । ମୁଁ କାହାକୁ କିଛି ନ କହି ଇସ୍କୁଲ ଘରୁ ଖଣ୍ଡେ ଧୂଳଖଡ଼ି (ଚକ) ଆଣି ତାଙ୍କୁ ଚନ୍ଦନ ପେଡ଼ିରେ ଘୋରି ଦଷ୍ଟ ସ୍ଥାନରେ ଲେପ ଦେବା ମାତ୍ରେ ଯନ୍ତ୍ରଣା ବନ୍ଦ ହୋଇଗଲା ।

**ରହଯୋଡ଼**—ବୋଧହୁଏ ମୋତେ ୬।୭ ବର୍ଷ ହୋଇଥାଏ । ଆମ ଗ୍ରାମରୁ କ୍ୱାର୍ଟର ମାଇଲ ଛଡ଼ା ଉତ୍ତରରେ ତାଳଦଣ୍ଡା କେନାଲ ଯାଇଛି । ସେ କେନାଲ ପାଣି କ୍ଷେତମାନଙ୍କରେ ମାଡ଼ିବା ସମ୍ପର୍କରେ ନକ୍ସା ଓ ମାପ କରିବା ପାଇଁ ଜଣେ ଗୋରା (ସାହେବ) ଆମ ଗ୍ରାମର କ୍ୱାର୍ଟର ମାଇଲ ପୂର୍ବରେ ଥିବା ରହଯୋଡ଼ କୂଳର ଅମର ଗୋଟିଏ ଆମ୍ବ ତୋଟାରେ ତମ୍ବୁ ପକାଇଲେ ଓ ତାଙ୍କୁ ରସଦ୍ ଯୋଗାଇବା ପାଇଁ ମୋ ପିତୃଦେବଙ୍କଠାକୁ ସରକାରୀ ପରୁଆନା ଗଲା । ସାହେବ ଜଣେ କୁଆଁ ଆସିଲେ ? ଏତିକ କଥା ତଥ୍ୟ କରି ବୁଝିବା ପାଇଁ ସାହେବଙ୍କ ପାଖକୁ ଯିବାକୁ କାହାର ସାହାସ ହେଲା ନାହିଁ । ସାହେବଙ୍କ ସଙ୍ଗେ ମେମ ଓ ପିଲା କେତେଜଣ ଓ ଘୋଡ଼ା ହାତୀ ଥାଆନ୍ତି । ଯୋଡ଼କୂଳ ତୋଟାରେ ବଡ଼ ସାନ ମଧ୍ୟଭଳ କେତେଗୁଡ଼ାଏ ତମ୍ବୁ ଖଟା ହେଲା । ସେତେବେଳେ ଆମ ଗ୍ରାମରେ ଇଂରାଜୀ ଜାଣିଲାବାଲା କେବଳ ହେଡ଼ମାଷ୍ଟର ଶ୍ରୀ ବାଞ୍ଛାନିଧି ମହାନ୍ତି । କିନ୍ତୁ ତାଙ୍କର ଗୋଟିଏ ବୈଶିଷ୍ଟ୍ୟ ଥାଏ ଯେ, ଗୋରା ଚମଡ଼ାବାଲାଙ୍କ କଥା ଗାଧୋଇ ଯାଉ, ଇସ୍କୁଲ ଇଲକାର କୌଣସି ହାକିମଙ୍କୁ ଦେଖିଲା ମାତ୍ରେ ସେ ଗୋଟାସୁଦ୍ଧା ବରଡ଼ାପତ୍ର ପରି କମ୍ପୁଥାଆନ୍ତି ଓ କଥା କହିଲାବେଳେ ତାଙ୍କ ପାଟି ଖନ ମାରିଯାଏ । ଏପରିକ ହାକିମହୁକୁମାଙ୍କ ଆଗରେ ବହି ଧରିଲେ ହାତ ଥରିବା ଯୋଗୁ ତାଙ୍କ ହାତରୁ ବହି ଖସି ପଡ଼େ । ପିତୃଦେବ ପିଲାଦିନେ ଇଂରାଜୀ ପଢ଼ି ନ ଥିଲେ । ପରେ ଶିକ୍ଷକ ରଖି First Book of Reading ଓ Second

**Book of Reading** ପଢ଼ିଥିଲେ । ସେ ଇଂରାଜୀ ଅକ୍ଷର ସୁନ୍ଦର କରି ଲେଖି ପାରୁଥିଲେ । କିନ୍ତୁ ଇଂରାଜୀରେ କଥା କହି ପାରୁନଥିଲେ ଓ ବୁଝି ପାରୁ ନ ଥିଲେ । ଅତଏବ ସାହେବ କିଏ, କାହିଁକି ଆସିଛନ୍ତି, କେତେଦିନ ରହିବେ, ତାଙ୍କର କଣ କଅଣ ଚଳ ଲୋଡ଼ା, ଏସବୁ କଥା କିଏ ସାହସ କରି ବୁଝି ଆସିବ ? ଯେଉଁ ଯୋଡ଼ିକଳେ ସାହେବଙ୍କ ତମ୍ବୁମାନ ପଡ଼ିଥିଲା ତାହା ସମ୍ଭବତଃ କେନାଲ ଖୋଳା ହେବା ପୂର୍ବେ କାଠଯୋଡ଼ି ଓ ପାଇକା ନଈବଡ଼ି ସମୟରେ ଘାଇ ଭାଙ୍ଗିବା ଦ୍ୱାରା ଖୋଳ ହୋଇ ଯାଇଥିଲା । ତାହା ପୂର୍ବ ପଶ୍ଚିମ ଲମ୍ବରେ ପ୍ରାୟ ୧ ମାଇଲ ଓ ତହିଁର ଉତ୍ତର ଦକ୍ଷିଣ ଚଉଡ଼ା ୧୦୦ ହାତଠାରୁ ୫୦୦ ହାତ ପର୍ଯ୍ୟନ୍ତ । ସେ ଯୋଡ଼ି ଦୁଇଟି ସ୍ଥାନରେ ସୁଗଭୀର । ଜନଶ୍ରୁତି ଅଛି ଯେ ସେ ଯୋଡ଼ିର କୂଳରେ ଗୋଟିଏ କମା ବ୍ରାହ୍ମଣଙ୍କ ଶାସନ ଥିଲା । କମାମାନଙ୍କ ସମାଜରେ ଦେଉଡ଼ିଶୁର ଯେଉଁ ପୋଖରୀରେ ଗାଧୋଇବେ ସେ ପୋଖରୀରେ ଭାଇବୋହୂଙ୍କର ସ୍ନାନ ନିଷିଦ୍ଧ । ସେଠାରେ ମଧ୍ୟ ଗୋଟିଏ ଦେଉଳ ଥିଲା । ଶାସନର ପୂର୍ବ ମୁଣ୍ଡରେ ଓ ପଶ୍ଚିମ ମୁଣ୍ଡରେ ୨ଟି ପୋଖରୀ ଖୋଳା ହୋଇଥିଲା । ଥରେ ଜଣେ ଭାଇବୋହୂ ଏ ଆଚାର ଲଙ୍ଘନ କରି ଦେଉଡ଼ିଶୁରଙ୍କ ବ୍ୟବହାର୍ଯ୍ୟ ପୋଖରୀରେ ସ୍ନାନ କରିବାରୁ 'ଦେମାୟା' (ଦେବମାୟା) ହେଲା ଓ ସେ ପୋଖରୀ ତଥା ଗ୍ରାମ ଦେଉଳ ପାଣିରେ ବୁଡ଼ିଗଲା । ଜନଶ୍ରୁତି ଅଛି ଯେ ପୂର୍ବେ ନିକଟବର୍ତ୍ତୀ ଗ୍ରାମର ଅକ୍ଷମ ଗୃହସ୍ଥଙ୍କ ପୁଅ କନ୍ୟାଙ୍କ ବିବାହ ଉପଲକ୍ଷେ ଯୋଡ଼ି କୂଳକୁ ଯାଇ ଗୃହସ୍ଥ ଗଙ୍ଗାମାତାଙ୍କ ପୂଜା କରୁଥିଲେ ଓ ସେ ଯୋଡ଼ି ମଧ୍ୟରୁ ଅଳଙ୍କାର ଆଭରଣମାନ ଗୁଣ୍ଡାରେ ଭାସି ଭାସି ଆସି କୂଳରେ ଲାଗୁଥିଲା । ଗୃହସ୍ଥ ତାଙ୍କୁ ବିବାହ ଉପଲକ୍ଷରେ ବ୍ୟବହାର କରିବାପରେ ବିବାହାନ୍ତେ ଅଳଙ୍କାରଗୁଡ଼ିକ ଗୁଣ୍ଡାରେ ଥୋଇ ଗଙ୍ଗାମାତାଙ୍କୁ ପୂଜାକରି ସେ ଯୋଡ଼ିରେ ଭସାଇ ଦେଇ ଆସୁଥିଲେ ।

ଥରେ ଲୋଭ ପରବଶ ହୋଇ ଜଣେ ଗୃହସ୍ଥ କେତେ ଅଳଙ୍କାର ଲୁଚାଇ ରଖି ଗଙ୍ଗାମାତାଙ୍କୁ ଫେରାଇ ନ ଦେବାରୁ ସେ ଦିନଠାରୁ ଆଉ ଅଳଙ୍କାର ବାହାରୁନାହିଁ । ଏ ଜନଶ୍ରୁତି ମୁଁ ମୋ ବୁଢ଼ୀମାଆଙ୍କଠାରୁ ଶୁଣିଥିଲି । ଯୋଡ଼ିରେ ଖୁବ୍ ପଦ୍ମ ଫୁଟେ ଓ ବହୁତ ଗୋମୁହାଁ କୁମ୍ଭୀର ସେ

ଯୋଡ଼ରେ ଥିଲେ । ପଦ୍ମଫୁଲ ତୋଳିବାକୁ ଲୋକେ ଯୋଡ଼ୀ ମଧ୍ୟକୁ ୫୦ ହାତ ପର୍ଯ୍ୟନ୍ତ ପଶନ୍ତି । ଥରେ କାଦ୍ ମହମ୍ମଦ ହୋଇ ଆମର କୁଟୁମ୍ବୀ ପିତୃବ୍ୟ ଦୁଇଜଣ ଯୋଡ଼ୀର ସୁଗଭୀର ଅଂଶରେ ୫୦୦ ବା ୬୦୦ ହାତ ଏପାଖରୁ ସେପାଖକୁ ପହଁରି ଯାଇଥିଲେ । ସେ ଯୋଡ଼ର ନାମ ଅଟଇ ଯୋଡ଼ୀ ବା ରହ୍ନଯୋଡ଼ୀ । ରହ୍ନଯୋଡ଼ୀର ନାମ ମାଳିକାରେ ଅଛି ଓ କଳ୍କୀଅବତାର ବାହାରିବା ବେଳେ ତା କୂଳରେ ଥିବା 'ବଟ' ମୂଳରେ ଭକ୍ତମାନଙ୍କର ମେଳା ହେବ ବୋଲି କୁଆଡେ ମାଳିକାରେ ଲେଖାଅଛି । ଆମ ଗ୍ରାମରେ ସମସ୍ତେ ସେ ଯୋଡ଼ୀକୁ ତୀର୍ଥ ବୋଲି ମାନୁଥିଲେ । ଦୋଳବାସି ଦିନ ଦୋଳଉତ୍ସବ ଉପଲକ୍ଷରେ ଯାତ୍ରାପାଇଁ ଦାଣ୍ଡକୁ ବାହାଥିବା ଆମ ବଂଶର ପ୍ରତିଷ୍ଠିତ ଗୋପୀନାଥ ଓ ରାଧିକାଙ୍କ ମୂର୍ତ୍ତିକୁ ବିମାନରେ ଯୋଡ଼ କୂଳକୁ ନିଆହୁଏ ଓ ସେଠାରେ ସେମାନେ 'ଯମୁନା ସ୍ନାନ' କରନ୍ତି । ଗଙ୍ଗା ଦଶହରା ସମୟରେ ଯୋଡ଼କୂଳକୁ ଭୋଗ ପଠାଯାଏ ଓ ବାଦ୍ୟାଦି ଦ୍ୱାରା ଗଙ୍ଗାପୂଜା ହୁଏ । ଗ୍ରାମର ବିଧବାମାନେ କାର୍ତ୍ତିକ ମାସର ବଡ଼ ଭୋରରୁ ଯାଇ ସେ ଯୋଡ଼ରେ କାର୍ତ୍ତିକ ସ୍ନାନ କରନ୍ତି । ବର୍ଷିୟାନମାନେ ଆଶ୍ୱିନ ମାସ ପିତୃ ପକ୍ଷରେ ସେ ଯୋଡ଼ରେ ପିତୃ ତର୍ପଣ କରନ୍ତି । ଏପରିକି ଆମ ଗ୍ରାମର କେତେଜଣ ବୃଦ୍ଧ ବ୍ୟକ୍ତି ପ୍ରତିଦିନ ସେ ଯୋଡ଼ରେ ଯାଇ ସ୍ନାନ କରୁଥିଲେ ।

ଏ ତୀର୍ଥ କୂଳରେ ସାହେବ ଆସି ତମ୍ବୁ ପକାଇବାରୁ ସାହେବଙ୍କ ଭୟରେ ସମସ୍ତଙ୍କର ସ୍ନାନ ଓ ତର୍ପଣାଦି ବନ୍ଦହେଲା । ଅତଏବ ଗ୍ରାମକୁ ଆସି ମହାବିପଦ ଘୋଟିଲା । ଶେଷକୁ ସାହେବଙ୍କ ସଙ୍ଗେ କଥାବାର୍ତ୍ତା କରି ସାହେବଙ୍କଠାରୁ ସବୁ ସଂବାଦ ବୁଝିବା ପାଇଁ କଟକକୁ ସବାରି ବେହେରା ଓ ଶଠି ପଠାଗଲା । ସ୍ୱର୍ଗତ ହରିନରଣ ବାନୁର୍ଜ୍ୟା ଉତ୍କଳ ଅଡ଼େଇଶହଟଙ୍କା ଫିସ୍ ନେଇ ଆମ ଗ୍ରାମକୁ ଆସିଲେ ଓ ଯୋଡ଼ୀକୂଳେ ସାହେବଙ୍କ ସଙ୍ଗେ ଦେଖାକରି ବୁଝି ଆସିଲେ ଯେ ସାହେବ କେନାଲ ରେଭନ୍ୟୁ ସର୍ଭେ (ମାପ) କରିବାକୁ ଆସିଛନ୍ତି । ମଫସଲରେ ମିଳିବା ଦ୍ରବ୍ୟ (ଘିଅ, ଦୁଧ, କୁକୁଡ଼ା, ଅଣ୍ଡା, ଖାସି, ମାଛ, ଘୋଡ଼ାଦାନା, ବସ୍ତାଲି, ହାଣ୍ଡି ଓ ଜାଳକାଠ ଆଦି) ଯାହା ଦରକାର ହେବ ଜମିଦାରଙ୍କ

ଗୁମାସ୍ତାଙ୍କୁ ସେ ବରାବର ଦେଉଥିବେ ଓ ସେ ଦ୍ରବ୍ୟମାନଙ୍କ ପାଇଁ ଉଚିତ ଦାମ୍ ନଗଦରେ ବୁଝାଇ ଦେଉଥିବେ । ଏ ଗ୍ରାମରେ ସ୍ନାନ ଓ ମାର୍ଜଣା ଆଦି ପୂର୍ବପର କରିବାକୁ ସାହେବ କାହାକୁ ବାଧାଦେବେ ନାହିଁ । ବରଞ୍ଚ ଗ୍ରାମବାସୀମାନେ ବେଳେବେଳେ ଯାଇ ତାଙ୍କୁ ଦେଖାକଲେ ସାହେବ ଖୁସି ହେବେ । ହରିଚରଣବାବୁ ନନାଙ୍କୁ ଏତିକ ସମଜ୍ଞାଇ ଦେଇ ଗ୍ରାମବାସୀମାନଙ୍କୁ ଅଭୟପ୍ରଦାନ କରି ଟଙ୍କା ଅଢ଼େଇଶହର ଘୋଡ଼ା ସବାରୀରେ ରଖି କଟକ ଫେରିଲେ ।

ଗ୍ରାମବାସୀମାନଙ୍କ ମଧ୍ୟରୁ ହିନ୍ଦୁସ୍ଥାନୀ ବୁଝିପାରୁଥିବା ଓ କହିପାରୁଥିବା ବୁଢ଼ା ବୁଢ଼ା ମାନେ ଓ ମୋ ପିତୃଦେବ ଯାଇ ସାହେବଙ୍କ ସଙ୍ଗେ ଦେଖା ଓ କଥାବାର୍ତ୍ତା କଲେ, ଓ ନନାଙ୍କ ସଦର ଗୁମାସ୍ତା ସାହେବଙ୍କ ଫରମାସ ଯୋଗାଇବାକୁ ମୁତଏନ୍ ହେଲେ । ଜମିଦାରଙ୍କ ପିଲମାନଙ୍କୁ ଦେଖିବାକୁ ସାହେବ ଓ ମେମ୍ ଇଚ୍ଛା ପ୍ରକାଶ କରିବାରୁ ହେଡ଼ମାଷ୍ଟର ମତେ ମୋ ସାନଭାଇ ଉଦ୍ଧବକୁ ଓ ବଦେଇଙ୍କ ମୃତ୍ୟୁ ପରେ ଜାତ ପୁତ୍ର 'ଅଭିମନ୍ୟୁ'କୁ ନେଇ ସାହେବଙ୍କ ତମ୍ବୁକୁ ଗଲେ । ମାଷ୍ଟରେତ ଗୋଟା ସୁଦ୍ଧା ଥରୁଥାଆନ୍ତି । ମୋର ମନେ ଅଛି ସାହେବଙ୍କ ସଙ୍ଗେ ଦେଖାକରିବାକୁ ତ ପୋଷାକ ଦରକାର, ଏଥିପାଇଁ ହେଡ଼ମାଷ୍ଟର କଟକ ଆସି ନାଲି ସାଲୁକନା ଉପରେ ଆମ୍ବଗୁମ୍ପା ହୋଇଥିବା ଛିଟକନା ନେଲେ । ପାର୍ଶ୍ୱବର୍ତ୍ତୀ ଗ୍ରାମରୁ ଜଣେ ଦରଜି ଆମ ତିନିଭାଇଙ୍କ ପାଇଁ ତିନିଖଣ୍ଡ ମୁଣ୍ଡଗଳା ଛିଟକୁର୍ତ୍ତା ସିଲେଇ କରିଦେଲା । ସେ କୁର୍ତ୍ତାମାନଙ୍କ ସାମନା ପାଖେ ବୋତାମ ନଲାଗି ଦୁଇକାନ୍ଧ ପାଖରେ ବୋତାମ ଲାଗି ଥାଏ । ମୁଣ୍ଡ ଗଳାଇ ସାରି ସେ ବୋତାମ ଲଗାଇ ଦେବାକୁ ହୁଏ । ଏହାହିଁ ମୋ ଜୀବନରେ ପ୍ରଥମ କୁର୍ତ୍ତା ସଙ୍ଗେ ପରିଚୟ । ଆମେ ସାହେବଙ୍କୁ ଓ ତାଙ୍କ ମେମ୍‌ଙ୍କୁ, ପିଲାଙ୍କୁ ଓ ତମ୍ବୁ ଦେଖି ଘରକୁ ଫେରିଲୁ । ଘରଭିତରେ ଟଙ୍ଗାଥିବା ଅଲଗୁଣି ଉପରେ ଲୁଗାମାନ ବାନ୍ଧି ତମ୍ବୁ ତିଆରି କଲୁ । ମୁଣ୍ଡରେ ପାକମଳାମାନ ରଖିଲୁ ଓ ଗୋଡରେ ଗୁଆ ଖୋଳପା ମାନ ବାନ୍ଧି ଓ ଇଂରାଜୀ First Bookରେ ପଢିଥିବା 'One morn I met a lame man in a lane close to my form. He had

not gone far when his stick broke.' ଆଦି ମୁଖସ୍ଥ ଥିବା ପାଠକୁ ଆବୃତ୍ତି କରି ହାଟ୍ ଓ ଜୋତା ପିନ୍ଧା ସାହେବ ମେମ୍‌ଙ୍କ ଠାଣି ଓ କଥାଭାଷା (ଯାହା ଆମେ ଦେଖି ଆସିଥିଲୁ ସେମାନ) ଅଭିନୟ କଲୁ । ମାସେ ଖଣ୍ଡେ ରହି ସାହେବ ସେଠାରୁ ତମ୍ବୁ ଉଠାଇ ଅନ୍ୟତ୍ର ଚାଲିଗଲେ । ସାହେବଙ୍କର ଜୋଡ଼କୂଳ ଛାଡ଼ି ଯିବା ପୂର୍ବରୁ ତାଙ୍କ ଚପରାସି, ଖାନ୍‌ସମା, ବବୁର୍ଚ୍ଚୀ ଆଦି ଧୋବ ଧାଉଳିଆ ପୋଷାକ ଓ ଠେକା ପିନ୍ଧି ନନାଙ୍କ ସଙ୍ଗେ ମୁଲାକାତ କରିବାକୁ ଆସିଥିଲେ ଓ ଯଥାଯୋଗ୍ୟ ବିଦାକ ପାଇ ବିଦାୟ ନେଲେ ।

ବର୍ଷକେ ଥରେ ଏ ଯୋଡ଼ାରୁ ମାଛମରା ହୁଏ । ଜୋଡ଼ଟି ୨ଟି ପ୍ରଗନ୍ନା ( କୋଦଣ୍ଡା ଓ ପାଇକା ) ଏବଂ ଏକାଧିକ ମଉଜା ଅନ୍ତର୍ଭୁକ୍ତ । ଜୋଡ଼ର ପଶ୍ଚିମ ପାଖରେ ଥିବା ଗଣ୍ଡରେ ଖରାଦିନେ ୩୦।୪୦ ହାତ ଗଭୀର ପାଣିଥାଏ । ବର୍ଷାଦିନେ ଜୋଡର ଦୁଇକୂଳ ଓ ନିକଟବର୍ତ୍ତୀ ଧାନ କ୍ଷେତମାନ ଉଚ୍ଛୁଳ ପାଣି ଶିଖରେ ୫।୬ ହାତ ବଢ଼େ, ପୂର୍ବରୁ ମକଦ୍ଦମା ମାମଲା ହୋଇ କେଉଁ ମଉଜାବାଲା କେଉଁ ଅଂଶରୁ ମାଛ ମାରିବେ ତାହା ଫଏସଲା ହୋଇଥିଲା । ଏତେ ଗଭୀର ଜଳରେ ମାଛ ମାରିବାପାଇଁ ୧୫।୨୦ ହାତ ଉଚ୍ଚ ଜାଲ ଓ ନାହା (ଡଙ୍ଗା) ଦରକାର ହୁଏ । ଥରକେ ୨।୩ ଖେପ୍ ଜାଲ ପକାଯାଏ । ଜାଲ ପଡ଼ିବା ପୂର୍ବରୁ ଗଙ୍ଗାମାତାଙ୍କୁ 'ମାଜଣା' କରାହୁଏ ଓ ଭୋଗ ଦିଆ ହୁଏ । ବର୍ଷେ ବର୍ଷେ ଏକାଖିଅକେ ବଡ ବଡ ରୋହି (୧୪ ହାତ ଲମ୍ବ) ଭାକୁଡ଼ (୨ହାତ ଲମ୍ବ ଓ ମୁଠାଣିଏ ଓସାର) ଚିତଳ (୧ହାତ ଲମ୍ବ ୧୪ହାତ ଓସାର) ପଣେ ଖଣ୍ଡେ ପଡନ୍ତି । ଥରେ ଥରେ ଜାଲରେ ସାନ ମାଛ ସୁଦ୍ଧା ପଡନ୍ତି ନାହିଁ । ଆମ ମଉଜାରେ ଥିବା ଜୋଡର ଅଂଶରେ ୧୦।୧୫ ଜଣ ସରିକଦାର । ଆମ ପରିବାରର କସ୍ତୁତ ଗୃହପଣ ଓ ଅନ୍ୟମାନଙ୍କର କାହାର ପଣେ, କାହାର ୧୦ ଗଣ୍ଡା, କାହାର ୨କଡା, ୧କ୍ରାନ୍ତି କସ୍ତୁତ ଥାଏ । ମାଛ ଧରାଳି କେଉଟ ତାଙ୍କ ପାରିଶ୍ରମିକ ଅଧେମାଛ ନିଅନ୍ତି । ବାକି ଅଧକ ବଣ୍ଟା ହେବା ପାଇଁ ବିଶା, କଟୁରି, କୁରାଡି, ପନକ ଆଦି ଆସେ ଓ ପଣ, ଗଣ୍ଡା, କଡା, କ୍ରାନ୍ତି ବାଲା ସରିକଦାରଙ୍କ ମଧ୍ୟରେ ବଣ୍ଟା ହୁଏ

ଓ ସେଇ ଉପଲକ୍ଷରେ ସରକାରମାନଙ୍କ ମଧ୍ୟରେ କଳି କଜିଆ ଓ ଥରେ ଥରେ ମାଡପିଟ ମଧ୍ୟ ହୋଇଯାଏ । ମାଛମରା ହେବା ପାଇଁ ଗ୍ରାମାନ୍ତରରୁ ଶଗଡ଼ ଦ୍ୱାରା କାଠଆଡଙ୍ଗା ବୁହାହୋଇ ଅଣା ଯାଇଥାଏ । ସେ ଡଙ୍ଗାମାନ ଫେରାଇ ଦେବାକୁ ଥରେ ଥରେ ୩।୪ ଦିନ ବିଳମ୍ବ ହୁଏ । ଥରେ ଆମେ ପିଲାମାନେ ଜୋଡ଼ କୂଳେ ଠିଆ ହୋଇ ଥାଉ । ମୋର କୁଟୁମ୍ବୀ ପିତୃବ୍ୟ ସ୍ୱର୍ଗତ ରାଧାକୃଷ୍ଣ ଆଚାର୍ଯ୍ୟ ଆଉ ୩।୪ ଜଣ କାଠଆରେ ବସି ଜୋଡର ଗଭୀର ଅଂଶକୁ ଯାଇ ସୂତୁଲି ଦଉଡ଼ି ଆଗରେ ଇଟାବାନ୍ଧି ମାପିବାରେ ଦେଖାଗଲା ଯେ ଗଭୀରତମ ସ୍ଥାନରେ ୪୦ ହାତ ପାଣି ଥିଲା । ମୁଁ ପିଲାଦିନେ ଶୁଣିଥିଲି ଯେ ଥରେ ନଅଙ୍କର (୧୮୬୬ ସାଲ) ଦୁର୍ଭିକ୍ଷ ମନ୍ୱନ୍ତର ସମୟରେ ଜୋଡ଼ ପାଣି ଶିଖରେ ୧୦ ହାତ ଶୁଖିଯାଇ ଥିଲା । ସେ ସମୟରେ ଜୋଡର ଗଭୀର ଅଂଶରେ ବୁଢ଼ା ଲୋକେ ଅଣ୍ଟାଳି କରି ଇଟାର ଦେଉଳ ଓ ପାଚିରି ଠାଉରି କରିଥିଲେ ଓ ସେ ପାଚିରିରୁ ଗୋଟିଏ ଟାଇଲ ଆଣିଥିଲେ । ସେ ଟାଇଲ ମୁଁ ପିଲାଦିନେ ଆମ ହାଣ୍ଡିଶାଳ ଘରର ପିଣ୍ଡି (ହାଣ୍ଡି ରଖିବା ପାଇଁ ଉଚ୍ଚ ଓ ଲମ୍ବବେଦୀ) ଉପରେ ଦେଖିଥିଲି । ଟାଇଲର ଲମ୍ବ ୧ ହାତ , ଓସାର ମୁଠାଏ ଓ ବେଧ ୪ ଆଙ୍ଗୁଳ ଥିଲା ଓ ଟାଇଲର ବର୍ଣ୍ଣ ଆଜି କାଲିର ଟାଇଲ ପରି କଳା ନ ହୋଇ ଫିକା ଇଟାଳିଆ ହୋଇଥିଲା ।

ଆମ ଗ୍ରାମଠାରୁ ଅଧମାଇଲ ଉତ୍ତର ପଶ୍ଚିମରେ କନ୍ଦରପୁର ମଉଜା । ସେଇଠାରେ କଟକରୁ ବାହାରିଥିବା ତାଳଦଣ୍ଡା ରାସ୍ତାରୁ ମାଛଗାଁ ରାସ୍ତା ଶାଖା ରୂପେ ଉତ୍ତର ଆଡକୁ ବାହାରିଛି । ମାଇଲେ ଖଣ୍ଡେ ଯାଇ ପୂର୍ବମୁଖା ହୋଇଛି । ଆମ ଗ୍ରାମର ଉତ୍ତର ପାଖେ (କ୍ୱାଟର ମାଇଲ ଗୁଡ଼) ତାଳଦଣ୍ଡା ରାସ୍ତା, ତାର ଉତ୍ତର ପାଖେ ତାଳଦଣ୍ଡା କେନାଲ, କେନାଲର ଉତ୍ତର ପାଖେ ମହାନଦୀର ଶାଖା ପାଇକା ନଈର ବନ୍ଧ । ଗ୍ରାମର ପୂର୍ବ ପାଖେ ତାଳଦଣ୍ଡା କେନାଲର ଗୋଟିଏ କାଣୀ ନାଳ ଯାଇଛି । ଗ୍ରାମର ପଶ୍ଚିମ ପାଖେ (କ୍ୱାଟର ମାଇଲ ଗୁଡ଼) ମାଛଗାଁ ସଡ଼କ ଓ ଗ୍ରାମର ଦକ୍ଷିଣରେ (ପ୍ରାୟ ୧ ମାଇଲ ଗୁଡ଼) ମାଛଗାଁ ସଡ଼କ ବାଙ୍କ ହୋଇ ଯାଇଛି, ତହିଁର ଦକ୍ଷିଣକୁ ମାଛଗାଁ କେନାଲ ଲାଗିଛି ଓ ତା

ଦକ୍ଷିଣକୁ କାଠଯୋଡ଼ି ନଈ ବନ୍ଧ । ମୋର ସିଦ୍ଧେଶ୍ୱରପୁର ସ୍କୁଲରେ ପଢ଼ୁଥିବା ସମୟରେ ଆମ ଗ୍ରାମର ନିକଟରେ ଥିବା ଅଂଶ ପର୍ଯ୍ୟନ୍ତ ଚାଳଦଣ୍ଡା ରୋଡ଼ ପକ୍କା ହୋଇଥାଏ । ତେଣିକି ପୂର୍ବକୁ ମାଟି ସଡ଼କ ଥାଏ । ମାଛଗାଁ ରୋଡ ଆମ ଗ୍ରାମ ଠୁଉଁ ପ୍ରାୟ କ୍ୱାର୍ଟର ମାଇଲ ଦକ୍ଷିଣକୁ ହଂସୁଆ ନାମକ ଗୋଟିଏ ସଫେଇ ନାଳ ଯାଇଛି । ସେ ଅଂଶ ପକ୍କା ହେବା ପାଇଁ ହଂସୁଆ ନାଳ ଉପରେ ବାରକ ମିସ୍ତ୍ରୀ ଇଲକା ଦ୍ୱାରା ଗୋଟିଏ ପୋଲ ତିଆରି କରାଗଲା । ଏହି ପୋଲ ତିଆରି ହେବା ପାଇଁ ନାଳକୁ ଶୁଖାଇବାକୁ ହେଲା । ପାଣି ଶୁଖାଇବା ପାଇଁ ଚକଲଗା ଗୋଟାଏ ଦମକଳ ଶହେ ଖଣ୍ଡେ କୁଲିଙ୍କ ଦ୍ୱାରା ଟଣା ହୋଇ କଟକଆଡ଼ୁ ଆସିଲା । ସେ ସମୟରେ ଝରବାଟୀରେ ବାରକ ମିସ୍ତ୍ରୀ ଇଲକାର ସବ୍ ଓଭରସିଅର ରହୁଥିଲେ । ସେ ବଙ୍ଗାଳୀ ଓ ତାଙ୍କ ନାମ ବାବୁ ରସିକଲାଲ୍ ଦାସ । ସେ ବରାବର ଆମ ଘରକୁ ବନ୍ଧୁ ଭାବରେ ଯିବା ଆସିବା କରୁଥିଲେ । ପ୍ରଥମେ ସେ ଆମ ଘରକୁ ଆସିଲାବେଳେ ମୋତେ ଦୁଇଟଙ୍କା, ଉଦ୍ଧବକୁ ଏକଟଙ୍କା ଓ ଅଭିମନ୍ୟୁକୁ ଏକଟଙ୍କା ଦେଇଥିଲେ । ମୋ ବ୍ରତ ହେବା ସମୟରେ ମୋତେ ଦୁଇଟଙ୍କା ବ୍ରତଭିକ୍ଷା ଦେଇଥିଲେ । ଆମ ଗ୍ରାମ ମୁଣ୍ଡରେ ସେତେବେଳକୁ ନୂଆ ସ୍କୁଲ ଘର ତିଆରି ହୋଇଥାଏ ଓ ଆମ ଘର କଚେରୀ ମେଲାରୁ ସେଠାକୁ ସ୍କୁଲ ଉଠି ଆସିଥାଏ । ଆମ ସ୍କୁଲର ସମ୍ମୁଖରେ ପଶ୍ଚିମ ଦିଗରେ ମାଛଗାଁ ରୋଡ ଉପରେ ସେ ଦମକଳ ଟଣା ହୋଇଯିବା ବେଳେ ଶିକ୍ଷକ ଓ ଛାତ୍ର ସମସ୍ତେ କୌତୂହଳ ବଶବର୍ତ୍ତୀ ହୋଇ ତାକୁ ଦେଖିବାକୁ ଗଲୁଁ । ସେଠାରେ ରସିକବାବୁ କୁଲିମାନଙ୍କୁ ଉତ୍ସାହିତ କରିବାକୁ ଥାଆନ୍ତି ।

ସେତେବେଳେ ସେ କଳରେ ନିଆଁ ନ ଥାଏ ବା କଳ ଚାଲୁ ହୋଇ ନ ଥାଏ । ସେ ଆମ୍ଭମାନଙ୍କୁ ଦେଖି କଳ ପାଖକୁ ନେଇ କେଉଁ-ଠାରେ ଜାଳକାଠ ବା କୋଇଲା ଦିଆଯାଏ, କେଉଁଠାରେ ପାଣି ଦିଆ-ଯାଏ, କଳ କିପରି ଚଳେ, ଏହାସବୁ ଦେଖାଇଲେ । ଯେଉଁ କୋଠରୀରେ ନିଆଁ ଜଳେ ସେ କୋଠରୀର ମୁହଁବାଟେ ଜାଳ ବା କୋଇଲା କୋଠରୀ ଭିତରକୁ ପୂରାଯାଏ । ସେ ବାଟଟି ଏକଫୁଟ ଚଉଡ଼ା ଓ ୧୨ ଫୁଟ ଲମ୍ବ ।

ସେ ବାଟରେ ଜାଲ ଭରନ୍ତି କରି ଲଟିଥିବା ଖଣ୍ଡିଏ ଲୁହା କବାଟକୁ ବନ୍ଦ କରି ଦିଆଯାଏ । ପୁଣି କାଠ ଦେଲାବେଳେ ବା ଲୁହାକୁ ଉଖୁରେଇଲା ବେଳେ କବାଟକୁ ଖୋଲିବାକୁ ହୁଏ । ପୁଣି କାମ ସାରି ବୁଜିବାକୁ ହୁଏ । ରସିକବାବୁ କହିଲେ— ନିଆଁ ଜାଳିବା କୋଠରିଟି ତଳା ଲୁହାରେ ତିଆରି । ତା ଭିତରେ ନିଆଁ ଜଳିବାରୁ ସେ କୋଠରିର ଛାତରେ ଓ ଚାରିକଡରେ ଅଳନ୍ଧୁ ଲାଗେ । ତାକୁ ସଫା କରିବାକୁ ୬।୭ ବର୍ଷର ପିଲାଙ୍କୁ ସେ ଦୁଆର ବାଟେ କୋଠରିରେ ପୂରେଇ ଦିଆହୁଏ । କାରଣ ସେ ଛୋଟ ଦୁଆର ବାଟେ ବଡ ମଣିଷ ପଶି ପାରିବେ ନାହିଁ । ଥରେ ଗୋଟିଏ ପିଲା ସେ କୋଠରି ଝାଡ଼ିବାକୁ ତା ଭିତରେ ପଶିଥିଲା । ଝାଡ଼ିସାରି ବାହାରି ଆସିଲା ବେଳକୁ ତାର ଅବସ୍ଥା କେଜାଣି କାହିଁକି ଟିକିଏ ବଢ଼ିଗଲା ଓ ପିଲାଟି ବାହାରି ପାରିଲା ନାହିଁ । ସେ କୋଠରିଟି ତଳା ଲୁହାରେ ତିଆରି, ତାକୁ ତ ସହଜରେ ଭାଙ୍ଗି ହେବ ନାହିଁ । ପିଲାର ଦୁଇ ହାତକୁ ବାହାରକୁ ଟାଣି ପିଲାକୁ ଲୋକେ ଯେତେ ଟାଣିଲେ ସେ ବାହାରି ପାରିଲା ନାହିଁ । ଉପସ୍ଥିତ ଲୋକଙ୍କର ବୁଦ୍ଧି ହଜିଗଲା । ସମସ୍ତେ ସେ ପିଲାର ଜୀବନ-ରକ୍ଷା ପାଇଁ ଭଗବାନଙ୍କୁ ଡାକୁ ଥାଆନ୍ତି । ଏହି ସମୟରେ ସେବାଟେ ଜଣେ ସାହେବ ଯାଉଥିଲେ । ଜନତା ଦେଖି ସେ ସେଠାକୁ ଆସି ଏ ପରିସ୍ଥିତି ଦେଖିଲେ । ସେ ପିଲାକୁ ଶୁଣାଇ ବଡ ପାଟି କରି କହି ଗୋଟିଏ ବନ୍ଧୁକ ଆଣିଲେ । ପିଲା ଚାହିଁଥାଏ; ତା ସାମନାରେ ସେ ବନ୍ଧୁକରେ ବାରୁଦ ଭରନ୍ତି କଲେ ଓ କହିଲେ ପିଲାଟି ବାହାରି ପାରିବ ନାହିଁ, ତାକୁ ଗୁଳି କରି ଦେବା । ପିଲା ତା ଶୁଣି କାକୁସ୍ଥ ହୋଇ ଯାଉ-ଥାଏ । ସାହେବଙ୍କ ଆଦେଶ ଅନୁସାରେ ପିଲାର ୨ ହାତ ମଝିରେ ମୁଣ୍ଡ ରହିଥିବା ଅବସ୍ଥାରେ ତାକୁ ହାତ ଧରି ଲୋକେ ଟାଣିଲେ । ଏଣେ ତା ସାମନାରେ ସାହେବ ବନ୍ଧୁକକୁ ତା ଆଡ଼କୁ ଦେଖାଇ କହିଲେ, 'ଦେଖ୍ ଯେବେ ବାହାରି ନ ପାରିବୁ ତେବେ ତୋତେ ଗୁଳି କରି ଦେବି ।' ଏଣେ ପିଲାକୁ ଲୋକେ ଟାଣୁ ଥାଆନ୍ତି । ସାହେବ ପିଲାର ଅଜାଣତରେ ଟିକିଏ କଡ଼େଇ କରି (ପିଲା ଦେହରେ ନ ବାଜିଲା ଭଳି) ବନ୍ଧୁକକୁ ଫାଏର କଲେ । ଫାଏର କରିବା ସଙ୍ଗେ ସଙ୍ଗେ ପିଲାଟି ଏକା ଓଟରକେ ସେ କୋଠରି ମଧ୍ୟରୁ ଖସି ଆସିଲା । ଉପସ୍ଥିତ ବ୍ୟକ୍ତିମାନେ ଅସ୍ବସ୍ତିର ନିଶ୍ୱାସ

ମାଇଲେ ଓ ପିଲାଟି ରକ୍ଷା ପାଇଲା । ସମସ୍ତ ସାହେବଙ୍କ ବୁଦ୍ଧିକୁ ଧନ୍ୟ ଧନ୍ୟ କଲେ । ଆମ୍ଭେମାନେ ଦମକଳ ଦେଖି ଘରକୁ ଫେରିଲୁ । ଦମକଳ ଟଣା ହୋଇ ହଂସୁଆ ନାଳ ନିକଟକୁ ନିଆଗଲା । ସେଦିନ ରାତିରେ ମୋତେ ଆଦୌ ନିଦ ହେଲା ନାହିଁ । ପିଲା ଯେବେ କୋଠରୀରୁ ବାହାରି ପାରି ନ ଥାନ୍ତା ତେବେ ତା ଭିତରେ ତାହାର ଜୀବନ୍ତ ସମାଧି ହୋଇ ଥାଆନ୍ତା । ଏହି ଚିତ୍ର ମୋ କଳ୍ପନାରେ ଖେଳୁଥାଏ । ରାତିସାକ ଏକଡ ସେକଡ ହୋଇ ବିଛଣାରେ ପଡ଼ି ଚେଇଁ ଚେଇଁ କଟିଲା ।

**ଗୃହକର ଆଗ୍ରହ**—ମୋ ଜନନୀ ବହୁ ସନ୍ତାନବତୀ ଥିଲେ । ତାଙ୍କଠାରୁ ସାତ ଭାଇ ଓ ଆଠ ଭଉଣୀ ଜନ୍ମଲାଭ କରିଥିଲୁ । ଦିନକୁ ଦିନ ଆମ ପରିବାରରେ ଶିଶୁ ସଂଖ୍ୟା ବୃଦ୍ଧି ହେବାରୁ ଆମ୍ଭମାନଙ୍କ ତତ୍ତ୍ୱ ନେବାକୁ ଖାସ ଜଣେ ଯୁବକ ଭଣ୍ଡାରୀ ଗୃହକର ରହିଲା । ଅଭିଭାବକମାନଙ୍କ ଉପସ୍ଥିତିରେ ଗୃହକର ଆମ୍ଭମାନଙ୍କ ସଙ୍ଗେ ନମ୍ର ବ୍ୟବହାର କରେ । କିନ୍ତୁ ଅଭିଭାବକଙ୍କ ଅନୁପସ୍ଥିତି ବେଳେ ସେ ଆମକୁ ଧମକାଏ, ଗାଳି ଦିଏ ଓ ବେଳେ ବେଳେ ମାରେ । ପୁଣି ଅଭିଭାବକ ଓ ଶିକ୍ଷକମାନଙ୍କ ଆଗରେ ଯାଇ ଫେରାଦ ହୁଏ ଯେ ଆମେମାନେ ଭାରି ଦୁଷ୍ଟପଣ କରୁଛୁ । ଗୃହକର ବ୍ୟବହାର ଉପରେ ପୁଣି ଆମ ଭାଗ୍ୟରେ ଶିକ୍ଷକଙ୍କ ଦଣ୍ଡ ଲାଭ ମିଳେ । ଦିନେ ଗୃହକରର ଅତ୍ୟାଚାରର କଥା ମୁଁ ଶୋଇଲା ବେଳେ ମୋ ବଡ଼ବୋଉଙ୍କୁ କହିଲି । ତହିଁଆର ଦିନ ନନାଙ୍କୁ କହି ସେ ଗୃହକରକୁ ବରଖାସ୍ତ କରାଇଲେ ଓ ଆଉ ଗୋଟିଏ ପ୍ରୌଢ଼ ଓ ବୟସ୍କ ଗଉଡ଼ ଆଣି ରଖିଲେ । ସେହି ଦିନଠାରୁ ପିଲାମାନଙ୍କ ଉପରେ ଗୃହକରର ଦୌରାତ୍ମ୍ୟ ବନ୍ଦ ହେଲା ।

**ବେଲବୋଉ ଆଈ**— ମୁଁ ଯେତେବେଳେ ଆଠବର୍ଷ ବୟସ୍କ ହୋଇଥିଲି ସେତେବେଳେ ଆମ ଗ୍ରାମର ଦୂର କୁଟୁମ୍ବୀ ବେଲବୋଉ ଆଈଙ୍କୁ ମୃତ୍ୟୁ ଶଯ୍ୟାରେ ଆମେ କେତେଜଣ ପିଲା ଲୁଚିକରି ଯାଇ ଦେଖିଲୁ । ସେତେବେଳେ ତାଙ୍କର ଅଣରୁଣ ବଢ଼ିଥିଲା ଓ ତାଙ୍କ ପେଟ ପଡ଼ୁଥିଲା ଉଠୁଥିଲା । ଅଭିଭାବକମାନେ ମୃତ୍ୟୁକୁ ଦେଖିବାକୁ ଆମମାନଙ୍କୁ ଛାଡ଼ୁ ନ ଥିଲେ । ବେଲବୋଉ ଆଈ ଅତି ବୃଦ୍ଧା ଥିଲେ । ତାଙ୍କ ଆଖି କୋରଡ଼ ଭିଳି ଭିତରକୁ ପଶି ଯାଇଥିଲା ଓ ମାଂସହୀନ ମୁହଁ ଅତି ବିକଟାକାର ଦିଶୁଥିଲା । ଆମେମାନେ

ସ୍କୁଲ ଆସିବାର ଦଶ ପନ୍ଦର ମିନିଟ ବାଦ ତାଙ୍କର ମୃତ୍ୟୁ ହେଲା । ତାଙ୍କ ଉପରେ ଲୁଗା ଘୋଡ଼ାଇ ମଡ଼ାପାଙ୍ଗୀ ଭାଇମାନେ ତାଙ୍କୁ ଦାହ କରିବା ପାଇଁ କୋକେଇରେ ଶ୍ମଶାନକୁ ନେଲେ । ସେ ମୃତ୍ୟୁଦୃଶ୍ୟ ମୋ ମନରେ ଏପରି ପ୍ରତ୍ୟାଘାତ କଲା ଯେ ମୋ ମାତା ଓ ପିତାଙ୍କ ମୃତ୍ୟୁ ଛଡ଼ା ମୁଁ ଅନ୍ୟ କୌଣସି ଆସନ୍ନ ମୃତବ୍ୟକ୍ତିଙ୍କ ମୃତ୍ୟୁଶଯ୍ୟା ନିକଟକୁ ଯିବାକୁ ସାହସ କରିନାହିଁ ।

**କାର୍ତ୍ତିକସ୍ନାନ**—ଆଗର ଶିଶୁ ଅବସ୍ଥାରେ କାର୍ତ୍ତିକ ମାସରେ ସକାଳ ନ ହେଉଣୁ ଗ୍ରାମର ହବିଷିଆଳୀ ବିଧବାମାନେ କାର୍ତ୍ତିକସ୍ନାନ କରିବାକୁ 'ଇଟେଇ ଯୋଡ଼ି'କୁ ଯାଉଥିଲେ । ଯୋଡ଼ି କୂଳେ ଗୋଟିଏ ବଡ଼ କଇଥ ଗଛ ଥାଏ । ଆମେ ଆମ ବୁଢ଼ୀମା, ଘଧୀନାନୀ ଓ ବଡ଼ ବୋଉଙ୍କ ସାଙ୍ଗରେ ଦର୍ଶକ ରୂପେ ଯୋଡ଼ିକୁ ଯାଉ । ସେତେବେଳକୁ ଅନ୍ୟମାନେ ଝଡ଼ିଥିବା ପାଚିଲା କଇଥ ଗୋଟେଇ ନେଇ ଯାଇଥା'ନ୍ତି । କଇଥ ଆଶାରେ ରାତି ଦୁଇ ତିନି ଘଡ଼ି ଥାଉଁ ଥାଉଁ ଆମେ ନିଦରୁ ଉଠି ଗାଧୋଇ ଯିବାକୁ ବୁଢ଼ୀମାଆଙ୍କ ନିଦ ଭଙ୍ଗାଉ ଓ ସେଠାକୁ କେହି ଯାଇନଥିବା ପୂର୍ବରୁ ଯେଉଁଦିନ ଆମେ ଆଗ ପହଞ୍ଚୁ ଦୁଇତିନିଟି କଇଥ ଆମ ଭାଗ୍ୟରେ ଜୁଟେ । ହବିଷିଆଳୀମାନେ ଯୋଡ଼ରେ କାର୍ତ୍ତିକସ୍ନାନ କରନ୍ତି । ଆମେ ତାଙ୍କ ସାଙ୍ଗରେ ଗୋଡ଼ାଣିଆ ହୋଇ ଯାଉ ଓ ବାଲଭୋଗ ଖାଇବା ଆଶାରେ ଠାକ ରହୁଥାଉଁ ।

**ଆଖ୍ୟାନମଞ୍ଜରୀ**—ବଡ଼ ଦୁଃଖର କଥା, ଓଡ଼ିଆ ସମାଜର ଉଚ୍ଚ ବଂଶମାନଙ୍କ ପାରିପାର୍ଶ୍ୱିକ ବାତାବରଣରେ ସତ୍ୟକଥା ପ୍ରତି ସେତେ ଆସ୍ଥା ବା ଆଦର ନଥିଲା । ବହିରେ ସିନା ପଢ଼ୁ—"ସର୍ବଦା ସତ୍ୟ କହିବ" କିନ୍ତୁ ଗୃହରେ, ଓ ବିଦ୍ୟାଳୟରେ ଦେଖୁ ଯେ ଗୁରୁଜନ ଓ ଶିକ୍ଷକମାନେ ନିଜ ନିଜର କାର୍ଯ୍ୟରେ ସତ୍ୟପ୍ରତି ଆସ୍ଥା ରଖନ୍ତି ନାହିଁ । ଏହି ବାତାବରଣରେ ପିଲାଦିନୁ ବଢ଼ିଥିବାରୁ ସତ୍ୟପ୍ରତି ଗୋଟାଏ ନିଷ୍ଠା ମୋ ଜୀବନରେ ମୁଁ ଲକ୍ଷ୍ୟ କରିନାହିଁ ଓ କାର୍ଯ୍ୟୋଦ୍ଧାର ପାଇଁ ବହୁବାର ମୁଁ ମିଥ୍ୟା କହିଛି । ସିଦ୍ଧେଶ୍ୱରପୁର ସ୍କୁଲର ନିମ୍ନଶ୍ରେଣୀରେ 'ଆଖ୍ୟାନ ମଞ୍ଜରୀ' ନାମକ ଖଣ୍ଡିଏ ପୁସ୍ତକ ପଢ଼ା ହେଉଥିଲା । ସେଥିରେ ପିତୃଭକ୍ତି, ପରୋପକାର, ସନ୍ତାନ ବାତ୍ସଲ୍ୟ, ଆତିଥେୟତା ଆଦି ପ୍ରବନ୍ଧମାନ ଥାଏ । ତାକୁ ସବୁ ପଢ଼ି ଆସି

ଘରେ ବୋଉ, ବୁଢ଼ୀମା, ମାଉସୀମାନେ ଓ ବଡବୋଉଙ୍କ ଆଗରେ ସନ୍ଦର୍ଭମାନଙ୍କ ବିଷୟରେ ମୁହଁରେ କହୁଥାଏ । କିନ୍ତୁ ସେତେବେଳେ ତ ଗୋଟିଏ ବିଷୟକୁ ମନରୁ ଗଢ଼ି ଧାରାବାହିକ ଭାବରେ କହି ପାରିବାର ଶକ୍ତି ହୋଇ ନଥାଏ । କଥାଟାକୁ ଅଧାକରି ମୁଁ ସେଠାରୁ ଉଠିଯାଇ ପଢ଼ାବହି ଆଣି ମୁଁ ସେମାନଙ୍କ ଆଗରେ ପାଠକରେ । ସେ ସମୟରେ ପୁସ୍ତକମାନ ସାଧୁଭାଷା ବହୁଳ ହୋଇଥାଏ । ମାଆ ହେଉକି ସେ ଭାଷା ବୁଝି ନପାରି ବଲ ବଲ ହୋଇ ଅନେଇ ଥାଆନ୍ତି ଓ ପଢ଼ା ଶେଷ ହେବା ପରେ କହନ୍ତି— "ଗୋପାଳ, ଆମେ ତୋ ବହି ପାଠତ କିଛୁ ବୁଝି ପାରିଲୁ ନାହିଁ ।" ସେ ପୁସ୍ତକ ବର୍ତ୍ତମାନ ଖୋଜି ପାଇଲି ନାହିଁ । ତହିଁର ଭାଷାର ନମୁନା ଏଠାରେ ଦେଲି—"ଇଂଲଣ୍ଡର ଅନ୍ତଃପାତି ରେଡ଼ିଙ୍ଗ୍ ନଗରୀରେ ଜନୈକ ସମ୍ଭ୍ରାନ୍ତ ବ୍ୟକ୍ତି ବାସ କରୁଥିଲେ । ଏକଦା ସେ ଅଶ୍ୱାରୋହଣରେ ବହିର୍ଗତ ହୋଇ ନିକଟବର୍ତ୍ତୀ ନଦୀର ସେତୁ ନିକଟରେ ଉପସ୍ଥିତ ହେଲେ । ହଠାତ୍ ତାଙ୍କ ଅଶ୍ୱ ବିଚଳିତ ହୋଇ ନଦୀଗର୍ଭକୁ ଲମ୍ଫ ପ୍ରଦାନ କଲା । ଏହି ଦୃଶ୍ୟ ଅବଲୋକନ କରି ସମବେତ ଜନମଣ୍ଡଳୀ ଉଚ୍ଚୈଃସ୍ୱରରେ ଚିତ୍କାର କରିବାରେ ପ୍ରବୃତ୍ତ ହେଲେ ।"

**କଟକଯାତ୍ରା**—ସେହି କାଳରୁ ପୁସ୍ତକରେ ସର୍ବଜନବୋଧ ଭାଷା ବ୍ୟବହାରର ଆବଶ୍ୟକତା ମୋ ମନରେ ଉଇଁଥିଲା ଓ ପରବର୍ତ୍ତୀ କାଳରେ ମୁଁ ଏଇ ଆକାଙ୍କ୍ଷାର ପୂର୍ତ୍ତିପାଇଁ ବରାବର ଚେଷ୍ଟା କରିଅଛି । ମୋ ବଡଦେଈଙ୍କ ମୃତ୍ୟୁ ସମୟରେ ମୋ କନିଷ୍ଠ ସହୋଦର ଉଦୟନାଥକୁ ପୋଷ୍ୟପୁତ୍ର କରିଥିଲେ ଓ ତାଙ୍କ ମୃତ୍ୟୁର ଚାରିମାସ ପରେ ତାଙ୍କର ଗୋଟିଏ ପୁତ୍ର ଜାତ ହୋଇଥିଲା । ତା'ର ନାମ ଅଭିମନ୍ୟୁ । ଉଦୟନାଥ ମୋଠାରୁ ଦେଢ଼ବର୍ଷ ସାନ ଓ ସେ ମୋଠାରୁ ଦୁଇକ୍ଲାସ ତଳେ ସିଦ୍ଧେଶ୍ୱରପୁର ସ୍କୁଲରେ ପଢ଼ୁଥାଏ । ଅଭିମନ୍ୟୁ ମଧ୍ୟ ପଢ଼ୁଥାଏ । କିନ୍ତୁ ସେ ଇସ୍କୁଲ ଯିବାକୁ ଭାରି ନାରାଜ ହୁଏ ଓ ଏଣେ ତେଣେ ଲୁଚେ । ଆମେ ପିଲାମାନେ ତାକୁ ଖୋଜି କୁଟାଗଦା ତଳୁ, ଗୁଆଳଭିତରୁ, ଘରକଣରେ ଢେଉରି ହୋଇଥିବା ହେଂସର ଗୁଡ଼ମଧ୍ୟରୁ ଧରି ମାଡ଼ ଦେଇ ଇସ୍କୁଲକୁ ଆଣୁ । ମାଇନର ପରୀକ୍ଷା ଦେବାପାଇଁ ପ୍ରଥମ ଓ ଦ୍ୱିତୀୟ ବର୍ଷ ମୁଁ କଟକ ଆସିଥିଲି ଓ ନରମାଲ୍ ସ୍କୁଲ (ବର୍ତ୍ତମାନ ଟ୍ରେନିଂ ସ୍କୁଲ) ମାଇନର

ପରୀକ୍ଷା କେନ୍ଦ୍ର ହୋଇଥିଲା । ସେ ସମୟରେ ଦ୍ୱାରକାନାଥ ଚକ୍ରବର୍ତ୍ତୀ (ବଶାଳକାପୁ, ଦାନୁର, ଗଣେଶୋଦର, କୃଷ୍ଣକାପୁ) ନର୍ମାଲ ସ୍କୁଲର ହେଡ୍‌ମାଷ୍ଟର ଥିଲେ । ଦ୍ୱିତୀୟଥର ପରୀକ୍ଷା ଦେଇ ଭର୍ଣ୍ଣାକୁଲର୍ ଦ୍ୱିତୀୟ ଶ୍ରେଣୀରେ ପାଶ୍‌କରିବାପରେ କଟକଠାରେ ରଖାଇ ହାଇସ୍କୁଲରେ ପଢ଼ିବା ପାଇଁ ନନା ବ୍ୟବସ୍ଥା କଲେ । ଜ୍ୟୋତିଷୀ ଅବଧାନ ବନମାଳୀ ନାୟକଙ୍କୁ ଡକାଗଲା ଓ ମୋର କଟକ ଅନୁକୂଳ କରିବାର ଗୋଟିଏ ଶୁଭମୁହୂର୍ତ୍ତ ସେ ସ୍ଥିରକଲେ । ମୁଁ କଟକ ଆସିବି ବୋଲି ବୁଢ଼ୀମା ରାଧୀନାନୀ, ବୋଉ, ଦେଠେଇ, ମାଗୁଣିନାନୀ, ହରନାନୀ— ସମସ୍ତେ କାନ୍ଦୁଥା'ନ୍ତି । ଶୁଭ ମୁହୂର୍ତ୍ତରେ ଘରୁ ବାହାରିଲି । ବାହାରିଲା ବେଳେ ବନମାଳୀ ଅବଧାନ ଓ ଆମପୁରୋହିତ ମଙ୍ଗଳଶ୍ଳୋକ ପାଠ କରୁଥାନ୍ତି । ଭଣ୍ଡାରୀ ଭଣ୍ଡାରୁଣୀ ଆସି ମୋ ଆଗରେ ଦହି ମାଛ ଦେଖାଇଥା'ନ୍ତି । ନନା, ଦେଠେଇ, ବୁଢ଼ୀମାମାନେ ମୋ ସାଙ୍ଗେ ସାଙ୍ଗେ ଗ୍ରାମ ପୂର୍ବମୁଣ୍ଡରେ ଥିବା ମହାଦେବ ମନ୍ଦିର ମୁକୁଶିଆଳ ପର୍ଯ୍ୟନ୍ତ ଆସିଲେ । ସେଠାରେ ମୁଁ ଘଣ୍ଟାଏ ଖଣ୍ଡେ ବସିଲି । ତା'ପରେ ସବାରୀ ଆସି ପହଞ୍ଚିବାରୁ ଖଣ୍ଡିଏ ସବାରୀରେ ନନା ଓ ଖଣ୍ଡିଏ ସବାରୀରେ ମୁଁ ଚଢ଼ି କଟକ ଆସିଲୁ । ମୋ ସାଙ୍ଗେ ଆମଘରର ବିଶ୍ୱାସୀ ପୁରୁଣା ଚାକର ବୁଢ଼ା ଦାମବାରିକ ଓ ପାଚକ କର୍ମକରିବାକୁ ଜଣେ ବାନ୍ଧବ ହଳଧର ନନ୍ଦ ଆସିଲେ । ସେ ସମୟରେ ସାହେବଜାଦା ବଜାର ନଣ୍ଡାଦେଉଳ ସାମନାରେ ଆମର ନିଜର ବସାଘର ଥାଏ । ସେ ବସାରେ ଶ୍ରୀ ମଧୁସୂଦନ ନନ୍ଦ, (ଦର୍ପଣୀ କିଲ୍ଲାର ରାଜା ବୈଦ୍ୟନାଥ ପଣ୍ଡିତଙ୍କ ସଭା ପଣ୍ଡିତ) ତାଙ୍କ ପୁଅ ଶ୍ୟାମସୁନ୍ଦର ନନ୍ଦ ଓ ପୁତୁରା କୃଷ୍ଣଚନ୍ଦ୍ର ନନ୍ଦଙ୍କ ସାଙ୍ଗରେ ରହୁଥା'ନ୍ତି । ଶ୍ୟାମସୁନ୍ଦର ଓ କୃଷ୍ଣଚନ୍ଦ୍ର ଦୁହେଁ ସ୍କୁଲରେ ପଢ଼ୁଥା'ନ୍ତି । ମୋର କୁଟୁମ୍ବୀ ପିଇସୀ ପୁଅ ଭାଇ ଶ୍ରୀ ହରେକୃଷ୍ଣ ମିଶ୍ର ମଧ୍ୟ ଆମବସାରେ ରହି କଲେଜଏଟ୍ ସ୍କୁଲରେ ପଢ଼ୁଥାଆନ୍ତି । କଟକରେ ସେ ମୋର ଅଭିଭାବକ ହେଲେ । ସେତେବେଳେ ମୋ ମୁଣ୍ଡରେ ପେଣ୍ଡାଏ ବାଳ ଥାଏ । ମତେ ସେତେବେଳେ ୧୧ ବରଷ । କଟକଠାକୁ ଆସିବା ସମୟରୁ ମୋର କଟକ ରହଣି ଆରମ୍ଭ ହେଲା । ତାହାପରେ ବର୍ଣ୍ଣନା କରିବି ।

●

# ବଂଶାବଳୀ

ମୋର କଟକ ବାସ ଓ ସ୍କୁଲରେ ପାଠ ପଢିବା ବିଷୟ ବର୍ଣ୍ଣନା କରିବା ପୂର୍ବରୁ ଆମ ବଂଶର ଇତିହାସ ବର୍ଣ୍ଣନା କରିବା ଆବଶ୍ୟକ । ଓଡ଼ିଶାର ଇତିହାସରୁ ଜଣାଯାଏ ଯେ ଓଡ଼ିଶାରେ ବୌଦ୍ଧଧର୍ମର ପ୍ରାଦୁର୍ଭାବର ହ୍ରାସ ଓ ବୈଦିକ ହିନ୍ଦୁ ଧର୍ମର ପ୍ରତିଷ୍ଠା ପାଇଁ ପ୍ରଥମେ ଯଯାତି କେଶରୀ (ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ) କାନ୍ୟକୁବ୍ଜରୁ ସପରିବାର ଦଶସହସ୍ର ବ୍ରାହ୍ମଣ ଆଣି ନିଜର ରାଜଧାନୀ ଯାଜପୁରଠାରେ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରି ନବାଗତ ବ୍ରାହ୍ମଣମାନଙ୍କୁ ନିଷ୍କର ଭୂମି ଦାନ କରି ସେ ଅଞ୍ଚଳରେ ବ୍ରାହ୍ମଣ ଶାସନମାନ ବସାଇଥିଲେ । ତାଙ୍କ ପରବର୍ତ୍ତୀ କେଶରୀ ବଂଶୀୟ ରାଜାମାନେ (ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ), ଗଙ୍ଗ ବଂଶୀୟ ରାଜାମାନେ (ଦ୍ୱାଦଶଠାରୁ ଷୋଡଶ ଶତାବ୍ଦୀ) ଓ ଭୋଇ ବଂଶୀୟ ରାଜାମାନେ ଓ ସେମାନଙ୍କ ପାତ୍ର ମନ୍ତ୍ରୀ ଆଦି ଓଡ଼ିଶାର ସ୍ଥାନେ ସ୍ଥାନେ ଓ ବିଶେଷତଃ ପୁରୀ ଜିଲ୍ଲାରେ ନିଷ୍କର ଭୂମିମାନ ଦାନକରି ବ୍ରାହ୍ମଣ ଶାସନମାନ ବସାଇଲେ । ସେ ସବୁ ଶାସନବାସୀ ବ୍ରାହ୍ମଣମାନେ ଓଡ଼ିଶାରେ ପୂର୍ବରୁ ବାସକରୁଥିବା ଆଚାରଭ୍ରଷ୍ଟ ବ୍ରାହ୍ମଣମାନଙ୍କଠାରୁ ଉଚ୍ଚତର ସ୍ୱତନ୍ତ୍ର ଗୋଷ୍ଠୀ ହୋଇ ଶାସନୀ ବା ବୈଦିକ ବ୍ରାହ୍ମଣରୂପେ ପରିଚିତ ହେଲେ । ପୁରୀ ଜିଲ୍ଲାର ରହାଙ୍ଗ ପ୍ରଗନ୍ନାରେ ସତ୍ୟବାଦୀ (ସାକ୍ଷୀଗୋପାଳ) ଗ୍ରାମର ଦକ୍ଷିଣରେ ଦୁଇମାଇଲ ଦୂରବର୍ତ୍ତୀ ବୀରଗୋବିନ୍ଦପୁର ଶାସନକୁ ପ୍ରତାପରୁଦ୍ରଦେବଙ୍କ ପ୍ରଧାନମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର (ଯେ ପ୍ରତାପରୁଦ୍ରଙ୍କ ପୁତ୍ରମାନଙ୍କୁ ହତ୍ୟାକରି ଖ୍ରୀ ୧୫୩୪ଠାରୁ ୧୫୪୧ ପର୍ଯ୍ୟନ୍ତ ଓଡ଼ିଶାର ରାଜ ସିଂହାସନରେ ବସିଥିଲେ) । ବସାଇଥିଲେ । ବୀରଗୋବିନ୍ଦପୁର ପୋଖରୀ ଖୋଳାଇଥିଲେ । ତାଙ୍କ ନାମ ଅନୁସାରେ ଶାସନର ନାମ ବୀରଗୋବିନ୍ଦପୁର ହୋଇଥିଲା । ପୁରୀର ଅନେକ ବ୍ରାହ୍ମଣ

ଶାସନର ନାମ ପୂର୍ବରେ 'ବୀର' ଶବ୍ଦ ଲାଗିଥିବା ଦେଖାଯାଏ । ଏହି 'ବୀର' ଶବ୍ଦ ଶାସନ ମାନଂକ ନାମ ପୂର୍ବରେ ଲାଗିବାର କାରଣ ମତେ ଏହାହିଁ ଜଣାଯାଇଛି ଯେ ଓଡ଼ିଶାର ରାଜାମାନଂକର ମୂଦଲ (ଉପାଧି) ଥିଲା ବୀର ଶ୍ରୀ ଗଜପତି ଗଉଡ଼େଶ୍ୱର ଇତ୍ୟାଦି । ଅତଏବ ରାଜାମାନେ ତାଂକ ପ୍ରତିଷ୍ଠିତ ଶାସନମାନଂକର ଆପଣା ଆପଣା ନାମ ପୂର୍ବେ 'ବୀର' ଶବ୍ଦ ଲଗାଇ ନାମକରଣ କରିଥିଲେ ।

ମୋ ପୂର୍ବପୁରୁଷମାନେ ବୀରଗୋବିନ୍ଦପୁର ଶାସନର ଯଜୁର୍ବେଦାନ୍ତର୍ଗତ କାଣ୍ୱଶାଖାଧ୍ୟାୟୀ ଭାରଦ୍ୱାଜ ଗୋତ୍ରୀୟ ପ୍ରବରର ବ୍ରାହ୍ମଣ ଥିଲେ । ସେମାନଙ୍କର ବେଶୀ ଭୂମି ବୃତ୍ତି ନ ଥିଲା ଓ ପ୍ରତିଦିନ ପୁରୀ (ସେଠାରୁ ଚାରିକୋଶ) ମନ୍ଦିରକୁ ଯାଇ ସେଠାରେ ମୁକ୍ତିମଣ୍ଡପ ସଭାରେ ସମବେତ ଶାସନୀ ବ୍ରାହ୍ମଣମାନଙ୍କୁ ଯାତ୍ରୀମାନେ ଯାହା ଭେଟି ଦେଉଥିଲେ ତାହା ସମାଗତ ବ୍ୟକ୍ତିମାନଙ୍କ ମଧ୍ୟରେ ବଣ୍ଟା ହୋଇ ଏମାନଙ୍କ ହିସ୍ସାରେ ଯାହା ପଡ଼ୁଥିଲା ତାହା ଓ ପୁରୀକୁ ସମାଗତ ଧନିକ ଯାତ୍ରୀମାନେ ବ୍ରାହ୍ମଣମାନଙ୍କୁ ଦେଉଥିବା ମହାପ୍ରସାଦ ଭୋଜନରୁ ଯେଉଁ ମହାପ୍ରସାଦ ଅନ୍ନ ବ୍ୟଞ୍ଜନାଦି ବଳୁଥିଲା ତାହା ଏମାନଙ୍କର ଭରଣପୋଷଣର ପ୍ରଧାନ ଉପାୟ ଥିଲା । ଶାସନୀ ବ୍ରାହ୍ମଣମାନଙ୍କର 'ଖଣ୍ଡିଖିଆ' ବୋଲି ଗୋଟିଏ ଦୁର୍ନାମ ଅଛି । ଏମାନେ ମହାପ୍ରସାଦ କୁଡ଼ୁଆକୁ ଖଣ୍ଡ ଖଣ୍ଡ କରି ସେହି ଖଣ୍ଡ (ଖାଣ୍ଡି)ମାନଙ୍କରେ ମହାପ୍ରସାଦ ଅନ୍ନବ୍ୟଞ୍ଜନାଦି ଖାଆନ୍ତି ଓ ସେ ଖାଣ୍ଡିମାନଙ୍କରେ ଘରକୁ ଅନ୍ନାଦି ଆଣନ୍ତି । ପୂର୍ବକାଳ ଅପେକ୍ଷା ଶାସନବାସୀ ବ୍ରାହ୍ମଣମାନଙ୍କର ବୈଷୟିକ ଅବସ୍ଥା ଆହୁରି ଖରାପ ହୋଇଅଛି ।

ଅଷ୍ଟାଦଶ ଶତାବ୍ଦୀର ଶେଷ ପାଦରେ (୧୭୭୫-୧୮୦୦) ଆମ ବଂଶର ପୂର୍ବପୁରୁଷ ସୁଦାମ ଓରଫ ସୁଦର୍ଶନ ଆଚାର୍ଯ୍ୟ ପୁରୀ ଜିଲ୍ଲାର ବୀରଗୋବିନ୍ଦପୁରରୁ ଆସି କଟକ ଜିଲ୍ଲାର ସିଦ୍ଧେଶ୍ୱରପୁରଠାରେ ବାସ କଲେ । ଶ୍ୟାମସୁନ୍ଦର ନନ୍ଦ ଓ ସ୍ୱର୍ଗୀୟ ରାୟ ସାହେବ କୃଷ୍ଣଚନ୍ଦ୍ର ନନ୍ଦଙ୍କର ତତ୍କାଳୀନ ପୂର୍ବପୁରୁଷଙ୍କର ସିଦ୍ଧେଶ୍ୱରପୁରଠାରେ ନିବାସ ଥିଲା । ସେ ସ୍ଥାନୀୟ ଜମିଦାରଙ୍କ ପୁରୋହିତ ଥିଲେ ଓ ଯାତ୍ରା ଉତ୍ସବ ଆଦି ଉପଲକ୍ଷରେ ଜଗନ୍ନାଥ ଦର୍ଶନ ପାଇଁ ପୁରୀ ଯାଉଥିଲେ । ପୁରୀ ଯିବାକୁ ହେଲେ

ବାରଗୋବିନ୍ଦପୁର ଗ୍ରାମର ପଶ୍ଚିମ ମୁଣ୍ଡ ବାଟେ ସେ ଯାଉଥିଲେ । ଗ୍ରାମର ପଶ୍ଚିମ ମୁଣ୍ଡରେ ଥିବା ପୋଖରୀରେ ସେ ସ୍ନାନାନ୍ତେ ଜଳଯୋଗ ଓ ବିଶ୍ରାମ କରି ସେଠାରୁ ପୁରୀ ଯାଉଥିଲେ । ସୁଦାମ ଆଚାର୍ଯ୍ୟ ଅତି ଗରିବ ପିତୃମାତୃ ଶୂନ୍ୟ ରୂପବାନ ଅବିବାହିତ ଯୁବକ ଥିଲେ । ତାଙ୍କର ବାର-ଗୋବିନ୍ଦପୁରରେ ଘରଡିହ ଛଡ଼ା ଆଉ କିଛି ସମ୍ପତ୍ତି ନ ଥିଲା । ସେ କାଳରେ ସେ କିଛି ସଂସ୍କୃତ ପାଠ ପଢ଼ିଥିଲେ । ମୁକ୍ତିମଣ୍ଡପରୁ ଓ ବ୍ରାହ୍ମଣ ଭୋଜନରୁ ଯାହା ପାଉଥିଲେ ସେଥିରେ ପୋଷି ହେଉଥିଲେ । ନନ୍ଦ ମହାଶୟ ତାଙ୍କୁ ଏକାଧିକ ଥର ବାରଗୋବିନ୍ଦପୁର ଗ୍ରାମ ମୁଣ୍ଡରେ ଓ ପୋଖରୀରେ ଓ ପଦଯାତ୍ରୀରୂପେ ପୁରୀକୁ ଯିବା ବାଟରେ ଦେଖି ଓ ତାଙ୍କର କୁଳୀନତ୍ୱ ଅବଗତ ହୋଇ ତାଙ୍କ ପ୍ରତି ଖୁବ୍ ପ୍ରସନ୍ନ ହେଲେ । ତାଙ୍କ ବୈଷୟିକ ଦୁରବସ୍ଥା କଥା ଶୁଣି ପ୍ରସ୍ତାବ କଲେ ଯେ ସେ ଯେବେ ନନ୍ଦଙ୍କ କନ୍ୟାକୁ ବିବାହ କରି ସିଦ୍ଧେଶ୍ୱରପୁରଠାରେ ଶ୍ୱଶୁରଘରେ ରହି-ବାକୁ ରାଜି ହେବେ ତେବେ ସେ ତାଙ୍କୁ ସିଦ୍ଧେଶ୍ୱରପୁର ନେଇଯିବେ ଓ ତାଙ୍କ ଯଜମାନ ଜମିଦାରଙ୍କୁ କହି ତାଙ୍କର ବାସ ପାଇଁ ସେଠାରେ ସ୍ଥାୟୀ ବ୍ୟବସ୍ଥା କରାଇବେ । ସୁଦାମ ଆଚାର୍ଯ୍ୟ ନନ୍ଦଙ୍କ ସଙ୍ଗେ ଆସିଲେ, ତାଙ୍କ କନ୍ୟାଙ୍କୁ ବିବାହ କଲେ ଓ ସିଦ୍ଧେଶ୍ୱରପୁରଠାରେ ରହିଲେ । ନନ୍ଦେ ପୁରୋହିତ କରିବାକୁ ଜମିଦାରଙ୍କ ଉଆସକୁ ଯିବା ସମୟରେ ଜୋଇଁଙ୍କୁ ସାଙ୍ଗରେ ନେଉଥିଲେ ଓ ଜମିଦାରଙ୍କ ଘରୁ ପ୍ରାପ୍ତ ଚାଉଳ, ଡାଲି, ପରିବା, ଘିଅ, ନଡ଼ିଆ ଆଦିକୁ ଶଶୁର ଜୋଇଁ ଜାଉଁଳରେ ବାନ୍ଧି ଘରକୁ ଆଣୁ-ଥିଲେ । ଜମିଦାରଙ୍କ ଉଆସ ସିଦ୍ଧେଶ୍ୱରପୁରଠାରୁ ପ୍ରାୟ ୨ ମାଇଲ ପଶ୍ଚିମରେ ବମ୍ଭୁରି ନାମକ ଗ୍ରାମରେ ଥିଲା । ଜମିଦାର ଖୁବ୍ ବିଭବଶାଳୀ ଥିଲେ ଓ ଧନଜନ ଗୋଧନ ଲକ୍ଷ୍ମୀ ତାଙ୍କ ଘରେ ପୂରି ରହିଥିଲେ । ପ୍ରବାଦ ଥିଲା ଯେ ରାତିରେ ଜମିଦାରଙ୍କ ଅନ୍ତଃପୁରର କଂସା କବାଟ ମୁଦା ହେଲା ବେଳେ ସେଥିର ଶବ୍ଦ ଆଡ଼େଇ କୋଶ ୨ କୋଶକୁ ଶୁଭୁଥିଲା ଓ ଜମିଦାରଙ୍କ ଉଆସର କବାଟ ପଡ଼ିଲା ବୋଲି ଏ ଅଞ୍ଚଳର ଲୋକେ ସେ ଶବ୍ଦରୁ ଜାଣୁ-ଥିଲେ । ସୁଦାମ ଆଚାର୍ଯ୍ୟ ନନ୍ଦଙ୍କ ସଙ୍ଗେ 'ଜାଉଁଳବୁହା' ହୋଇ ଜମିଦାରଙ୍କ ଉଆସକୁ ଯାଉଥିଲେ । ଉଆସରେ ପ୍ରତ୍ୟହ କର୍ମକାଣ୍ଡ ଅନୁଷ୍ଠାନ କରିବାକୁ ନନ୍ଦେ ଜମିଦାରଙ୍କ ଉଆସକୁ ଯାଉଥିଲେ ଓ ଜୋଇଁ

ଦାଣ୍ଡପାଖେ ଥିବା କଚେରୀ ମେଲରେ ଶଶୁରଙ୍କର ପ୍ରତ୍ୟାଗମନକୁ ଅପେକ୍ଷା କରି ବସି ରହୁଥିଲେ । କଚେରୀ ମେଲରେ ଜମିଦାରଙ୍କ ଗୁମାସ୍ତା ଓ ଗ୍ରାମ୍ୟକରଣମାନେ ଲେଖାପଢ଼ିରେ ଲଗି ଥାଆନ୍ତି । ସୁଦାମ ସେହିମାନଙ୍କ ପାଖରେ ଯାଇ ବସୁଥିଲେ ଓ ସେମାନଙ୍କ ଲେଖାପଢ଼ା ଓ ମାମଲତ କଥା ଠଉରାଉଥିଲେ । ସେ କିଛିଦିନ ଜମିଦାରଙ୍କ ସିରସ୍ତାରେ ବସି ଦେଖି ପାରିଲେ ଯେ ଗୁମାସ୍ତା ଓ ଗ୍ରାମ୍ୟକରଣମାନେ ଜମିଦାରୀରୁ ବହୁଧନ ଆତ୍ମସାତ୍ କରୁଛନ୍ତି । ଏକଥା ସେ ଶଶୁରଙ୍କୁ କହିଲେ ଓ ଶଶୁରେ ଏକଥା ଜମିଦାରଙ୍କ କାନରେ ପକାଇଲେ । ଜମିଦାର ସୁଦାମଙ୍କୁ ଡକାଇବାରୁ ସୁଦାମ ତାଙ୍କ ନିକଟକୁ ଯାଇ ଗ୍ରାମ୍ୟକରଣ ଓ ଗୁମାସ୍ତାମାନଙ୍କର କେତେ ଭେଦ ତାଙ୍କୁ ଜଣାଇଲେ ।

ଏହା ଶୁଣି ଜମିଦାର ତାଙ୍କୁ ପଚାରିଲେ "ତୁମେ ଆମ ଗୁମାସ୍ତାଙ୍କ ପାଞ୍ଜି ହିସାବପତ୍ର ପ୍ରତାକ କରି ତାଙ୍କ ଚୋରି ଧରାଇଦେଇ ପାରିବ କି ?" ସୁଦାମ ହଁ ଭରିଲେ । ସତକୁ ସତ ଗୁମାସ୍ତାମାନଙ୍କ କାଗଜପତ୍ର ମାଇନା ହେବାରୁ ସେମାନଙ୍କର ଅନେକ ଗୁରୁତର ଦୋଷ ପ୍ରମାଣିତ ହେଲା । ସେ ସମୟରେ ଜମିଦାରଙ୍କର ଯୋଗୀ, ଯୁଗଳ, ଚକ୍ରଧର ନାମରେ ୩ ଜଣ କର୍ମଚାରୀ ଥିଲେ । ଜମିଦାର ସେମାନଙ୍କୁ ବରଖାସ୍ତ କରି ସୁଦାମଙ୍କୁ ତାଙ୍କ ବେବର୍ତ୍ତୀ ପୃଷ୍ଠକାରୀରେ ନମୁଦ କଲେ । ସୁଦାମଙ୍କ ଔରସରେ ନନ୍ଦକନ୍ୟାଙ୍କ ଗର୍ଭରୁ କଣେଇ, କୃପାସିନ୍ଧୁ, ହଳଧର, ଶ୍ରୀକର ଓ ବଂଶୀଧର ନାମରେ ପାଞ୍ଚ ପୁତ୍ର ହେଲେ । ସୁଦାମ ବୀରଗୋବିନ୍ଦପୁରଠାରୁ ଆସି ସିଦ୍ଧେଶ୍ୱର-ପୁରରେ ଘର କରି ରହିଲେ, କିନ୍ତୁ ସେ ବୀରଗୋବିନ୍ଦପୁର ସମ୍ପର୍କ ସମ୍ପୂର୍ଣ୍ଣରୂପେ ଛାଡ଼ି ନ ଥିଲେ । ବୀରଗୋବିନ୍ଦପୁର ସଙ୍ଗେ ପ୍ରସଙ୍ଗ କ୍ରମେ ତାଙ୍କର ସମ୍ପର୍କ ମନ୍ଦୀଭୂତ ହେଲା । ତାଙ୍କ ବୀରଗୋବିନ୍ଦପୁର ଶାସନର ଉହଟି ଏପର୍ଯ୍ୟନ୍ତ 'କଣା ଉହ' ବୋଲି ଖ୍ୟାତ । ମୁଁ ସନ ୧୯୧୩ ମସିହାରେ ପୁରୀରେ ଗଭର୍ଣ୍ଣମେଣ୍ଟ ପ୍ଲିଡର ଥିବା ସମୟରେ ବୀରଗୋବିନ୍ଦ-ପୁର ଶାସନକୁ ଯାଇ କଣା ଉହ ଓ ତହିଁରେ ଥିବା ଆମ୍ବଗଛ 'କଣା ଆମ୍ବ' ଦେଖିଥିଲି । ମୋ ମକ୍କେଲ ପୁରୀର ବିଖ୍ୟାତ ଜମିଦାର ଓ ମହାଜନ ସ୍ୱର୍ଗତ ଭିକାରୀ ମିଶ୍ରଙ୍କ ଚେଷ୍ଟାରେ ସେ ଉହ ଖଣ୍ଡିକ କଣିଲି । ସେ ସମୟରେ

ମୋ ପିତୃଦେବ ଜୀବିତ ଥିଲେ । ତାଙ୍କର ବାସନା ଥିଲା ଯେ ସେ 'କଣା ଡ଼ିହ'ରେ ଘର ତୋଳାଇ ସେଠାରେ ରହିବେ ଓ ପୂର୍ବ ପୁରୁଷ-ମାନଙ୍କ ଭଳି ପୁଷ୍ପମନ୍ଦିରର ମୁକ୍ତିମଣ୍ଡପରେ ବସିବାର ଅଧିକାର ଭୋଗ କରିବେ । ତାଙ୍କର ବାସନା ପୂର୍ଣ୍ଣ କରିବାକୁ ମୁଁ ସେ ଡ଼ିହକୁ କିଣିଥିଲି କିନ୍ତୁ ୧୯୧୪ ସାଲରେ ତାଙ୍କର ମୃତ୍ୟୁ ହେବାରୁ ତାଙ୍କ ବାସନା ପୂର୍ଣ୍ଣ ହୋଇ ପାରିଲା ନାହିଁ । କେତେବର୍ଷ ପରେ ମୁଁ ସେ ଡ଼ିହଟି ବିକ୍ରୀ କରି ଦେଲି । ଆଜି ମଧ୍ୟ ବୀରଗୋବିନ୍ଦପୁର ଶାସନରେ ଆମ୍ଭମାନଙ୍କ ସଗୋତ୍ର 'ହାରୀତସ ଗୋତ୍ରୀୟ' ଆଚାର୍ଯ୍ୟ ସଂଜ୍ଞାଧାରୀ କେତୋଟି ବ୍ରାହ୍ମଣ ପରିବାର ଅଛନ୍ତି । ସୁଦାମ ଆଚାର୍ଯ୍ୟଙ୍କ ପୁତ୍ରମାନଙ୍କମଧ୍ୟରୁ ଜ୍ୟେଷ୍ଠ ଜଣେଇ ଆଚାର୍ଯ୍ୟ ଓ ମୋ ପ୍ରପିତାମହ ଶ୍ରୀକର ଆଚାର୍ଯ୍ୟ ସେ କାଳରେ ପ୍ରଚଳିତ ସଂସ୍କୃତ ଓ ପାର୍ସୀ ଶିକ୍ଷା ଲାଭ କରିଥିଲେ ଓ ଶ୍ରୀକର ଓଡ଼ିଶାର ଗଜପତିଙ୍କଠାରୁ 'ପ୍ରହରାଜ' ଉପାଧି ପାଇଥିଲେ । ସେ ସମୟରେ ଓଡ଼ିଶାରେ ମରହଟ୍ଟାମାନଙ୍କ ରାଜତ୍ୱ ଥିଲା ଓ ମୋ ପିତାମହୀ ତାଙ୍କ ବାଲ୍ୟାବସ୍ଥାରେ ମରହଟ୍ଟା ବର୍ଗୀମାନଙ୍କ ଅତ୍ୟାଚାର ଅଙ୍ଗେ ନିଭାଇ ଥିବା କଥା ଆମ୍ଭମାନଙ୍କ ଆଗେ ବର୍ଣ୍ଣନା କରୁଥିଲେ । ବର୍ଗୀମାନେ ଅତ୍ୟାଚାର କରିବାକୁ କୌଣସି ଅଞ୍ଚଳକୁ ଆସୁଛନ୍ତି ବୋଲି ଶୁଣି ଲୋକେ ଗ୍ରାମ ଛାଡ଼ି ଜଙ୍ଗଲକୁ ପଳାଉଥିଲେ ଓ ବର୍ଗୀମାନେ ଗ୍ରାମ ଲୁଟପାଟ କରି ବାହାରିଯିବା ପରେ ଗ୍ରାମବାସୀମାନେ ନିଜ ନିଜ ଘରକୁ ଫେରି ଆସୁଥିଲେ । ଶ୍ରୀକର ଶିକ୍ଷାଲାଭ କରି ପ୍ରଥମେ କଟକଠାରେ ମରହଟ୍ଟାଙ୍କ ଦରବାରରେ ପରେ ବ୍ରିଟିଶଙ୍କ କଚେରୀରେ ମୁକ୍ତାର କରୁ-ଥିଲେ । ଶ୍ରୀକର ପ୍ରହରାଜେ କଟକରେ ମୁକ୍ତାର ଥିଲାବେଳେ କାଶ୍ମୀରବାସୀ ବ୍ରାହ୍ମଣ ମହତାପ ରାୟ (ମହତାପଣ୍ଡା ପଣ୍ଡିତ) କଟକରେ ଓକିଲ ଥିଲେ । ତାଙ୍କ ସଙ୍ଗେ ଶ୍ରୀକରଙ୍କର ମହାପ୍ରସାଦ ସମ୍ପର୍କ ସ୍ଥାପିତ ହେଲା । ମହତାପଣ୍ଡା ପଣ୍ଡିତ ଦର୍ପଣ ରାଜବଂଶର ପୂର୍ବପୁରୁଷ ଅଟନ୍ତି । ସେ ସମୟରେ ପ୍ରଥମ ଇଂରାଜୀ ଅମଳରେ ସୂର୍ଯ୍ୟାସ୍ତ ନିଲାମ ହେଉଥିଲା ଓ ଦର୍ପଣ କିଲ୍ଲାର ସାବକ ମୁସଲମାନ ରାଜା ଲାଟବନ୍ଧ ଧନ ରାଜସ୍ୱ ଦାଖଲ ନ କରିବାରୁ ଦର୍ପଣ କିଲ୍ଲା ନିଲାମ ହେଲା ଓ ମହତାପରାୟ ପଣ୍ଡିତ ଅଳ୍ପ ମୂଲ୍ୟରେ ଉକ୍ତ କିଲ୍ଲା ନିଲାମରେ ଧରିଲେ ଓ ସେହିଦିନଠାରୁ ତାଙ୍କ ବଂଶ ଦର୍ପଣ କିଲ୍ଲାର ଅଧିକାରୀ ହେଲେ । ଏହି ସୂର୍ଯ୍ୟାସ୍ତ ନିଲାମରେ କୁଜଙ୍ଗ କିଲ୍ଲା ମଧ୍ୟ ନିଲାମ

ହେଲା ଓ ସେଣ୍ଟ୍ରାଲ ଉପାଧ୍ୟାୟ ରଜାଙ୍କ କୁଜଙ୍ଗ କିଲ୍ଲାକୁ ବର୍ଦ୍ଧମାନ ମହାରାଜ ଅଳ୍ପ ମୂଲ୍ୟରେ ନିଲାମ ଧରିଲେ । ମୋ ପ୍ରପିତାମହ ଶ୍ରୀକର ପ୍ରହରାଜ ଇଂରାଜଙ୍କର କଟକ କଚେରୀରେ (ଖ୍ରୀ ୧୮୦୩ଠାରୁ) ମୁକ୍ତାର କରୁଥାଆନ୍ତି ଓ ଆମ ଗ୍ରାମର ସ୍ଥାନୀୟ ଜମିଦାର (ତାଙ୍କ ବଂଶୋପାଧି ଚୌଧୁରୀ ଥିଲା)ଙ୍କ ଆମ ମୁକ୍ତାର(କ୍ଷମତାପ୍ରାପ୍ତ ଏଜେଣ୍ଟ) କର୍ମ କରୁଥିଲେ । ଉକ୍ତ ଚୌଧୁରୀ ଜମିଦାରଙ୍କ କର୍ମଚାରୀମାନଙ୍କ ହେଲାରୁ ଲାଟବନ୍ଧ, ଧନ ରାଜସ୍ୱ ଦାଖଲ ନ ହେବାରୁ (ସେ ସମୟରେ ବ୍ରିଟିଶ ପ୍ରଚଳିତ ଟଙ୍କା ଚଳି ନ ଥିଲା; ଅଧିକାଂଶ ଧନର ଆଦାନ ପ୍ରଦାନ କଉଡ଼ିରେ ଓ ସିକ୍କା ଟଙ୍କାରେ ଚଳୁଥିଲା) । ତାଙ୍କ ଜମିଦାରୀ (କୋଦଣ୍ଡା ପ୍ରଗନ୍ନାର କେତେ-କାଂଶ) ସୂର୍ଯ୍ୟାସ୍ତ ନିଲାମ ହେଲା । ସେ ସମୟରୁ ଗୋଟିଏ ପ୍ରବାଦ ବହୁଦିନ ଚଳିଥିଲା "ଯୋଗୀ, ଯୁଗଳ, ଚକ୍ରଧର ମୁଲକ ଖଣ୍ଡିକ ବନ୍ଦୀ କର" ଓ ଶ୍ରୀକର ପ୍ରହରାଜ ସେ ଜମିଦାରୀକୁ ଆପଣା ନାମରେ ନିଲାମରେ ନ ଧରି ତାଙ୍କ ବଡ଼ ଭାଇ କଣେଇ ଆଚାର୍ଯ୍ୟଙ୍କ ନାମରେ ଧରିଲେ । ଜମିଦାରୀ ନିଲାମ ହୋଇଗଲା, ଅଥଚ ସେ ସମୟର ଜମିଦାର ଭାଙ୍ଗ ଓ ମଉଜ ମଜଲିସ୍‌ରେ ଏପରି ଭୋଳ ହୋଇଥିଲେ ଯେ ଜମିଦାରୀ ନିଲାମ ହେବା କଥା ୩ ବର୍ଷ ପରେ ସେ ଜାଣିଲେ । କଣେଇ ଆଚାର୍ଯ୍ୟ ମଧ୍ୟ ତାଙ୍କ ପିତାଙ୍କ ଅନ୍ତେ ଉକ୍ତ ଜମିଦାରଙ୍କ ଇଲାକା ଦେଖାଶୁଣା କରୁଥାଆନ୍ତି ଓ ଜମିଦାରୀକୁ ନିଲାମରେ ଧରି ସୁଦ୍ଧା ପୂର୍ବପରି ଜମିଦାରଙ୍କ ଖବର ଅନ୍ତର ବୁଝୁଥାଆନ୍ତି । ୩ ବର୍ଷ ପରେ କଣେଇ ଆଚାର୍ଯ୍ୟ ନିଲାମ ଖରିଦ ଜନିତ ସ୍ୱାଧିକାର ପ୍ରତିଷ୍ଠା କଲେ । ଉକ୍ତ ଜମିଦାରଙ୍କ ବଂଶଧର ଆମ ଘରଠାରୁ ୩ ମାଇଲ ଦୂର ମହୁରୀ ଗ୍ରାମରେ ଆଜି ପର୍ଯ୍ୟନ୍ତ ଗରିବ ଅବସ୍ଥାରେ ବାସ କରୁଅଛନ୍ତି । କଣେଇ ଆଚାର୍ଯ୍ୟଙ୍କ ଦ୍ୱାରା ଜମିଦାରୀ ଖରିଦ ହେବା ପରେ ସାବିକ ଜମିଦାର ଶ୍ରୀକରଙ୍କ ନାମରେ ମକଦ୍ଦମା କଲେ, କିନ୍ତୁ ନିଲାମ ଖରିଦଦାର ଆଚାର୍ଯ୍ୟ ଉପାଧ୍ୟାୟ ଥିବାରୁ ଓ ଜମିଦାରଙ୍କ ମୁକ୍ତାର ପ୍ରହରାଜ ଉପାଧ୍ୟାୟ ଥିବାରୁ ହାକିମ ନିଲାମକୁ ରଦ୍ଦ କଲେ ନାହିଁ । କିନ୍ତୁ ଶ୍ରୀକର ଜମିଦାରଙ୍କ ଏଜେଣ୍ଟ ଥାଇ ରାଜସ୍ୱ ବାକି ଥିବା କଥା ଯଥା ସମୟରେ ତାଙ୍କୁ ଜଣାଇ ନ ଥିବାରୁ ହେଳା (Negligence) ଯୋଗୁ ସାମାନ୍ୟ ଦଣ୍ଡିତ ହେଲେ, କିନ୍ତୁ କଲିକତା ସୁପ୍ରିମ କୋର୍ଟରେ ସେ ଖଲାସ

ହେଲେ । ତତ୍ପରେ କଣେଇ ଓ ଶ୍ରୀକର ବାଖରବାଦ ପ୍ରଗନ୍ନାରେ କେତେକ ଜମିଦାରୀ କିଣିଲେ । କେତେଦିନ ପରେ ୫ ଭାଇଙ୍କ ମଧ୍ୟରେ ଜମିଦାରୀ ବଣ୍ଟରା ହେଲା ଓ କଣେଇ ବଡ଼ଭାଇ ଥିବାରୁ ୪ପଣ ଆଉ ୪ଭାଇ ଜଣକେ ଛଅପଣ ଲେଖାଏଁ ପାଇଲେ । କଣେଇ ଆଚାର୍ଯ୍ୟଙ୍କ ପୁଅ ଗୋପବନ୍ଧୁ ରାୟଗୁରୁ । ଇଂରାଜୀ ସରକାର ବାର୍କିକୁ ଖାସ କଲାବେଳେ ରାୟଗୁରୁ ବାର୍କିର ପ୍ରଥମ 'ତହସିଲଦାର' ନିଯୁକ୍ତ ହେଲେ । ସେତେବେଳେ ନଉକର ବା ଘୋଡ଼ାର ଆନୁକଷ୍ଟ ହୋଇ ନ ଥାଏ । ସେ କାଳରେ ବାଙ୍କି ରାଜ୍ୟରୁ ଆମ ଗ୍ରାମକୁ ଡଙ୍ଗାରେ ଆସିବାକୁ ଅସୁବିଧା ହେବାରୁ ଗୋପବନ୍ଧୁ ରାୟଗୁରୁ ଆମ ଗ୍ରାମରୁ ଉଠିଯାଇ ମହାନଦୀ ତୀରବର୍ତ୍ତୀ ମାଇଦା ପ୍ରଗନ୍ନା ଅନ୍ତର୍ଗତ ଡଣରୋ ଶାସନରେ ବାସ କଲେ ଓ କଣେଇଙ୍କ ଅନ୍ୟ ଗୁରୁଭାଇଙ୍କ ବଂଶଧରମାନେ ସିଦ୍ଧେଶ୍ୱରପୁରଠାରେ ବାସକଲେ । ଗୋପବନ୍ଧୁ ରାୟଗୁରୁଙ୍କ ପୁତ୍ର ରଘୁନାଥ ସାମନ୍ତ ରାୟ ଓ ରଘୁନାଥଙ୍କ ଜ୍ୟେଷ୍ଠପୁତ୍ର କୃଷ୍ଣଚନ୍ଦ୍ର ରାୟଗୁରୁ । ତାଙ୍କ ପୁତ୍ର ବ୍ରଜସୁନ୍ଦର ପାଟଯୋଷୀ ଓ ପାଟଯୋଷୀଙ୍କ ଜ୍ୟେଷ୍ଠପୁତ୍ର ରାୟବାହାଦୂର ଶକ୍ତିମଣି ଆଚାର୍ଯ୍ୟ ଏମ.ଏ.ବି.ଏଲ. କଟକର ପୂର୍ବତନ ଗଭର୍ଣ୍ଣମେଣ୍ଟ ପ୍ଲିଡ଼ର । କଟକ ସହରରେ ଦୁଇପ୍ରକାର ସ୍ୱତ୍ତ୍ୱ ଅଛି । ଯଥା :— ଖାସମହାଲ ଓ ଜମିଦାରୀ । କଟକର ଜମିଦାରୀ ସ୍ୱତ୍ତ୍ୱ ଆମ ପୂର୍ବ ପୁରୁଷଙ୍କର ଥିଲା ଓ ବଣ୍ଟାରେ ତାହା ଗୋପବନ୍ଧୁ ରାୟଗୁରୁଙ୍କ ହିଂସ୍ସାରେ ପଡ଼ିଥିଲା । ରଘୁନାଥ ସାମନ୍ତରାୟଙ୍କ ଅନ୍ୟପୁତ୍ରମାନଙ୍କ ଦେଣାରେ ତାହା ସ୍ୱର୍ଗୀୟ ବିହାରୀଲାଲ ପଣ୍ଡିତ କିଣିଲେ ଓ ଅବଧି ବିହାରୀଲାଲଙ୍କ ନାତି ଶ୍ରୀ ମୋତିଲାଲ ପଣ୍ଡିତ କଟକ ସହରସ୍ଥ ଜମିଦାରୀର ଅଧିକାରୀ ଅଟନ୍ତି । ସୁଦାମଙ୍କ ପାଞ୍ଚ ପୁଅଙ୍କ ମଧ୍ୟରେ କଣେଇ ଜ୍ୟେଷ୍ଠ ଓ ଶ୍ରୀକର କନିଷ୍ଠ ଥିଲେ । ଶ୍ରୀକରଙ୍କ ପୁତ୍ର ଭଗୀରଥି; ଭଗୀରଥିଙ୍କ ପୁଅ ନରସିଂହ; ନରସିଂହଙ୍କ ଜ୍ୟେଷ୍ଠପୁତ୍ର ମୁଁ ।

ସୁଦାମ ଆଚାର୍ଯ୍ୟ ନନ୍ଦମହାଶୟଙ୍କ ଘରେ ଜୋଇଁ ହୋଇ କେତେ ଦିନ ରହିବାପରେ ନିଜେ ସିଦ୍ଧେଶ୍ୱରପୁରରେ ସ୍ୱତନ୍ତ୍ର ଘର ଦ୍ୱାର କରି ରହିଲେ ଓ ତାଙ୍କର ବୈଷୟିକ ଅବସ୍ଥା ଖୁବ୍ ସ୍ୱଚ୍ଛଳ ହେଲା । ଏହା ଦେଖି

ସୁଦାମ (ଓରଫ ସୁଦର୍ଶନ)ଙ୍କ ଦୁଇ ପୁରୁଷ ଛଡ଼ା ପିତୃବ୍ୟପୁତ୍ର ଶ୍ରୀ ଭଗବାନ ଆଗୃଯ୍ୟ ମଧ୍ୟ ଶାରଗୋବନ୍ଦପୁରରୁ ଆସି ସୁଦାମଙ୍କ ଆଶ୍ରୟରେ ସିଦ୍ଧେଶ୍ୱରପୁରରେ ଘରଦ୍ୱାର କରି ରହିଲେ ଓ କଣେର ଆଦ୍ୟ ଭାଇ ଭଗବାନଙ୍କୁ ସିଦ୍ଧେଶ୍ୱରପୁର ଜମିଦାରୀର କେତେଅଂଶ ଦେଲେ । ଭଗବାନଙ୍କ ବଂଶଧରମାନେ ଆଜି ପର୍ଯ୍ୟନ୍ତ ଆମଘରର ପଶ୍ଚିମପାଖେ 'ବୁଢ଼ାସାଇ'ରେ ବାସ କରୁଛନ୍ତି ।

ମୋ ପିତୃଦେବଙ୍କ ମୃତ୍ୟୁ (୧୯୧୪) ପରେ ୧୯୧୫ରେ ମୁଁ ଓ ମୋ ସହୋଦର ଭିନଭାଇ, କୁଳମଣିଙ୍କ ପୋଷ୍ୟପୁତ୍ର ଉଦୟନାଥ ଓ ଜନ୍ମିତ ପୁତ୍ର ଅଭିମନ୍ୟୁଙ୍କଠାରୁ ପୃଥକାନ୍ନ ବାସ କଲୁଁ । ମୁଁ ଗ୍ରାମର ପଶ୍ଚିମ ମୁଣ୍ଡରେ ନୂଆଘର ତିଆରି କରି ସେଠାକୁ ଉଠି ଆସିଲି ଓ ମୋ ଭିନଭାଇ ଏକାନ୍ନବାସହୋଇ ରହିଲେ । ଆମଘର କୋଦଣ୍ଡା ପ୍ରଗନାରେ । କୌଣସି ଅସାଧାରଣ ନଶାପ 'କୋଦଣ୍ଡା ନଶାପ' ନାମରେ ପ୍ରଚଳନ ସିଦ୍ଧ । ୧୯୧୪, ୧୫, ୧୬, ୧୭ରେ ମୁଁ ଓ ମୋ ଭିନଭାଇ ଉଦ ଓ ଅଭିମନ୍ୟୁଙ୍କ ସମ୍ପତ୍ତି ବଣ୍ଟନ ହୋଇଥିଲା । ଅର୍ଥାତ୍ ମୁଁ ଓ ମୋ ଭାଇ ଅଧେ ପାଇଲୁ, ଉଦ ଓ ଅଭି ଅଧେ ପାଇଲେ । ସେ ସବୁ କିଛି ଲେଖାପଢ଼ି ହୋଇ ଆମ୍ଭେମାନେ ୫।୧୦ ବର୍ଷ ଲିଖିତ ବଣ୍ଟନ ଅନୁସାରେ ଯେଝା କିଛି ଯେ ଦଖଲ କଲୁଁ । କିନ୍ତୁ ବଣ୍ଟନପତ୍ର ରେଜଷ୍ଟ୍ରୀ ହୋଇନଥିଲା । ଏଥିପାଇଁ ପୁଣି ସବୁ ସମ୍ପତ୍ତି ପ୍ରିଭି କାଉନ୍‌ସିଲଙ୍କ ମୀମାଂସାପରେ ମୋର ଓ ମୋ ଭାଇଙ୍କର କିସମତ ଛ'ଅଣା ୫ ଓ ଅଭିମନ୍ୟୁ ସ୍ତ୍ରୀର କିସମତ ଛ'ଅଣା, ଉଦର ୨ପୁଅଙ୍କର କିସମତ ଅଭିମନ୍ୟୁ ସମ୍ପତ୍ତିରୁ ଦୁଇଅଣା ଓ ଆମ ପୈତୃକ ସମ୍ପତ୍ତିରୁ ୧ଅଣା ୭ପାହୁଲ ଯାଏ ୩ ଅଣା ୭ପାହୁଲ ହିଂସ୍ସା ସ୍ଥିର ହୋଇ ବର୍ତ୍ତମାନ ଜଜ୍‌ଙ୍କ ନିଯୁକ୍ତ କମନ୍ ମେନେଜରଙ୍କ ତତ୍ତ୍ୱାବଧାନରେ ଅଛି । ଯେଉଁ କେତେବର୍ଷ ଆମ୍ଭେମାନେ ବଣ୍ଟା ହୋଇଥିବା ସମ୍ପତ୍ତିମାନ ଯେ ଯାହା ଦଖଲ କରୁଥିଲୁଁ ଅନ୍ୟ ସରିକଦାରମାନେ ନିଜକୁଷ ପଟ୍ଟା ଦେଲେ । ଗଛ ବନ୍ଦୀକଲେ, ଅନାବାଦ ପଟ୍ଟା ଦେଲେ କିନ୍ତୁ ମୁଁ ଏସବୁ କରିନଥିଲି । ସମସ୍ତଙ୍କ ସମ୍ପତ୍ତି ପୁଣି ଗୋଳିଆ ହେବାରୁ ଧୂଆମୂଳା ଅଧୂଆମୂଳା ଏକ ଭଉ ହେଲା ଓ ମୁଁ ଅନ୍ୟ ସରିକ-

ଦାରମାନଙ୍କ କୃତ ସମ୍ପତ୍ତି ବନଷ୍ଟିରେ ଦାୟୀ ହେଲି । ମୋ ଛଡ଼ା ଅନ୍ୟ ସରିକଦାରମାନେ (ଅଭିମନ୍ୟୁର ସ୍ତ୍ରୀ ମଧ୍ୟ) ବହୁତ ଦେଣା କରିଥିଲେ । ସେ ଦେଣା ଫଳରେ ଅନ୍ୟମାନଙ୍କର ଅଧିକାଂଶ ସମ୍ପତ୍ତି ନିଲାମ ହୋଇଗଲାଣି କିନ୍ତୁ ପ୍ରିଭି କାଉନ୍‌ସିଲଙ୍କ ଦୟାରୁ ମୋର କିସ୍ମତ ୧ ଅଣା ୭ ପାହି କମନ ମେନେଜରଙ୍କଠାରେ ଅଛି । ଖଣ୍ଡାଏତା ଯାଇ ଭାଙ୍ଗିଯିବାରୁ ଆମ୍ଭମାନଙ୍କର ଆୟପ୍ରସୂ ଖଣ୍ଡାଏତା ଓ ଗୋପାଳପୁର ଇଲାକା ବାଲି ହୋଇଗଲା ଓ ରାଜସ୍ୱ ପାଇଁ କମନ ମ୍ୟାନେଜର ଋଣ କଲେ । ସେ ଋଣ ଯେବେ ପରିଶୋଧ ହେବ ତେବେ ମୋ ହିଂସସାରେ ପଡ଼ିଥିବା ସମ୍ପତ୍ତି ମୋ ଉତ୍ତରାଧିକାରୀ ପାଇବେ; ନଚେତ୍ କମନ ମ୍ୟାନେଜରଙ୍କ କୃତ ଦେଣାରେ ସେତକ ଯିବ । ଥରେ ମାନ୍ୟବର ହାଇକୋର୍ଟ ସାବକ କମନ ମ୍ୟାନେଜରଙ୍କ ରିପୋର୍ଟ ଅନୁସାରେ ଆଦେଶ କରିଥିଲେ ଯେ କମନ ମେନେଜର ଲାଟବନ୍ଧ ଖଜଣା ଦାଖଲ କରିବାକୁ ଯେଉଁ ଦେଣା କରିଛନ୍ତି ତାହା ପରିଶୋଧ କରିବାପାଇଁ ସମ୍ପତ୍ତି ବିକ୍ରୀ କରାହେଉ, ଏ କୋଦଣ୍ଡା ନିଶାପ କାର୍ଯ୍ୟରେ ପରିଣତ ହେବା ପୂର୍ବରୁ କଟକର ଜଜ୍ ଶ୍ରୀଯୁକ୍ତ ମାୟୁର୍ସ ସାହେବ ସମ୍ପତ୍ତି ବିକ୍ରୀ ସ୍ଥଗିତରଖି ନୂତନ କମନ ମ୍ୟାନେଜର ଶ୍ରୀଯୁକ୍ତ କାଶୀନାଥ ମହାନ୍ତିଙ୍କୁ ନିଯୁକ୍ତ କରି ପ୍ରଜାମାନଙ୍କ ଉପରେ ମଫସଲରେ ବାକିଥିବା ଖଜଣା ଆଦାୟ କରି ସାବକ କମନ ମାନେଜରଙ୍କ କୃତ ଦେଣାକୁ ପରିଶୋଧ କରିବାକୁ ଉଦ୍ୟମ କରିଛନ୍ତି । ପ୍ରିଭି କାଉନ୍‌ସିଲ ପର୍ଯ୍ୟନ୍ତ ଲଢିବାପରେ ଜିତାପକ୍ଷ ଓ ହାରିବାପକ୍ଷଙ୍କ ବ୍ୟୟପାଇଁ ଯେଉଁ ଦେଣା ହୋଇଥିଲା ତହିଁରେ ବିବାଦୀୟ ସଂପତ୍ତି ଗାଏବ । ଏ ସବୁ ମକଦ୍ଦମାରେ ମୁଁ ମୁକାବିଲା ପ୍ରତିବାଦୀ ହୋଇଥିଲି । ମୋ ପୁତ୍ରଦ୍ୱୟ (ଉଦର ଜନ୍ମିତ ପୁତ୍ର ଓ ଅଭିର ପୋଷ୍ୟପୁତ୍ର) ହାଇକୋର୍ଟ ଆଦିର ବ୍ୟୟ ଓ ଲାଟ ବନ୍ଧ ଖଜଣା ଦାଖଲ କରିଥିବା ଦେଣା ପରିଶୋଧ ପାଇଁ ମୁଁ ମହାଜନଙ୍କ ପାଖେ ଧନ ପ୍ରମାଣେ ଜାମିନ ହୋଇଥିଲି । କିନ୍ତୁ ପ୍ରିଭି କାଉନ୍‌ସିଲ ମକଦ୍ଦମାପରେ ସେମାନଙ୍କ ଦେଣା ପାଇଁ ସ୍ୱର୍ଗତ ଅନନ୍ତ ଚରଣ ଦାସଙ୍କ ପୁତ୍ରମାନଙ୍କୁ, ଓଡ଼ିଶା ବ୍ୟାଙ୍କକୁ ଓ ଏମ୍ ସୁବା ରାଓ ଆଡଭୋକେଟଙ୍କୁ ମୋଟେ ଅନ୍ୟୁନ ଟ୭୦୦୦ଙ୍କା ଭରି ଦେବାକୁ ପଡ଼ିଲା । ଏଟଙ୍କାରୁ ମୁଁ ଅଧଲାଏ ନେଇନାହିଁ ଏହା ଜାଣି ସୁଦ୍ଧା

ମହାଜନମାନେ ସବୁତକ ମୋ ଠାରୁ ଆଦାୟ କରିବାକୁ କୁଣ୍ଠିତ ହେଲେ ନାହିଁ । ମୋ ମନରେ ଏତକ ଆଶ୍ୱସନା ହେଲଯେ ବୋଧହୁଏ ପୂର୍ବଜନ୍ମରେ ମୁଁ ଏମାନଂକର ଧାରୁଆ ଥିଲି । ଏ ଜନ୍ମରେ ଶୁଝୁଛି । ଏଥିରେ ମଧ୍ୟ କୋହଣ୍ଡା ନଶାପର ପ୍ରମାଣ ପାଇଲି । ମହାଜନ ଈଶ୍ୱର ଚନ୍ଦ୍ର ଦାଶ ଉତ୍ତମ ରୂପେ ଜାଣନ୍ତି ଯେ ଧୃତୁରମାନଂକ ବନ୍ଧକ ସମ୍ପତ୍ତିରୁ ଯେବେ ୨ହଜାର ଟଂକା ପୂରା ଆଦାୟ ନହେବ ତେବେ ବାକି ଟଙ୍କା ତକ ମୁଁ ଶୁଝିବି ବୋଲି ତାଂକ ପିତାଂକ ସଙ୍ଗେ ଧର୍ମତଃ କଥାକରି ମୁଁ ୨ହଜାର ଟଂକାର ହାଣ୍ଡନୋଟ ଲେଖି ଦେଇଥିଲି ଓ ଅଦାଲତରେ ଏକଥା କହିଥିଲି, ତାଂକଠାକୁ ମୁଦ୍ରିତ ପତ୍ରରେ ଚେତାଇଥିଲି । ତଥାପି ମୁଁ ୨ହଜାର ଟଂକା ଋଣ କରିଛି ବୋଲି ତାଂକ ପକ୍ଷରୁ ହଲପାନ ଜମାନବନ୍ଦ ନଆଗଲା ଓ ସୁଧ ସହିତ ଅସଲ ମିଶି ଟ୩୦୦୦ଙ୍କା ମୋ ଉପରେ ଡ଼ିକ୍ରୀକରି ମୋ ପୈତୃକ ସମ୍ପତ୍ତି ସେ ନିଲାମରେ ଆଣିଥିଲେ । କିନ୍ତୁ ନୂଆ ମହାଜନ ଆଇନର ବିଧାନ ଅନୁସାରେ କଟକରି ଦ୍ୱିତୀୟ ମୁନସଫଙ୍କ ଦପ୍ତରରେ ଟ୭୫ଙ୍କା ଲେଖାଏ ମାସିକ କିସ୍ତିବନ୍ଦ ହୁକୁମ ହେବାରୁ ମୁଁ ତଦନୁସାରେ ମୋ ସ୍ୱଉପାର୍ଜିତ ସମ୍ପତ୍ତି ବିକି ୧୪ କିସ୍ତି ଆଦାୟ କଲିଣି ।

ପରେ ପୂର୍ବୋକ୍ତ ପୃଥୁଷ ଦ୍ୱୟଙ୍କ ପାଇଁ ଟଙ୍କା ପାଞ୍ଚଶହ, ଛ'ଶହ ଲୋଡ଼ା ହେବାରୁ ମୋ ସାନଭାଇ ବଟକୃଷ୍ଣ ପ୍ରହରାଜ, ବି.ଏ. ସେମାନଙ୍କ-ଠାରୁ କଅଣ କାଇଦା ନେଇ ସାର ଋଣ କରିବାକୁ ଆସିଲେ । ଓଡ଼ିଶା ବ୍ୟାଙ୍କ୍ ମାନେଜିଂ ଡାଇରେକ୍ଟର ସ୍ୱର୍ଗତ ଶ୍ରୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ O.B.E.) ମୋ ଭାଇକୁ କହିଲେ ଯେ ଜଣେ ଜାମିନଦାର ଅଣା । ବଟ ମୋ ପାଖେ ଆସି ପହଞ୍ଚିଥିବାରୁ ମୋର ଆଡ଼ଭୋକେଟ ବନ୍ଧୁ ସଚ୍ଚିଦ୍ ନାରାୟଣ ରାୟଙ୍କ ମଧ୍ୟସ୍ଥତାରେ ମୁଁ ଜାମିନ ହେଲି ଓ ବଟର ସମ୍ପତ୍ତିରୁ ଟଙ୍କା ଆଦାୟ ନ ହେଲେ ବାକି ଟଙ୍କା ପାଇଁ ମୁଁ ଦାୟୀ ହେବାର କଥା ମାନେଜିଂ ଡାଇରେକ୍ଟରଙ୍କ ପାଖେ ସ୍ଥିର ହେଲା । ମୁଁ ସରଳ ବିଶ୍ୱାସରେ ବଟକୃଷ୍ଣ ସହିତ ହାଣ୍ଡନୋଟ୍‌ରେ ଦସ୍ତଖତ୍ କଲି । ବଟ ଟଙ୍କା ନ ଦେବାରୁ ବ୍ୟାଙ୍କ ବଟ ନାମରେ ଓ ମୋ ନାମରେ ନାଲିସ କଲେ । ମୁଁ

ଏହିକଥା ଜବାବ ଦେଲି । କିନ୍ତୁ କୋଦଣ୍ଡା ନିଶାପ ସୁଲଭ ଡିଗ୍ରୀ ଦୁହିଁଙ୍କର ଉପରେ ଇଜମାଲିରେ ହେଲା । କିଛିଦିନ ପରେ ବ୍ୟାଙ୍କ ଡିଗ୍ରୀଜାରି କଲେ ଓ ବିଟିର ସମ୍ପତ୍ତିକୁ ନିଲାମରେ ନ ଆଣି ମୋତେ ଗିରଫଦାର କରି ଦେବାନୀ ଫାଟକ ଦେବାକୁ ଦରଖାସ୍ତ କଲେ । ହାକିମଙ୍କ ଦୟାରୁ ମାସିକ ୫୨୦ଙ୍କା ଦେଇ ମୁଁ ବାକି ଟଂକା ପରିଶୋଧ କଲି । ଉକ୍ତ ବ୍ୟାଙ୍କର ମୁଁ ଜଣେ ଶ୍ରେଷ୍ଠ ଅଂଶୀଦାର ଓ ମୋର କେତେଜଣ ବନ୍ଧୁ ଡିରେକ୍ଟର । ତଥାପି ବିଟ କେତେଜଣ ଡିରେକ୍ଟରଙ୍କୁ ସେବାରେ ବାନ୍ଧି ପକାଇବାରୁ ତା ଅଗଗୋଡରେ କଣ୍ଟା ବାଜିଲା ନାହିଁ ଓ ବ୍ୟାଙ୍କ ମୋଠାରୁ ସମୁଦାୟ ଏକହଜାର ଟଂକା ଆଦାୟ କଲେ । ଏହା ମଧ୍ୟ କୋଦଣ୍ଡା ନିଶାପର ଉଦାହରଣ । ଶୁଣନ୍ତୁ ସେକଥା ।

**'ଆମେ ହେଲୁ କଟକିଆ'**—ଆମ ବଂଶ ବୀରନରସିଂହପୁରରୁ ଉଠି ଆସିବାରୁ 'କଟକିଆ' ବୋଲାଇଲେ । ଗୋପବନ୍ଧୁ ରାଏଗୁରୁ, ରଘୁନାଥ ସାମନ୍ତରା ଓ ତାଂକପୁଅ ଆଦି ସମସ୍ତେ ପୁରୀ ଶାସନର କନ୍ୟା-ମାନଙ୍କୁ ବିବାହ କରିଥିଲେ ଓ ଆମ ଘରର କନ୍ୟାମାନଙ୍କୁ ପୁରୀ ଶାସନୀ ବ୍ରାହ୍ମଣ ଘରେ ବିବାହ ଦିଆଯାଉଥିଲା । ଆମ ବଂଶ କଟକ ଜିଲ୍ଲା ବ୍ରାହ୍ମଣଂକ ସଙ୍ଗେ ବନ୍ଧୁ ବାନ୍ଧୁ ନ ଥିଲେ । ନନାଂକ ମୃତ୍ୟୁ ପରେ ଏଣିକି ଏ ବ୍ୟବସ୍ଥା ଶିଥିଳ ହୋଇ ପଡ଼ୁଛି । ଆମ ବଂଶରେ ବିବାହ ବ୍ରତାଦି ଅନୁଷ୍ଠାନରେ ପୁରୀ ଜିଲ୍ଲାରୁ ଶହେ ଖଣ୍ଡେ ବନ୍ଧୁ ନିମନ୍ତ୍ରିତ ହୋଇ ଆସୁଥିଲେ । ସେତେବେଳେ ରେଳ ନ ଥିଲା । ସମସ୍ତଙ୍କୁ ଯଥାଯୋଗ୍ୟ ବାଟଖରଚ, ମର୍ଯ୍ୟାଦା (ବସ୍ତ୍ର ଓ ବିଦାୟୀ) ଦିଆ ହେଉଥିଲା । ବିବାହ ବ୍ରତାଦି ଉପଲକ୍ଷେ ସିଦ୍ଧେଶ୍ବରପୁରକୁ ଆସୁଥିବା ବରାଙ୍ଗିଆ ବନ୍ଧୁମାନେ ତରିତୋରେ କିଛିଦିନ ରହୁଥିଲେ ଓ ତରିତୋକୁ ଆସୁଥିବା ବନ୍ଧୁମାନେ ସିଦ୍ଧେଶ୍ବରପୁରରେ କିଛିଦିନ ରହି ଉଭୟ ସ୍ଥାନରୁ ବିଦାୟୀ ପାଇ ଘରକୁ ଫେରୁଥିଲେ । ଗୋପବନ୍ଧୁ ରାଏଗୁରୁ ତରିତୋକୁ ଉଠିଯିବା ପରେ କେତେକ ଜମିଦାରୀ କିଣିଲେ । ତାଙ୍କ ପୁଅ ରଘୁନାଥ ସାମନ୍ତରା ମଧ୍ୟ ନଅଙ୍କ ସମୟରେ ତାଙ୍କର ଜମାଥିବା ଧାନ ବିକି କରି ପ୍ରକୋଦଣ୍ଡା ରାଜହଂସ ଜମିଦାରୀ ଓ ଅନ୍ୟ ଜମିଦାରୀ କିଣିଲେ । ତରିତୋରୁ କଟକ ଆସିବାକୁ ହେଲେ ନିଜ ଜମିଦାରୀ ଛଡ଼ା ଅନ୍ୟ ଜମି-

ଦାଗର ଭୂମି ମାତ୍ର ନ ଥିଲେ । ବର୍ତ୍ତମାନ ଯେଉଁଠି କଲେକ୍ଟରୀ, କମିସନଙ୍କ ଓ ସିଭିଲକୋର୍ଟ କୋଠାମାନ ଅଛି ସେ ସବୁ ଜମି ରଘୁନାଥ ସାମନ୍ତରଙ୍କ ଜମିଦାରୀର ଅନାବାଦ ଥିଲା ଓ ସେ ସମୟରେ ଉକ୍ତ ଅନାବାଦ ଜମିରେ ଗଭର୍ଣ୍ଣମେଣ୍ଟ କଲେକ୍ଟରୀ କୋଠା ତୋଳାଇଲେ କିନ୍ତୁ ଜମିଦାରଙ୍କଠାରୁ ପଟ୍ଟା ନେଇ ନ ଥିଲେ । ଅରେ ତାଙ୍କର ଦେୟ ପଥକର ଯଥା ସମୟରେ ଦାଖଲ ହୋଇ ନ ଥିବାରୁ କଲେକ୍ଟରୀ ପିଅନ ତାଙ୍କ ଚଳନ୍ତି ସମ୍ପତ୍ତି କ୍ରୋକ୍ କରି-ବାକୁ ପରୁଆନା ନେଇ ତାଙ୍କ ଘରଠାକୁ ଯାଇଥିଲା । ପରୁଆନା ଦେଖି ସାମନ୍ତର ଦାଣ୍ଡଠାଣ ପିଆଦାକୁ ଦେଲେ ଓ ତହିଁଆର ଦିନ କଟକ ଆସି ୧୦।୨୦ଟା ହଳ ନେଇ ନିଜେ ଠିଆ ହୋଇ କଲେକ୍ଟରୀ ସଂଲଗ୍ନ ପଡ଼ିଆରେ ହଳ କରାଇଲେ । କଲେକ୍ଟରୀରେ ଗୋଟାଏ ଭାରି ଗୋଳମାଳ ଲାଗିଲା । କଲେକ୍ଟର ସାହେବ ହଲଚଲଠାରେ ପହଞ୍ଚିଲେ ଓ ସାମନ୍ତର ତାଙ୍କୁ କହିଲେ "ଏ ଜମି ମୋର, ସରକାର କାହାଠାରୁ ଅନୁମତି ନେଇ କଚେରି ତୋଳାଇଛନ୍ତି ?" କଲେକ୍ଟର ସାବକ କାଗଜପତ୍ର ଦେଖି ଜାଣିଲେ ଯେ ଏ ଜମି ରଘୁନାଥ ସାମନ୍ତରଙ୍କର ଓ ତାଂକଠାରୁ ପଟ୍ଟା ନିଆଯାଇ ନାହିଁ । ରଘୁନାଥ କହିଲେ, "ସରକାର ମୋ ଜମିରେ ବିନା ଖଜଣାରେ କଚେରୀ କରୁଛନ୍ତି; ଅଥଚ ମୋର କେତେ ଟଂକା ବାକି ରହିଲା ବୋଲି ମୋ ଘର କ୍ରୋକ୍ ହେବା ପାଇଁ ପରୁଆନା ଗଲା ? କଲେକ୍ଟର ସାହେବ ରଘୁନାଥଙ୍କୁ ମିସଲକୁ ନେଇ ଚଉକିରେ ବସାଇଲେ ଓ ହୁକୁମ କଲେ ଯେ ତାଂକ ଟଂକା ବାକି ରହିଲେ ଏଣିକି ତାଂକଠାକୁ କ୍ରୋକ୍ ପରୁଆନା ନ ଯାଇ ପତ୍ର ଲେଖା ହେବ । ବାଖରବାଦ ପ୍ରଗନ୍ନାର ଜମିଦାରୀ ଆମ ପୂର୍ବ ପୁରୁଷଙ୍କ ମଧ୍ୟରେ ବଣ୍ଟନ ହେଲାବେଳେ କାଠଯୋଡ଼ିର ଉତ୍ତରସ୍ଥ କଟକ ବଜାର ଓ କେତେକ ମଫସଲ ରଘୁନାଥଂକ ଭାଗରେ ପଡ଼ିଲା ଓ କଟକଠାରୁ କାଠଯୋଡ଼ିର ଦକ୍ଷିଣସ୍ଥ ଗୋପାଳପୁର, ଉତ୍ତମାପୁର, ଶାମପୁର ମୋ ପିତାମହ ଶ୍ରୀକର ପ୍ରହରାଜଂକ ହିଂସ୍ସାରେ ପଡ଼ିଲା । କାଠଯୋଡ଼ିର ଯେଉଁ-ସବୁ ଅଂଶ ଶୁଖିଲା ଥିବ ତାହା ପ୍ରହରାଜଂକର ଓ ପାଣିଥିବା ଜାଗାତକ ସାମନ୍ତରଂକର । ଏହି ଅନୁସାରେ ସରକାରୀ ଫଇସଲା ସାବିକ ୧୮୪୨ ସାଲ ବନ୍ଦୋବସ୍ତରେ ହୋଇଥିଲା ଓ ସେ ଫଇସଲାର ସହିମୋହର ନକଲ ମୁଁ ଦେଖିଛି । ବର୍ତ୍ତମାନ ପ୍ରହରାଜଂକ ସ୍ଥାନାଧିକାରୀମାନେ ନଦୀର

ସ୍ଥଳଭାଗ ଓ ସାମନ୍ତରଂକ ସ୍ଥାନାଧିକାରୀ ଶ୍ରୀ ମୋତିଲାଲ ପଣ୍ଡିତ ଜଳଭାଗ ଦଖଲ କରିଛନ୍ତି । ପୂର୍ବେ ଏଇଭଳି ବଣ୍ଟା ହେଉଥିଲା । ଉଦାହରଣ ସ୍ୱରୂପ ମହାନଦୀ ଶଯ୍ୟାର ନରାଜଠାରୁ ଚହଟା ଘାଟ ପର୍ଯ୍ୟନ୍ତ ସ୍ଥଳଭାଗ ଆଠଗଡ ରାଜାଙ୍କର ଓ ଜଳଭାଗ କଣ୍ଟକ ଜମିଦାରୀର ବୋଲି ଏକାଧିକ ବନ୍ଦୋବସ୍ତରେ ସ୍ଥିର ହୋଇଥିଲା । ସେ ଫଏସଲାର ସହିମୋହର ନକଲ ମଧ୍ୟ ମୁଁ ଦେଖିଛି ।

**ନଅଙ୍କର ଆତଙ୍କ**—ଓଡ଼ିଶାର ନଅଂକ ଦୁର୍ଭିକ୍ଷ ସମୟରେ (ସନ୧୮୬୬-୬୭ ସାଲ)ରେ ଧାନ ଅତି ଦୁର୍ମୂଲ୍ୟ ହୋଇ ଉଠିଲା ଓ ରଘୁନାଥ ସାମନ୍ତର ଜମା ଥିବା ଧାନ ବିକ୍ରୀ କରି ବହୁ ସହସ୍ର ଟଂକା ପାଇଲେ । କିନ୍ତୁ ମୋ ପିତାମହ ଭଗୀରଥି ପ୍ରହରାଜ ଜମାଥିବା ଧାନ ବିକ୍ରୀ ନ କରି ଅନ୍ନଛତ୍ର ଦେଲେ ଓ ପ୍ରତିଦିନ ଭାତ ରନ୍ଧାଇ ବହୁ ସହସ୍ର ବିପନ୍ନ ଲୋକଙ୍କୁ ଆହାର ଯୋଗାଇଲେ । ସେତେବେଳକୁ ଆମର ଏକାନ୍ନବର୍ତ୍ତୀ ଦେଢ଼ ତାଙ୍କ ଭାଇ ଦାମୋଦର ଆଚାର୍ଯ୍ୟ ପରଲୋକ ଗମନ କରିଥିଲେ ଓ ହଳଧରଂକ ପୁତ୍ର କୁଳମଣି ଆଚାର୍ଯ୍ୟ ଭଗୀରଥିଂକ ସଙ୍ଗେ ଏକାନ୍ନବାସ ହୋଇ ରହୁଥିଲେ । ରଘୁନାଥ ତାଂକ ସଞ୍ଚିତ ଧାନ ବିକି ଜମିଦାରୀ କିଣୁ ଥାଆନ୍ତି, କିନ୍ତୁ ଭଗୀରଥି ତାଂକ ସଞ୍ଚିତ ଧାନକୁ ଅନ୍ନ-ଛତ୍ରରେ ବ୍ୟୟ କରୁଥାଆନ୍ତି । ଏହା କୁଳମଣିଙ୍କୁ ରୁଚିଲା ନାହିଁ । ଆମ ଦାଣ୍ଡରେ ଅନ୍ନଛତ୍ର ଖୋଲା ହେବାର ମାସକ ପରେ କୁଳମଣି ଭଗୀରଥିଙ୍କୁ କହିଲେ, "କକେଇ ! ରଘୁନାଥ ଧାନ ବିକି ଜମିଦାରୀ କଲେ, ତୁମେ ଧାନତକ ଅନ୍ନଛତ୍ରରେ ଉଡ଼ାଇ ଦେଉଛ ।" ଏହାଶୁଣି ଭଗୀରଥି କୁଳ-ମଣିଙ୍କୁ କହିଲେ, "ମଣି ! ତୁମେ ଅମୃତ ହାଣ୍ଡିରେ ବିଷ ମିଶାଇ ଦେଲ; ମୁଁ ସ୍ୱଚ୍ଛ ମନରେ ଅନ୍ନଛତ୍ର ଖୋଲି ହଜାର ହଜାର ଲୋକଙ୍କୁ ବଞ୍ଚାଇଲି । ତୁମେ ଏ ପୁଣ୍ୟ କାର୍ଯ୍ୟରେ ଅସନ୍ତୋଷ-ବିଷ ମିଶାଇ ଦେଲ । ହେଉ, କାଲିଠାରୁ ଅନ୍ନଛତ୍ର ବନ୍ଦ କରିଦେବା ।"

**ଧର୍ମାତ୍ମା ଭଗୀରଥି**—ତହିଁଆର ଦିନ ଅନ୍ନଛତ୍ରରେ ପାକହେବା ପରେ ସମାଗତ ବହୁ ଶତ ବୁଭୁକ୍ଷୁ ଲୋକଂକ ଭୋଜନାନ୍ତେ ଭଗୀରଥି ସେଠାକୁ ଆସି ଉପସ୍ଥିତ ଜନତାଙ୍କୁ ସମ୍ବୋଧନ କରି କହିଲେ, "ସମସ୍ତେ

ହଚବାଲ ବଅ, ଭଗୀରଥି ପ୍ରହବଜ ମନ ଓ ଅନ୍ନଛଦ ବନ୍ଦ ହେଲା।" ଏହା କହି ଗୋଟିଏ ଠେଙ୍ଗା ଧର ଅନ୍ନଛଦର ଶତାଧିକ ପାକହାଣ୍ଡିମାନଙ୍କୁ ଠେଙ୍ଗାରେ ବାଡେଇ ଭାଙ୍ଗି ଦେଲେ ଓ ଘରକୁ ଫେରିଯାଇ ଜ୍ୱରଗ୍ରସ୍ତ ହୋଇ ଶଯ୍ୟାଶାୟୀ ହେଲେ। ଦୁଇଦିନ ପରେ ତାଙ୍କର ମୃତ୍ୟୁ ଘଟିଲ। ଭଗୀରଥି ପ୍ରହବଜ ଭର ଧର୍ମାତ୍ମା ଥିଲେ ଓ ଶିଶୁମାନଙ୍କୁ ଭର ସ୍ନେହ କରୁଥିଲେ। ତାଂକ ଖାଇ ବସିଲାବେଳେ ତାଂକ ଭତ ଥାଳରେ ଓ ଥାଳି ପାଖେ ଅନ୍ୟ ଥାଳମାନଂକରେ ଅନ୍ନ ବ୍ୟଞ୍ଜନାଦି ବଢ଼ା ହେଉଥିଲା ଓ ସାଇର ପିଲାମାନଂକୁ ଡାକ ପାଖରେ ଖୁଆଉ ଥିଲେ। କେତେ ପିଲାଙ୍କୁ ନିଜ ହାତରେ ଗୁଣ୍ଡାବଳ ଖୁଆଇ ଦେଉଥିଲେ।

**ଦଦେଇ ପଧାନ**—ନଅଂକ ସମୟରେ ଲୋକେ ଜୀବନ ବିକଳରେ ଚୋରି କରୁଥାଆନ୍ତି। ଥରେ ରାତ୍ରରେ ଆମ ଗ୍ରାମ ନିକଟସ୍ଥ କମପୁର ଚଷା ସାଇର ଦଦେଇ ପଧାନ ନାମକ ଜଣେ ବ୍ୟକ୍ତି ଗୋଟିଏ ଟୋକେଇ ଆଣି ଆମ ଠାକୁର ଘରେ ପଶି ଆମ ଗୃହ ଦେବତାଙ୍କୁ (ଧାତୁ ବିଗ୍ରହମାନଙ୍କୁ) ଚୋରିକର ସେ ଟୋକେଇରେ ପୂରାଉଥାଏ। ଠାକୁରଘର ଭିତର ଅନ୍ଧକାରମୟ ହୋଇଥାଏ। ପଧାନ ବୁଢ଼ା ଖଟୁଲିରୁ ବିଗ୍ରହମାନଙ୍କୁ ଆଣି ଟୋକେଇରେ ରଖୁଥାଏ ଓ ଖଟୁଲି ପାଖରେ ରଖାଯାଇ ଥିବା ହାତଘଣ୍ଟିକୁ ପ୍ରତିଥର ଝୁଣ୍ଟୁଥାଏ। ଝୁଣ୍ଟିବାରୁ ଘଣ୍ଟିର ଶବ୍ଦ ହେଉଥାଏ। ଭଗୀରଥି ନିକଟବର୍ତ୍ତୀ କୋଠରୀରେ ଶୋଇଥିଲେ। ଏକାଧିକ ଥର ଠାକୁର ଘରେ ଘଣ୍ଟିର ଟୁଣୁ ଟୁଣୁ ଶବ୍ଦ ଶୁଣି ଭଗୀରଥିଙ୍କ ନିଦ ଭାଙ୍ଗିଲା ଓ ସେ ଦୀପ ଲଗାଇ ଠାକୁରଘରକୁ ଆସି ଦେଖିଲେ ବେଳକୁ ଦଦେଇ ପଧାନ ଟୋକେଇରେ ୫।୭ଟି ଦେବ ବିଗ୍ରହ ରଖି ସାରିଲାଣି। ସେ ଭଗୀରଥିଙ୍କୁ ଦେଖି ତାଙ୍କ ଗୋଡତଳେ ପଡ଼ି କହିଲେ—"ସାଆନ୍ତ! ପେଟ ପୋଡ଼ି ଯିବାରୁ ପେଟ ବିକଳରେ ଏଠାକୁ ଆସିଥିଲି। ଏ ଦିଅଁଙ୍କୁ ନେଇ ବିକ କର ଯାହା ପାଇଥାନ୍ତି ସେଥିରେ ମୋ ପିଲାଂକ ପାଇଁ ଧାନ କିଣିଥାନ୍ତି। ଭଗୀରଥି କହିଲେ—"ବର୍ତ୍ତମାନ ମଣି ଜାଣିଲେ ତୋତେ ମାଡ଼ ମାର ତୋ ହାଡଗୋଡ଼ ଭାଙ୍ଗି ଦେବ। ତୁ ଭୁନ ହୋଇ ବାହାରିଯା। ମୁଁ କାଲି ସକାଳେ ଏ ଟୋକେଇରେ ଧାନ ଭର୍ତ୍ତି କରି ରଖିଥିବି।

ମଣିକୁ କହିବ ଯେ ପଧାନ ଧାନ ନେବ ବୋଲି ଟଂକା ଦେଇଛି ଓ ଟୋକେଇ ରଖି ଯାଇଛି । ତୁ ଆସି ସକାଳୁ ଧାନ ନେଇଯିବୁ ।" ଏହା କହି ଘରର ଅନ୍ୟ କାହାରି ନିଦ ନ ଭାଙ୍ଗାଇ ବାଡ଼ି ଦୁଆର ଫିଟାଇ ପଧାନକୁ ଘରୁ ବିଦା କରି ଦେଲେ ।

ସକାଳୁ ଉଠି କୁଳମଣିଙ୍କୁ କହିଲେ ଯେ ବରଡ଼ଂଟାଏ ଠାକୁରଙ୍କ ଖଟୁଲି ଭିତରେ ପଶି ପ୍ରସାଦର ଦାଅଁଙ୍କୁ ମାରି କରି ଦେଇଛି ।" ଏହାକହି ପୁରୋହିତଙ୍କୁ ଡକାଇ ଠାକୁରମାନଙ୍କୁ ପଞ୍ଚାମୃତରେ ସ୍ନାନ କରାଇଲେ । ସକାଳୁଁ ଦନେଇ ପଧାନ ଗୁହନିଆ ହୋଇ ଘରେ ଲୁଚି ରହିଲା । ଭଗୀରଥି କୁଳମଣିକୁ ଡାକି ତାଂକ ହାତରେ ଟଂକା ଦେଖାଇ ଦେଲେ ଓ କହିଲେ —"କାଲି ତୁମ ଘରେ ନଥିଲାବେଳେ ଦନେଇ ପଧାନ ଧାନ ନେବ ବୋଲି ଟଂକା ଓ ଟୋକେଇ ରଖି ଯାଇଛି ।" କୁଳମଣି ଟଙ୍କା ରଖିଲେ ଓ ଅମାର ଫିଟେଇ ଆମ ଗୃହସେବିଆ ଗଉଣିରେ ସାଢ଼େ ସାତ ଗଉଣି ଧାନ ମାପି ଦେଲେ । ଟଂକାକୁ ତିନିଗୃହ ଗୌଣୀ ଧାନ ନଅଂକବେଳେ ପ୍ରଚଳିତ ଭାଉ ହୋଇଥିଲା । ପଧାନକୁ ଡକାଇ ଧାନ ନେଟାଇଦେଇକ ଦେଲେ ।

ପ୍ରତିଦିନ ସକାଳୁ ଉଠି ଦାନ୍ତଘସି ଭଗୀରଥି ତାଂକ ପିନ୍ଧିଥିବା ଅଣ୍ଟେଇହାତ ଓସାର ଦଶହାତ ଲମ୍ବ ବାଉଁଶବୁଣା ପଖାଳ କରା ଲୁଗା କାନରେ ମୁଢ଼ି ଉଖୁଡ଼ା, ଚୁଡ଼ା ଓ ଚୁଡ଼ାଭଜା ମିଶାଇ ଦୁ'ତିନି ଗଉଣି ପୂରାଇ ଆମ ଗ୍ରାମର ନିକଟବର୍ତ୍ତୀ କମପୁର ଗ୍ରାମର ପଧାନ ସାହି ଓ ଗଉଡ଼ ସାହିକୁ ଯାଇ ସେଠାରେ ପିଲାମାନଙ୍କୁ ଅଞ୍ଜିର, ଆଞ୍ଜୁଳାଏ ଲେଖାଁ ଭୁଜା ବାଣ୍ଟୁଥିଲେ । ଭଗୀରଥି ନିସନ୍ତାନ ଥିବାରୁ ଦାମୋଦର ଆଚାର୍ଯ୍ୟଂକ କନିଷ୍ଠପୁତ୍ର ନରସିଂହଙ୍କୁ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ ।

**ତରତୋ କଚେରୀ ଓ ମାଧବ ଘଇନା**—ମୁଁ ପୂର୍ବେ ଲେଖିଛି ସାମନ୍ତର ବଂଶ ଆମ କୁଟୁମ୍ବୀ ଥିବାରୁ ବର୍ଷକେ ପ୍ରତି ଶ୍ରାଦ୍ଧ ପୂର୍ବରୁ ତାଙ୍କୁ ନିମନ୍ତ୍ରଣ କରିବାକୁ ମୋ ପିତୃଦେବଙ୍କ ସହିତ ସବାରୀରେ ମୁଁ ତରତୋ କଚେରୀକୁ ଯାଉଥିଲି । ତରତୋର ରାଧାମାଧବଙ୍କ ବୈଠକ ଖାନାର ଓ ନାଚ ଖାନାର ସାଜ ସଜ୍ଜା, କାଚ ଓ ଚୀନା ବାସନର ମୂର୍ତ୍ତି

ଟେ ଭାଗ ଓ ବନ୍ଧୁକଧାରୀ ଦରୁଆନ୍, ୩୦ । ୪୦ ଜଣ ଚାକର ଗୁମାସ୍ତା ୮ । ୧୦ ଘୋଡ଼ା ଓ ନବାବୀ କାରଖାନା ଦେଖି ମୋତେ ସ୍ୱପ୍ନ ରାଜ୍ୟରେ ବିଚରଣ କରିବା ପରି ଜଣା ପଡ଼ୁଥିଲା । ରାଧାମାଧବ ପ୍ରତିଦିନ ୧ ଭରି ଅହିଫେନ ସେବନ କରୁଥିଲେ ଓ ଗୋଟିଏ ସଙ୍ଗୀତ ଆଖଡ଼ା ରଖିଥିଲେ । ତାଙ୍କର ରକ୍ଷିତ ନାଟୁଆ ପିଲା ବାମଦେବ ନାମକ ଗୋଟିଏ ଗୋରା ଗୁଡ଼ିଆ ପିଲା ମୁଣ୍ଡରେ ଆପୃଷ୍ଠ ଲମ୍ବିତ କେଶପାଶ, କାନରେ, ନାକରେ, ହାତରେ, ଗୋଡ଼ରେ, ବେକରେ, ବାହୁରେ ବହୁମୂଲ୍ୟ ଅଳଙ୍କାର ଥିଲା । ସେ ଯେତେବେଳେ ସ୍ତ୍ରୀ ବେଶ ହୋଇ ଆପାଦମସ୍ତକ ଅଳଙ୍କାର ପିନ୍ଧି ବନାରସୀ ପାଟ ପିନ୍ଧି ନାଚୁଥିଲା ସେତେବେଳେ ସେ ଦର୍ଶକଙ୍କୁ ସ୍ୱପ୍ନ ରାଜ୍ୟର ଅପ୍‌ସରା ଭଳି ଦିଶୁଥିଲା । ରାଧାମାଧବଙ୍କ ନାଚ-ଖାନା ବେହ୍ଲାର, ଝାଡ଼, ହଣ୍ଡା, କାଚ ଓ ଗଦିଲଗା ଚଉକିରେ ପୂର୍ଣ୍ଣ ଥିଲା । ତଳେ ବହୁମୂଲ୍ୟ ଗାଲିଚା ପଡ଼ିଥାଏ । ମୁଁ ତ ସକାଳଓଳି ତରତରେ ଯାଇ ମାଧବ ଭାଇନାଙ୍କୁ ନିମନ୍ତ୍ରଣ କରି ଓପରଓଳି ସବାରୀରେ ଘରକୁ ଫେରି ଆସୁଥାଏ; ଥରେ ବର୍ଷା ହେବାରୁ ତରଟତାରେ ରାତିରେ ରହି ସେ ନାଚଖାନାରେ ବାମ'ଙ୍କ ନାଚ ଦେଖିଥିଲି । ମାଧବ ଭାଇନା ନିଜେ ମଧ୍ୟ ନୃତ୍ୟଗୁରୁଙ୍କଠାରୁ ବେହେଲା ଶିଖିଥିଲେ । ନାଚ ଆଖଡ଼ା ପାଇଁ ନୃତ୍ୟ-ଗୁରୁ, ପଖୋଜ ବାଦକ, ଗିନି ବାଦକ, ବେହେଲା ବାଦକ ଓ ଗାୟକ ପୋଷା ହେଉଥିଲେ । ମାଧବଭାଇନାଙ୍କର ରାଜହଂସନିବାସୀ ରାଧୁ ବେହେରା ନାମରେ ଏକ ସର୍ଦ୍ଦାର ବେହେରା ଥିଲା । ମାଧବ ଭାଇନା ଶ୍ୟାମଳବର୍ଣ୍ଣ, କିନ୍ତୁ ରାଧୁ ବେହେରା ବବୁରିବାଳ ରଖିଥିଲା ଓ ତାର ପୋଷାକ ଓ ବେଶ ଏପରି ସାଡ଼ମ୍ବର ଥିଲା ଓ ମାଧବ ଭାଇନାଙ୍କ ସହିତ ଏପରି ସମାନସ୍କନ୍ଧ ହୋଇ ଚାଲୁଥିଲା ଯେ ଥରେ ଯେତେବେଳେ ମୁଁ ମାଧବ ଭାଇନାଙ୍କ ନାମ ଶୁଣିଥିଲି ଓ ତାଙ୍କୁ ଦେଖି ନ ଥିଲି, ସେ ଦୁହେଁ ଆମ ଘରକୁ ଆସିଥିଲେ; ମୁଁ ସର୍ଦ୍ଦାରଙ୍କ ପୋଷାକ ଓ ଚେହେରା ଦେଖି ତାଙ୍କୁ ମାଧବ ଭାଇନା ବୋଲି ଭ୍ରମରେ ନମସ୍କାର କରି ଉପସ୍ଥିତ ଲୋକଙ୍କଠାରେ ହାସ୍ୟାସ୍ପଦ ହୋଇଥିଲି । ମାଧବ ଭାଇନା ବିଦ୍ୟାଶିକ୍ଷା କରି ନ ଥିଲେ, କେବଳ ଓଡ଼ିଆ ଲେଖିପଢ଼ି ପାରୁଥିଲେ । ମୁଁ ସେତେ-ବେଳେ ମାଇନର ସ୍କୁଲରେ ପଢ଼ୁଥାଏ ।

ଥରେ ତାଙ୍କୁ ମୁଁ ଯାଇଥାଏ । ମାଧବ ଭାଇନାଙ୍କ ପାଖେ ସ୍ତାବକ (ମୋ ସାହେବ)ଙ୍କ ଅଭାବ ନଥିଲା । ତାଙ୍କ ସଙ୍ଗେ କଥାପ୍ରସଙ୍ଗରେ ମାଧବ ଭାଇନା କହିଲେ— "କଙ୍କେଇ (ଅର୍ଥାତ୍ ମୋ ପିତୃଦେବ) ଗୋମାଳକୁ ଇସ୍କୁଲରେ ପାଠ ପଢ଼ାଉଛନ୍ତି କିନ୍ତୁ ନନା (ରଘୁନାଥ ସାମନ୍ତରାୟ) ମତେ ପାଠପଢିବାକୁ କହିବାରୁ ମୁଁ ଦୋ'ମହଲା ଉପରୁ ଡେଇଁ ପଡ଼ିବାକୁ ବସିଲି । ସେଥିରୁ ନନା ମୋ ପାଠପଢ଼ା ବନ୍ଦ କରିଦେଲେ ।" ସ୍ତାବକମାନେ ଏହାଶୁଣି ତାଙ୍କୁ ଖୁବ୍ ପ୍ରଶଂସା କଲେ । ମାଧବ ଭାଇନାଙ୍କ ନିକଟରେ ଲାଲବିହାରୀ ମହାନ୍ତି ନାମକ ଜଣେ ଦନ୍ତୁର ପେସ୍କାର ଥାଆନ୍ତି । ସେତ ଇଂରାଜୀ ପଢ଼ିନଥିଲେ । ଅଥଚ ସାଧାରଣ ମାତୃଭାଷାରେ କଥାକହିଲେତ ସମସ୍ତେ ବୁଝି ଯାଆନ୍ତି । ଏଥିପାଇଁ ମାଧବ ଭାଇନା, ସର୍ଦ୍ଦାର ରାଧୁ ବେହେରା, ପେସ୍କାର ଲାଲବିହାରୀ ଓ ନାଟୁଆ ବାମାମାନଙ୍କ ମଧ୍ୟରେ ଶଣିଠାରରେ କଥାବାର୍ତ୍ତା ଚାଲୁଥିଲା । ଶଣିଠାର ଅନୁସାରେ ଅ-ସ୍ଥାନରେ କ, ଖ-ସ୍ଥାନରେ ଗ, ଘ-ସ୍ଥାନରେ ଙ, ଚ-ବର୍ଗସ୍ଥାନରେ ଟ-ବର୍ଗ, ଞ ସ୍ଥାନରେ ଣ, ତ-ବର୍ଗସ୍ଥାନରେ ପ-ବର୍ଗ, ଯ-ସ୍ଥାନରେ ଶ, ର-ସ୍ଥାନରେ ଲ, ଲ-ସ୍ଥାନରେ ର, ହ-ସ୍ଥାନରେ କ୍ଷ ଓ ଓଲଟ ଭାଗରେ ଉଲ୍ଲିଖିତ ପରବର୍ତ୍ତୀ ବର୍ଣ୍ଣମାନଙ୍କ ପରିବର୍ତ୍ତେ ପୂର୍ବବର୍ତ୍ତୀ ବର୍ଣ୍ଣମାନ ବ୍ୟବହୃତ ହେଉଥିଲା । ସେମାନେ ଶଣିଠାରରେ କଥାଭାଷା କରିବାରେ ଏପରିପଟୁ ହୋଇଥିଲେ ଯେ ଓ ଏପରି ଶୀଘ୍ର କଥାବାର୍ତ୍ତା କରୁଥିଲେ ଯେ ଅନ୍ୟ କେହି ସେମାନଙ୍କ କଥା ବୁଝି ପାରୁନଥିଲେ ।

ମାଧବ ଭାଇନା ମୋ ବ୍ରତଘରକୁ ଆସି ମୋତେ ସୁନାଗୋଟ ଭିକ୍ଷା ଦେଇଥିଲେ । ଥରେ ମୁଁ ତାଙ୍କ ଘରକୁ ନିମନ୍ତ୍ରଣ କରିବାକୁ ଯାଇଥିଲି । ସେ ମୋତେ ଗୋଟିଏ ସଚ୍ଚାଜରିର ଟୋପୀ ଓ ବନାରସୀ ଯୋଡ ଦେଇଥିଲେ । ସେ ବିବାହ ଆଦରେ ଆମଘରକୁ ନିମନ୍ତ୍ରଣ ରକ୍ଷା କରିବାକୁ ଆସିଲେ । ଆମଘରକୁ ଆସି ସାମାନ୍ୟମାତ୍ର ଭୋଜନ କରି ଆମଗ୍ରାମର ଉତ୍ତର ପୂର୍ବରେ ଏକ ଫର୍ଲଙ୍ଗ ଦୂରରେ ଥିବା 'ବିଶ୍ୱାଳଡ଼ିହ'ରେ ତାଙ୍କ ବଙ୍ଗଳାଘରେ ରହୁଥିଲେ । ସେ ବଙ୍ଗଳାରେ ତାଙ୍କ ପାର୍ଷଦମାନଙ୍କର ସ୍ଥାନ ନହେବାରୁ ସେ ହତା ମଧ୍ୟରେ ତମ୍ବୁ ମଧ୍ୟ

ପଡୁଥିଲା । ମୁଁ ତାଙ୍କ ଘରଠାରେ ୮।୧୦ଟି ଘୋଡ଼ା ଏକ ସମୟରେ ବନ୍ଧା ହୋଇଥିବା ଦେଖିଛି । ଘୋଡା ସବୁ ବହୁମୂଲ୍ୟର । ଥରେ ସେ ଗୋଟିଏ 'ଚୀନା' ଧଳା ଘୋଡ଼ାରେ ଚଢ଼ି ଆମ ଗ୍ରାମକୁ ଆସିଥିଲେ । ମାଧବ ଭାଇନା ତା ଉପରେ ବସିଥାଆନ୍ତି ଓ ଢୋଲ ବଜା ହେଉଥାଏ ଓ ଘୋଡା ତାଳେ ତାଳେ କୁଦି ନାଚୁଥାଏ । ତାଙ୍କ ନକଟରେ ପୁରୀ ଜିଲ୍ଲା ୱାରହରେକୃଷ୍ଣପୁର ନିବାସୀ ପୀତାମ୍ବର (ପିତେଇ) ଡହାଡ଼ ସେକ୍ରେଟାରୀ ହୋଇ ରହିଥିଲେ । ସେ ମଧ୍ୟ ଶଣିଠାରରେ ଧୁରନ୍ଧର ହୋଇଥିଲେ । ମାଧବ ଭାଇନା ଜମିଦାରୀକୁ ଗଲେ ଚଉକି ବେଞ୍ଚ ଟେବଲ ପକାଇ କଚେରୀ କରୁଥିଲେ । ପ୍ରଜାମାନେ ତାଙ୍କୁ ଦରଖାସ୍ତ ଦେବାକୁ ହେଲେ ତାଙ୍କ ନାମ ଦସ୍ତଖତ କାଗଜ ଟିକଟ ଉକ୍ତ ଦରଖାସ୍ତରେ କୋର୍ଟ ଫି ମରାହେଉଥିଲା । ଦନକ ଭିତରେ ସେ ତନଥର ସ୍ନାନ କରୁଥିଲେ ଓ ହାତରେ ପଇସା ଧରିଲେ ସାବୁନରେ ହାତ ଧୋଉଥିଲେ । ମାଧବ ଭାଇନା ଏପରି ନୃତ୍ୟ ଗୀତାଦ ପ୍ରିୟ ଥିଲେ ଯେ ନୃତ୍ୟାଦ ପାଇଁ କଟକରୁ ତରତୋକୁ ନର୍ତ୍ତକୀମାନଙ୍କୁ ଅଣାଉଥିଲେ ଓ ନୃତ୍ୟ ଗୀତରେ ଖୁସି ହୋଇ ଥରେ ଥରେ ନର୍ତ୍ତକୀମାନଙ୍କୁ ନୃତ୍ୟ ସଭାରେ ଟ୨୫ଙ୍କା ଟ୫୦ଙ୍କା ଟ୧୦୦ଙ୍କା ବକ୍‌ସିସ୍ ଦେଉଥିଲେ ବୋଲି ଶୁଣାଥିଲା । ଅତର ଓ ଏସେନ୍‌ସରେ ତାଙ୍କର, ରାଧୁ ବେହେରାର ଓ ନର୍ତ୍ତକ ବାମଦେବର ଲୁଗାପଟା ବୁଡ଼ଯାଏ ଯେ ସେମାନେ ଚାଲିଗଲା ବେଳେ ୨୦ ହାତ ଦୂର ପର୍ଯ୍ୟନ୍ତ ମହକୁ ଥିଲା ।

କଟକରେ ମୋର ପଢୁଥିବା ସମୟରେ ମୁଁ ଅନେକଥର ଶ୍ରାଦ୍ଧପାଇଁ ନମନ୍ତ୍ରଣ କରିବାକୁ ତରତୋ ଯାଇଥିଲି । ସେଠାରେ ଛବି, ଝାଡ଼, କଲେଣ୍ଡର, ହଣ୍ଡାଆଦ ଦେଖି ମୋ ମନ ସମ୍ଭାଳି ହେଲାନାହିଁ । ଗୋଟିକେତେ ଦେବାଲଗିରି ଓ ଚୀନାମାଟିର କୁକୁର ଓ ଛବି ମାଧବ ଭାଇନାକୁ ମାଗିଲି । ତହିଁ ଆରଦନ ସେ କେତେ ଗୁଡ଼ିଏ ମହଣବନ୍ତୀ ଜଳିବା ଦେବାଲଜର, ହଣ୍ଡା ଓ ଛବି ପଠାଇ ଦେଲେ । ଆମଘରେ ଏସବୁ ଜନଷ ପହଂଚବାରୁ ମୋ ପିତୃଦେବ ଦେଖି ମୋ ଉପରେ ଭାରି ବିରକ୍ତ ହେଲେ ଓ କହିଲେ—"ମାଧବବାବୁତ ଏହିସବୁ କରି ପୈତୃକ ସମ୍ପତ୍ତି ଉଡ଼ାଇବାରେ ଲାଗିଛନ୍ତି, ତାଙ୍କଠାରୁ ଏହିଗୁଣ ଶିଖିବୁ ?" ସେ ସବୁ ଜନଷ ଆଣିଥିବା ଲୋକ ବିଦାହୋଇ ଯିବାପରେ ନନା ସେ ଗୁଡ଼ାକ

ଭୂଇଁରେ କନ୍ତୁଡ଼କର ଗର୍ଜିଦେଲେ ଓ ସେହିଦିନଠାରୁ ଶ୍ରାଦ୍ଧପାଇଁ ମାଧବ ଭାଇନାଙ୍କୁ ନିମନ୍ତ୍ରଣ କରିବାକୁ ଆଉ ମୋତେ ପଠାଇଲେ ନାହିଁ; ମୋ ସାନଭାଇ (ବଡ଼ବୋଇଙ୍କ ପୋଷ୍ୟପୁତ୍ର) ଉଦ୍ଧବକୁ ପଠାଇଲେ । ତାଙ୍କୁ ମଧ୍ୟ ମାଧବ ଭାଇନା ଜରିର ଟୋପି ଓ ପାଟଜୋଡ଼ ଦେଇଥିଲେ । ବହୁକାଳ ପରେ ମୋର ଓ ଉଦ୍ଧବର ଜରିଟୋପି ଦୁଇଟି ପୁରୁଣା ଓ ଜୀର୍ଣ୍ଣଶୀର୍ଣ୍ଣ ହୋଇଯିବାରୁ ତହିଁରୁ ଜରିତକ କାଢ଼ି ବଣିଆ ଦ୍ୱାରା ପୋଡ଼ାଇବାରେ ସେ ଦୁଇଟୋପିରୁ ୨୮ ଭରି ରୂପା ବାହାରିଥିଲା । ମାଧବ ଭାଇନା ମୋତେ ଭାରି ସ୍ନେହ କରୁଥିଲେ । ତାଙ୍କ ନିକଟକୁ ଗଲେ ତାଙ୍କ ଅପବ୍ୟୟ ପ୍ରକୃତିଦ୍ୱାରା କାଳେ ମୁଁ ପ୍ରଭାବିତ ହେବି ଏହି ଭୟରେ ତାଙ୍କ ନିକଟକୁ ଯିବା ପାଇଁ ନନା ଖୁବ୍ କଡ଼ା ଭାବରେ ମୋତେ ଓ ମୋ ସଙ୍ଗେ ଥିବା ଭୃତ୍ୟମାନଙ୍କୁ ନିଷେଧ କରିଥିଲେ । ତେବେ ସୁଦ୍ଧା ଯେଉଁ ଥରେ ଦୁଇଥର ଅକସ୍ମାତ୍ ମୋର ମାଧବ ଭାଇନାଙ୍କ ସହିତ ଭେଟ ହୋଇଥିଲା ପ୍ରତିଥର ମୋ ହାତରେ ୨ ଟଙ୍କା ଓ ୪ ଟଙ୍କା କରି ଦେଉଥିଲେ । ସେ ଦୁଃଖ ପାଇଯିବା ପରେ ମୁଁ କଲେଜରେ ପଢ଼ିବା ସମୟରେ ଓ ଓକିଲାତି କରିବା ସମୟରେ ମୁଁ ମୋ ଶକ୍ତି ଅନୁସାରେ ବେଳେ ବେଳେ ତାଙ୍କୁ ଯତ ସାମାନ୍ୟ ମାସକୁ ମାସ ଆର୍ଥିକ ସାହାଯ୍ୟ ଦେଉଥିଲି । ପିତାଙ୍କ ସଞ୍ଚିତ ଟଙ୍କା ସରି ଯିବାରୁ ଓ ଜମିଦାରୀର ଆୟ ନଅଣ୍ଟିବାରୁ ସେ କଟକ ମହାଜନମାନଙ୍କଠାରୁ ଋଣ କଲେ । ମହାଜନମାନେ ଋଣ ଦେଲାବେଳେ ଅତ୍ୟଧିକ 'ମିଠେଇ ଖିଆ' କାଟି ନେଉଥିଲେ ଓ ଋଣର ହାର ଅତ୍ୟଧିକ ଥିଲା । ଶେଷକୁ ସେହି ଋଣ ଯୋଗୁ ତାଙ୍କର ସମସ୍ତ ସମ୍ପତ୍ତି ନିଲାମ ହେଲା ଓ ପଛକୁ ସେ କଟକଠାରେ ଅତି ନିର୍ଦ୍ଧନ ଅବସ୍ଥାରେ ସ୍ୱର୍ଗୀୟ ବିହାରୀଲାଲ ପଣ୍ଡିତଙ୍କଠାରୁ ଦିନକୁ ଟଙ୍କାଟିଏ ପାଇ ଚଳିଲେ । ତାଙ୍କ ଜମିଦାରୀ ନିଲାମ ହେବାରୁ ବିହାରୀଲାଲ ପଣ୍ଡିତ ଅଳ୍ପ ମୂଲ୍ୟରେ ନିଲାମ ନେଇଥିଲେ ଓ ବୋଧହୁଏ ସେହି ସମୟରେ ମାଧବ ଭାଇନାଙ୍କ ସଙ୍ଗେ ତାଙ୍କର କଣ କଥା ବାର୍ତ୍ତା ହୋଇଥିବାରୁ ସେଥି ପାଇଁ ବିହାରୀଲାଲ ପଣ୍ଡିତ ତାଙ୍କୁ ଚଳାଉ ଥିଲେ । ବିହାରୀବାବୁ ତାଙ୍କୁ କେତେକ ସମ୍ପତ୍ତି ଫେରାଇ ଦେଲେ ବୋଲି କହିଥିଲେ, କିନ୍ତୁ ତାହା ମାଧବ ଭାଇନା ପାଇଲେ ନାହିଁ ।

**ଶ୍ୟାମଭଉଣୀ**—ତାଙ୍କ ଭଲଭାଇ ଶ୍ୟାମସୁନ୍ଦର ରାୟଗୁରୁ ଗାଆଁରେ ନ ରହି କଟକରେ ଖାନ୍‌ନଗର ମଶାଣିର ପୂର୍ବକୁ ଏକ ଫର୍ଲଙ୍ଗ ଛଡ଼ା ଏକ ବଡ଼ା'ମହଲା କୋଠା କରି ସେଠାରେ ରହୁଥିଲେ । ସେ ଜଣେ ଗଡ଼ଜାତ ରାଜାଙ୍କ ସହିତ ସଙ୍ଗାତ ବସିଥିଲେ ଓ ସଙ୍ଗାତ ବେଭାର ବଡ଼ଜାଡ଼ା ଆଡ଼ମ୍ବରରେ ଧୁଆଁଧୁଆ ହେଉଥିଲା । ଧନାକେତେ ସେ ଗୋଟାଏ ହାତୀ ଆଣି ରଖିଥିଲେ ଓ ତାଙ୍କ ଦାଣ୍ଡ ପାଖରେ ଲୁହା ରେଲିଂ ଭିତରେ ଗୋଟିଏ ବାଘ ରଖିଥିଲେ । ତାଙ୍କର ଘୋଡ଼ା ଓ ବଗିଗାଡ଼ିରେ ଭାରି ସଉକଥିଲା । ବର୍ତ୍ତମାନ ଯେଉଁଠାରେ ରେଭେନ୍‌ସା କଲେଜ କୋଠ', ଖେଳପଡ଼ିଆ, କଟକ ରେଳଷ୍ଟେସନ ବଜାର ହୋଇଛି ତାହା ପୂର୍ବେ ଗୁଡ଼ଲଆଗଞ୍ଜର ଘୋଡ଼ାଦଉଡ଼ ପଡ଼ିଆ ଥିଲା ଓ ସେଠାରେ ପ୍ରତିବର୍ଷ ଘୋଡ଼ାଦଉଡ଼ ହେଉଥିଲା । ଶ୍ୟାମସୁନ୍ଦର ନିଜେ ଘୋଡ଼ା ଚଢ଼ି କେତେଥର ଘୋଡ଼ାଦୌଡ଼ରେ ପୁରସ୍କାର ପାଇଥିଲେ ଓ ନିଜେ ଭଲ ଭଲ ଘୋଡ଼ାମାନ କିଣି ଟମ୍ ଟମ୍ ଗାଡ଼ି ହାଙ୍କୁଥିଲେ । ସେ ଅନେକ ଗୁଡ଼ିଏ ଡାହାଲ କୁକୁର ପାଳିଥିଲେ । ଥରେ ମୋତେ ୭।୮ବର୍ଷ ବୟସ ହୋଇଥିବା ସମୟରେ ସେ ଦୁଇଟି ଡାହାଲ କୁକୁର ଘେନି ଆମ ଗ୍ରାମକୁ ଯାଇ ବଲୁଆଙ୍କ ପଛରେ କୁକୁରଙ୍କୁ ଲଗାଇ ଦୁଇଟି ବଲୁଆ ମାରିଥିଲେ । ରାଧାମାଧବଙ୍କ ସଙ୍ଗେ ତାଙ୍କର ଆଦୌ ବନୁନଥିଲା ଓ ଦୁଇ ଭାଇଙ୍କ ଦଳ ମଧ୍ୟରେ ବହୁବାର ମାଡ଼ପିଟ ଓ ମକଦ୍ଦମା ହୋଇଥିଲା । ସେ ଥରେ ଦି'ଥର ରାଧାମାଧବଙ୍କ ଅଧିକୃତ ଘରମାନଙ୍କରେ ପଶି ଲୁଟି କରିଥିଲେ । ମୁଁ ଶୁଣିଛି ଯେ ଶ୍ୟାମସୁନ୍ଦର ଓ ମାଧବଙ୍କ ମଧ୍ୟରେ ବିବାଦ ଓ ମାଲିମକଦ୍ଦମା ହେବାରୁ ଶ୍ୟାମସୁନ୍ଦରଙ୍କ ଡ଼ରରେ ବିରାଡ଼ି ଚା'ଳୁଆକୁ ବାରଘର କଲାପରି ରାଧାମାଧବ ବହୁ ଅଳଂକାର ସୁନାରୂପା ପୂର୍ଣ୍ଣ ବାକ୍‌ସମାନ ସର୍ଦ୍ଦାର ରାଧୁ ବେହେରାଙ୍କଠାରେ ଓ ଅନ୍ୟମାନଙ୍କଠାରେ ରଖିଥିଲେ । କିନ୍ତୁ ଆହା, ସେ ସବୁ ଧନରେ ରାଧୁ ବେହେରା ଓ ଅନ୍ୟମାନେ ବଡ଼ଲୋକ ହେଲେ । ମାଆ ପେଟର ଭାଇଙ୍କ ହାବୁଡ଼େ ନପଡ଼ି ସେ ସବୁ ବାର ଭୂତଙ୍କ ହାବୁଡେ ପଡ଼ିଲା । ରାଧାମାଧବ ଅତି ଶୀର୍ଣ୍ଣକାୟ ଥିଲେ, କିନ୍ତୁ ଶ୍ୟାମସୁନ୍ଦର ହୃଷ୍ଟପୁଷ୍ଟ ଓ ଭାରି ଅଟ୍ଳ ଥିଲେ । ସ୍ୱର୍ଗତ ରାୟ ରାମଶଙ୍କର ରାୟ ଓକିଲଙ୍କ ସଙ୍ଗେ ସେ ସଙ୍ଗାତ

ହୋଇଥିଲେ ଓ ରାଧାମାଧବଂକ ଅଧିକାରରୁ ଆଇଣାଘରୁ ଓ ରାଧାମାଧବଙ୍କ ଅଧିକାରରୁ ଆଣିଥିବା ବହୁତ ବଡ ବଡ ପିତଳ ହାଣ୍ଡି, ଗରା, ବାସନ, ହାଣ୍ଡି, ଝାଡ଼ ଓ ଅଳଙ୍କାର ବାକ୍ସମାନ ଆଣି ରାମଶଙ୍କର ବାବୁଙ୍କ ଘରେ ରଖିଥିଲେ । ପରେ ସେ ସବୁ ନେଲେକି ନାହିଁ ମତେ ଜଣାନାହିଁ । ଅପବ୍ୟୟ ଓ ମକଦ୍ଦମା ମାମଲା, ଘୋଡ଼ାଗାଡ଼ି, ନାଚ ତାମସାରେ ବହୁ ବ୍ୟୟ କରି ସେ ମଧ୍ୟ ଦେଣାକଲେ ଓ ସେଥିଯୋଗୁଁ ତାଙ୍କର ସମସ୍ତ ସମ୍ପତ୍ତି ନିଲାମ ହେଲା । କେବଳ ତାଙ୍କ ସ୍ତ୍ରୀଙ୍କ ନାମରେ 'ରାଧାନଗର' ନାମକ କ୍ଷୁଦ୍ର ଜମିଦାରୀ ଖଣ୍ଡିକ ସେ କିଣିଥିଲେ ଓ ସେଥିର ଆୟରୁ ଯେନ ତେନ ପ୍ରକାରେ ଚଳିଲେ । ପରକୁ ତାହାମଧ୍ୟ ନିଲାମ ହେଲା । ସେ ମଧ୍ୟ ନିଜେ ଭଲ ବାଦ୍ୟ ବଜାଇ ପାରୁଥିଲେ ଓ ପାଣିମାନେ ଯେଉଁ ମହୁରୀ ବଜାନ୍ତି ସେ ମହୁରୀକୁ ଭଲ ବଜାଇ ପାରୁଥିଲେ । ମୁଁ କଟକରେ ପାଠପଢୁଥିବା ବେଳେ ରାଧାମାଧବ ଓ ଶ୍ୟାମସୁନ୍ଦରଙ୍କର ଅପବ୍ୟୟ କରୁଥିବା ଦେଖିଛୁ । ସେତେବେଳେ ତାଙ୍କର କଟକ ସହର ଜମିଦାରୀ ନିଲାମ ହୋଇ ଯାଇନଥାଏ । ରାଧାମାଧବ ସୁନାଆଁ ହାନ ଯେତେବେଳେ ସହର ମଧ୍ୟରେ ଶୋଭାଯାତ୍ରା କରି ଯାଇଥିଲେ ସହର ରାସ୍ତାମାନ ଲୋକ ଗହଳରେ ଭରିଯାଉଥାଏ । ଶ୍ୟାମସୁନ୍ଦର ଯେତେବେଳେ ପୋଷାକ ପିନ୍ଧି ଉତ୍କୃଷ୍ଟ ଘୋଡ଼ାଲଗା ଟମ୍ ଟମ୍ ହାଙ୍କି କରି ଯାଉଥିଲେ ଦେଖଣାହାରି-ମାନଙ୍କ ମୁହଁରୁ 'ବାହା ବା' ବାହାରୁଥିଲା । ଜମିଦାରୀ ଆଦି ନିଲାମ ହୋଇ ଯିବା ପରେ ସେ ବହୁବର୍ଷ କଟକ ବେଞ୍ଚରେ ଅନରାରୀ ମାଜିଷ୍ଟ୍ରେଟ ଥିଲେ ଓ ମକଦ୍ଦମାମାନ ଏକାକୀ ବିଚାର କରୁଥିଲେ । ସେ ୨ୟ ଶ୍ରେଣୀ ମାଜିଷ୍ଟ୍ରେଟର କ୍ଷମତା ପାଇଥିଲେ ଓ ଓଡ଼ିଆରେ ସାକ୍ଷୀ ଜବାନବନ୍ଦୀ ଓ ରାୟ ଲେଖୁଥିଲେ । ତାଙ୍କର ଖାନନଗର ନିକଟରେ (କଟକ ମ୍ୟୁନିସିପାଲିଟି ମଇଳା ପୋଡ଼ା ଜାଗାଠାରୁ ଉତ୍ତର ପୂର୍ବରେ ୧ ଫର୍ଲଙ୍ଗ ଛଡ଼ା)ଥିବା ହୋମହଲ୍ କୋଠା ନିଲାମ ହୋଇ ଯିବାପରେ ତେଲେଙ୍ଗା ବଜାରରେ ଖଣ୍ଡିଏ କୋଠା ବେନାମୀ କିଣି ରହୁଥିଲେ । ଶାମଭାଇନା ପ୍ରାୟ କଟକରେ ରହୁଥିବାରୁ ତାଙ୍କୁ ପିଲାଦିନେ ମୁଁ ଥରେ ବା ଦୁଇଥର ମାତ୍ର ଦେଖିଛୁ । ମୁଁ କଟକରେ ପଢୁଥିବା ବେଳେ ନନାଙ୍କର କଡ଼ା ନିଷେଧ ଥିବାରୁ ମୁଁ ତାଙ୍କ ବସାକୁ ଥରେ ବା ଦୁଇଥର ଯାଇଥିବି ।

## ଦିବ୍ୟସିଂହ ପ୍ରହରାଜେ—

ଦିବ୍ୟସିଂହ ପ୍ରହରାଜ ପ୍ରଥମେ ଦିନାକେତେ ନାବାଲଗ ଅବସ୍ଥାରେ ରାଧାମାଧବଙ୍କ ମହାଫିଜଅଧୀନରେ ରହିଲେ କିନ୍ତୁ ରାଧାମାଧବଙ୍କର ଅମିତବ୍ୟୟ ଓ ଋଣଗ୍ରସ୍ତ ଅବସ୍ଥା ଦର୍ଶାଇ ଦିବ୍ୟସିଂହଙ୍କ ଅଭିଭାବକ ହେବାକୁ ଅନେକ ନିଃସମ୍ପର୍କ ଲୋକେ ମଧ୍ୟ ଜଜ୍‌ସାହେବଙ୍କ ନିକଟରେ ଦରଖାସ୍ତ ଦେଲେ । ଦିବ୍ୟସିଂହ ଭାଇନା ମୋ ଠାରୁ ୫।୭ବର୍ଷ ବଡ଼ ଥିଲେ । ସେ ରାଧାମାଧବଙ୍କ ପାଖେ ଥିବା ସମୟରେ ଘୋଡ଼ା ଚଢ଼ୁଥିଲେ ଓ ହାରମୋନିଅମ୍, ବେହେଲ୍, ସୀତାର, ତବଲା, କ୍ଲାରିଓନେଟ୍ ଆଦି ଶିକ୍ଷା କରୁଥିଲେ । ରାଧାମାଧବ ତାଙ୍କୁ ଖୁବ୍ ଆଦରରେ ରଖିଥିଲେ । କିନ୍ତୁ ସେ ପାଠମନ୍ତ୍ର ନଥିଲେ । ବୋଧହୁଏ ରାଧାମାଧବ ତାଙ୍କ ମନ ମୁତାବକ ଫେରଫାରମାସ ନ ଯୋଗାଇବାରୁ ସେ ତାଙ୍କ ନିକଟରୁ ଖସି ଆସି କଟକରେ ରହିଲେ ଓ ତେଲ ମାଠିଆରେ ହାତ ପୂରାଇଲେ ହାତ ଚିକଣା ହୁଏ । ଏହି ପ୍ରବଚନ ଅନୁସାରେ ଅନେକ ମହାଜନ ତାଙ୍କର ମହାଫିସ ହେବାକୁ ତାଙ୍କ ନିକଟରେ ଆସି ଜୁଟିଲେ । ଏଣେ ଦିବ୍ୟସିଂହ ନିତାନ୍ତ ଶିଶୁ ନୁହନ୍ତି । ଜଜ୍‌ସାହେବ ମହାଫିସ ମୁକରର କରିବା ପୂର୍ବରୁ ତାଙ୍କ ମତ ପଚାରିବେ, ଏଥିଲାଗି ଦରଖାସ୍ତକାରୀମାନେ ତାଙ୍କୁ ବହୁଧନ ଦେଇ ସନ୍ତୁଷ୍ଟ ରଖୁଥିଲେ । ତାଂକର ମହାଫିସ ହେବା ଲୋଭରେ ଅନେକ ଲୋକ ମଧ୍ୟ ବେଶୀ ଟଂକାର ହାଣ୍ଡନୋଟ ଲେଖିନେଇ ତାଙ୍କୁ ଅଳ୍ପ ଟଂକା ଦେଲେ ଓ କଟକ ସହରର ଜମିଦାରଂକ ପୁଅ ବୋଲି ସୁଧଖୋରମାନେ ନାବାଳକକୁ ଟଂକା ଦେଲେ ଓ ଆଶାକଲେ ତାଂକ ମହାଫିସ ହେବେ ବା ସାବାଳକ ହେଲେ ତାଂକଠାରୁ ଅସଲ ସୁଧ ଆଦାୟ କରିବେ । ପରେ ମୁଁ ଦିବ୍ୟସିଂହ ଭାଇନାଂକଠାରୁ ମହାଫିସ ପଦ ଜଣେ ପ୍ରାର୍ଥୀଙ୍କ ସମ୍ବନ୍ଧେ ନିମ୍ନଲିଖିତ କୌତୁକାବହ ଘଟଣା ଶୁଣିଛି । ଥରେ ଜଣେ ଭୋଜପୁରୀ ମହାଜନ ଆସି ଦିବ୍ୟସିଂହ ଭାଇନାଂକ ନିକଟରେ ପହଞ୍ଚି ପ୍ରାର୍ଥନା କଲେ ଯେ ସେ ତାଂକ ମହାଫିସ ହେବେ, ଦିବ୍ୟସିଂହ ଭାଇନା ସ୍ୱୀକୃତ ହେଲେ । ବନିସିରେ ଶେଉଳ ଧରିବାକୁ ହେଲେତ ପ୍ରଥମେ କେଉଣ୍ଡି ମାଛଟିଏ ଗୁନ୍ଥିବାକୁ ହେବ । ଅତଏବ ମହାଫିସ ଦରଖାସ୍ତ ଜଜ୍‌ସାହେବଙ୍କ କୋର୍ଟରେ ଦାଖଲ କରିବା

ପୂର୍ବରୁ ମହାଫିଜ ପଦ ପ୍ରତ୍ୟାଶ ବ୍ୟକ୍ତ ଦିବ୍ୟସିଂହ ଭାଇନାଙ୍କ ପାଇଁ ସ୍ୱତନ୍ତ୍ର ବସା ଭଡ଼ା କଲେ ଓ ହାତରୁ ପଇସା ଖରଚ କରି ତାଙ୍କୁ ଅସ୍ୱସରେ ରଖାଇଲେ ଓ ତାଙ୍କ ମନସ୍ତୁଷ୍ଟି ପାଇଁ ଗାଡ଼ି, ଘୋଡ଼ା, ଅତର, ଲୁଗାପଟା, ନର୍ତ୍ତକୀ ଆଦି ନିଜ ବ୍ୟୟରେ ବ୍ୟବସ୍ଥା କଲେ । ଏଣେ ଦିବ୍ୟ-ସିଂହ ଭାଇନା ନିଜେ ବଜାରକୁ ଯାଇ ବାବୁଗିରିର ବହୁମୂଲ୍ୟ ସାଜସଜ୍ଜା ଓ ପୋଷାକ ଓ ଶାଲ୍ ଦୋସାଲି ସବୁ ଦୋକାନଦାରମାନଙ୍କଠାରୁ ବାକିରେ ଆଣିଲେ ଓ ଦୋକାନଦାରମାନେ ମଧ୍ୟ ଟଙ୍କାକ ଜିନିଷ ତିନି ଟଂକା ମୂଲ୍ୟରେ ତାଙ୍କୁ ଦେଲେ ଓ ତହିଁର ମୂଲ୍ୟ ମହାଫିସବାବୁ ଦେବେ ବୋଲି ଦିବ୍ୟସିଂହ ଭାଇନା ଦୋକାନଦାରମାନଙ୍କୁ କହିଲେ । ଦୋକାନ-ଦାରମାନେ ଆସି ଭାବୀ ମହାଫିସଙ୍କୁ ମୂଲ୍ୟ ପାଇଁ ତାଗିଦ କଲେ । ମହାଫିସବାବୁ ଯେବେ ଦୋକାନଦାରଙ୍କୁ ସେ ଟଂକାତକ ନ ଦେବେ ତାହେଲେ ଦିବ୍ୟସିଂହ ଭାଇନା ଚିଡ଼ି ଯିବେ ଓ ଜଜ୍‌ସାହେବ ନାବାଳଗଙ୍କୁ ମତ ପଚାରିଲେ— ସେ ଯେବେ ମହାଫିସପଦ ପ୍ରାର୍ଥୀଙ୍କ ବିରୁଦ୍ଧରେ ପ୍ରତି-କୂଳ ମତ ପ୍ରକାଶ କରିବେ ତେବେ ପ୍ରାର୍ଥୀଙ୍କର ମହାଫିସ ହେବା ସ୍ୱପ୍ନ ନିଷ୍ଫଳ ହେବ । ଅତଏବ ପ୍ରାର୍ଥୀ ମହାଶୟ ଦୋକାନଦାରମାନଙ୍କୁ ଦିବ୍ୟସିଂହ ଭାଇନାଙ୍କ କ୍ରୀତ ଦ୍ରବ୍ୟମାନଙ୍କ ମୂଲ୍ୟ ବାଧ୍ୟ ହୋଇ ଦେଲେ । ଏହିପରି କରୁ କରୁ 'ମେଣ୍ଢା ଧୋଉ ଧୋଉ ନିଙ୍ଗାଳ' ହେବା ପରି ମହା-ଫିସଙ୍କ ପାଖେ ଥିବା ଧନ ସରିଗଲା ଓ ମହାଫିସ ବାଧ୍ୟ ହୋଇ ଋଣ କଲେ । ଆଶା କଲେ ଯେ ମହାଫିସ ମୁକରର ହୋଇ ଦିବ୍ୟସିଂହବାବୁଙ୍କ ହିଂସାରେ ପଡ଼ିବା ଜମିଦାରୀର ମାନେଜ୍‌ମେଣ୍ଟ ତାଙ୍କ ହାତକୁ ଆସିଗଲେ ଋଣତକ ଶୁଝି ଦେବେ । ଶେଷକୁ ମହାପଦ ପ୍ରାର୍ଥୀଙ୍କୁ ଆଉ ଋଣ ମିଳିଲା ନାହିଁ । ଏହି ଅବସ୍ଥାରେ ଦିବ୍ୟସିଂହ ଭାଇନାଙ୍କ ପାଖେ ଗୁଡ଼ିଏ କାବୁଲି ସଉଦାଗର ଆସି ପଶମ୍ମି ସାଲ ଦୋସାଲ ଆଦି ଦେଖାଇଲେ । ସେତେବେଳେ ଦିବ୍ୟସିଂହ ଭାଇନାଂକ ପାଖେ ୫।୭ ଜଣ ମୋସାହେବ ଆସି ଯୁଟିଥାନ୍ତି । ଦିବ୍ୟସିଂହ ଭାଇନା ତାଂକ ନିଜ ପାଇଁ ଓ ପାର୍ଶ୍ୱଚର-ମାନଂକ ପାଇଁ ହଜାରେ ଟଂକାର ସାଲ ଦୋସାଲ କିଣିଲେ ଓ ଟଂକା ମହାଫିସଂକଠାରୁ ନେବା ପାଇଁ କାବୁଲି ସଉଦାଗରମାନଙ୍କୁ କହିଲେ । ସେମାନେ ସାଲ ଦୋସାଲ ଆଦି ଦେଇ ଚାଲିଗଲେ ଓ ୧୫ ଦିନ ପୁଣି

ଟଂକା ମାଗିବାକୁ ଆସିଲେ । ଦିବ୍ୟସିଂହ ଭାଇନା ଉକ୍ତ କାବୁଲିମାନଙ୍କୁ କହି ଦେଲେ ଯେ ମହାଫିସ ବାବୁ ଟଂକା ଦେବେ । ସେତେବେଳକୁ ମହାଫିସ ବାବୁ ଜଜ୍‌କୋର୍ଟରେ ମହାଫିସ ହେବା ପାଇଁ ଦରଖାସ୍ତ ଦାଏର କରି ସାରି ଥାଆନ୍ତି । କିନ୍ତୁ ମହାଫିସ ମୁକରର ହୋଇ ନ ଥାନ୍ତି । କାରଣ ଓଡ଼ିଆ ବ୍ରାହ୍ମଣ ଜମିଦାର ପିଲାଂକର ଜଣେ ନିଃସମ୍ପର୍କ ଭେଜପୁଅ ମହାଜନ ମହାଫିସ ହେବା ବିରୁଦ୍ଧରେ ଦିବ୍ୟସିଂହଂକର ଜ୍ୟେଷ୍ଠଭ୍ରାତା । ରାଧାମାଧବ, ମଝିଆ ଭାଇ ଶ୍ୟାମସୁନ୍ଦର ଓ ମାତା ଆପତ୍ତି ଦରଖାସ୍ତମାନ ଦାଖଲ କରି ସେମାନେ ନିଜେ ନିଜେ ମହାଫିସ ହେବା ପାଇଁ ସ୍ୱତନ୍ତ୍ର ଦରଖାସ୍ତମାନ ଦାଖଲ୍ କଲେ । ଏଣେ ମହାଜନ ଦିବ୍ୟସିଂହ ଭାଇନାଂକ ପିଛୁ ହଜାର ହଜାର ଟଂକା ଖରଚ କରି ନିଜେ ଋଣଗ୍ରସ୍ତ ହୋଇ ସାରି-ଥାଆନ୍ତି ଓ ଜଜ୍‌କୋଟରେ ମକଦ୍ଦମା ଲଢ଼ିବାରେ ମଧ୍ୟ ଶହଶହ ଟଂକା ଖରଚ କରୁଥାଆନ୍ତି ଓ ନାବାଳକଙ୍କୁ ପ୍ରସନ୍ନ ରଖାଇବା ପାଇଁ ତାଙ୍କୁ ମନ ଯୋଗାଇବା ପାଇଁ ପ୍ରତିଦିନ ଦିବ୍ୟସିଂହ ଭାଇନାଙ୍କ ବସାରେ ନାଟତାମସା ଆଦିରେ ଟଙ୍କା ଖରଚ କରିବାରେ ଲାଗିଥାଆନ୍ତି । କାବୁଲିମାନଙ୍କ ଟଙ୍କା ତଲବରେ ମହାଫିସବାବୁ ବିରକ୍ତ ହୋଇ ଟଙ୍କା ଦେବେ ନାହିଁ ବୋଲି କହିଦେଲେ । ଏତିକି କହିଦେଇ ମହାଫିସବାବୁ ଯାଆନ୍ତି କୁଆଡ଼େ ? ହେଲିତ ମହାଫିସବାବୁଙ୍କ ଉପରେ କାବୁଲିମାନଙ୍କର ଠେଙ୍ଗାବୃଷ୍ଟି । କାବୁଲିମାନେ ମହାଫିସବାବୁଙ୍କୁ ଲହୁଲୁହାଣ କଲେ ଓ ମହାଫିସବାବୁ ଶେଷକୁ କାବୁଲିଙ୍କ ହାତରୁ ଆପଣା ପ୍ରାଣବଞ୍ଚାଇବା ପାଇଁ ଋଣକରି ଆଣି ସେମାନଙ୍କୁ ଟଙ୍କାତକ ଦେଲେ ଓ କହିଲେ "ମୋର ମହାଫିସ ହେବା ଆଉ ଲୋଡ଼ାନାହିଁ ।" "ଗଙ୍ଗା ସ୍ନାନ ଫଳ ପାଇଲିଣି ।" ଏହା କହି ଏକଦମ୍ କଟକରୁ ଅନିର୍ଦ୍ଦିଷ୍ଟ ରୂପେ ଅନ୍ତର୍ହିତ ହେଲେ ଓ ସେହିଦିନଠାରୁ ମହାଫିସବାବୁଙ୍କୁ ଆଉ କଟକରେ କେହି ଦେଖିନାହିଁ । ଏ ଘଟଣାପରେ ରାଧାମାଧବ ଆସି ଦିବ୍ୟସିଂହଙ୍କୁ ଘରକୁ ଡ଼ାକିନେଲେ ଓ ଦୁଇଭାଇଙ୍କର ମେଳ ହେଲା ଓ ରାଧାମାଧବ ପୂର୍ବପରି ମହାଫିସ ହେଲେ ।

ରାଧାମାଧବ ଦିବ୍ୟସିଂହଙ୍କ ମହାଫିସ ସ୍ୱରୂପ ଯେଉଁ ଦେଣାମାନ କରିଥିଲେ ଦିବ୍ୟସିଂହ ସାବାଳକ ହେଲା ପରେ ମହାଜନମାନେ

ଢବ୍ୟସିଂହଙ୍କ ନାମରେ ନାଲିସ କଲେ, କିନ୍ତୁ ରାଧାମାଧବ ମହାଫିସ ରୂପେ ଢବ୍ୟସିଂହଙ୍କ ପାଇଁ କରିଥିବା ଦେଣାରେ ଢବ୍ୟସିଂହ ଉପକୃତ ହୋଇ-ନାହାନ୍ତି-ଢବ୍ୟସିଂହ ଏହି ଆପତ୍ତି କରିବାରୁ ଉକ୍ତ ଦେଣା (ବହୁ ସହସ୍ର ଟଙ୍କା)ର ଦାୟିତ୍ୱରୁ ଢବ୍ୟସିଂହ ମୁକ୍ତ ପାଇଲେ ଓ ସେଗୁଡ଼ିକ ରାଧାମାଧବଂକ ଦେଣା ରୂପେ ଅଦାଲତଂକ ଦ୍ୱାରା ସ୍ଥିର ହେଲା ଓ ରାଧାମାଧବଂକ ନିଜର ଦେଣା ଓ ଢବ୍ୟସିଂହଂକ ପାଇଁ କୃତ ଦେଣା ଯୋଗୁ ରାଧାମାଧବଂକର ସମସ୍ତ ସମ୍ପତ୍ତି ନିଲାମ ହେଲା ଓ ରାଧାମାଧବ ଦାଣ୍ଡର ଫକୀର ହେଲେ । କଟକ ସହରର ନାବାଳକ ଜମିଦାର ବୋଲି ଢବ୍ୟସିଂହବାବୁ କଟକରେ ସୁପରିଖ୍ୟାତ ହୋଇଗଲେ । ଏଥିପାଇଁ ତାଂକର ସାବାଳଗି ହେଲେ ଅର୍ଥାତ୍ ୨୧ ବୟସ ପୂରିଲେ ସାନ୍ଦତମସୁକ କରିଦେବେ ବା ଦେଣା ଶୁଝିବେ । ଏହା କହି ମହାଜନମାନଂକଠାରୁ ସାବାଳଗ ହେବାର କର୍ଷେ ଦୁଇବର୍ଷ ପୂର୍ବରୁ ବହୁ ସହସ୍ର ଟଙ୍କା ଋଣ କଲେ । ସାବାଳଗ ହେବାରୁ ମହାଜନମାନେ ତାଙ୍କୁ ଟଙ୍କା ମାଗିବାରୁ ସେ ଟଙ୍କା ଦେଲେ ନାହିଁ ବା ସାନ୍ଦତମସୁକ କରିଦେଲେ ନାହିଁ । ମହାଜନମାନେ ଏକଯୋଗ ହୋଇ ପରାମର୍ଶ କରି ତାଙ୍କୁ ଅକଳରେ ପକାଇ ତାଂକଠାରୁ ଟଂକା ଆଦାୟ କରିବେ ବୋଲି ତାଂକ ନାମରେ ପ୍ରତାରଣା (Cheating) ଦଫାରେ ଏକାଧିକ ଫଉଜଦାରି ମକଦ୍ଦମା ଦାଏର କଲେ ଓ ଢବ୍ୟସିଂହ ପ୍ରଥମେ ହାଜର ନ ହେବାରୁ ତାଂକ ନାମରେ ଊଆରେଣ୍ଟ ବାହାରିଲା ଓ ଊଆରେଣ୍ଟରେ ଧରା ହୋଇ ସେ ଆସି ମାଜିଷ୍ଟ୍ରେଟ ଇଙ୍ଗଲିସ୍ ସାହେବଂକ କୋର୍ଟରେ ହାଜର ହେଲେ । ବୋଧହୁଏ ତାଂକରନାମ Inglis ଓ ସେ I.C.S ଅଫିସର ଥିଲେ । ଉକ୍ତ ସାହେବ ଏକ ଆଖିଆ ଥିଲେ ବା ଗୋଟିଏ ଆଖିରେ ପ୍ରଚକ୍ଷୁ ପିନ୍ଧୁଥିଲେ । ଢବ୍ୟସିଂହ ଗାଇନା ଊଆରେଣ୍ଟରେ ଧରା ହୋଇ ତାଂକ ମିସଲକୁ ଆସିଲେ । ସେତେବେଳେ ସେ ଅଳ୍ପବୟସ୍କ ଓ ରାଜପୁତ୍ର ଭଳି ତାଂକ ଚେହେରା ଦେଖାଯାଉଥାଏ । ସାହେବ ସେ କଟକର ଜମିଦାର ହେବା କଥା ଶୁଣି ତାଙ୍କୁ ଦେଖିବା ମାତ୍ରେ ଅତ୍ୟନ୍ତ ପ୍ରସନ୍ନ ହୋଇଗଲେ । ତାଙ୍କୁ ପୁଲିସ ଆଣି ଆସାମୀ ରୂପେ ଅଲଗଡ଼ାରେ ଠିଆ କରାଇବା ମାତ୍ରେ ସାହେବ ତାଙ୍କୁ ଡାକିଆଣି ମିସଲ ପାଖେ ଚଉକି ଦେଇ ବସାଇଲେ ଓ ଋଣର ପ୍ରକୃତ ହାଲ ତାଙ୍କୁ ପଚାରିଲେ । ଢବ୍ୟସିଂହ

ଭଇନା କହିଲେ ଯେ ମୁଁ କଟକର ଜମିଦାର ଥିବା ଓ ନାବାଳଗ ଥିବା ଜାଣି ଏ ମହାଜନମାନେ ମୋ ମାହାଫିସ ହେବା ଓ ମୋଠାରୁ ଅଯଥା ଲାଭ କରିବା ଆଶାରେ ମୋତେ ଶହେ ଶହ ଟଙ୍କା ଦେଇ ହଜାରେ ହଜାରେ ଟଙ୍କାର ଦଲିଲ ଲେଖାଇ ନେଇଥିଲେ ଓ ମୁଁ ସାବାଳଗ ହେବାରୁ ମୋତେ ଧମକାଇ ନାବାଳଗ ସମୟରେ ସେମାନେ ଯେଉଁ ଯଥା ମୂଳଧନ ପାଇଁ ଦଲିଲ ଲେଖାଇ ନେଇଥିଲେ ସେହି ଅସଲ ଓ ଚକ୍ରବୃଦ୍ଧି ସୁଧ ହିସାବକରି ତା ଉପରେ ମିଠେଇ ଖିଆ ଭରଣାକରି ମୋଠାରୁ ଦଲିଲମାନ ରେଜିଷ୍ଟରି କରାଇ ନେବାକୁ କହିଲେ । ମୁଁ ନାହିଁ କରିବାରୁ ମକଦ୍ଦମା କରିଛନ୍ତି । ସାହେବ ଏହା ଶୁଣି ତାଙ୍କଠାରୁ ଜବାନବନ୍ଦି ନେଇ ତାଙ୍କୁ ନିର୍ଦ୍ଦୋଷ ଖଲାସ କରିଦେଲେ ଓ ମହାଜନମାନଙ୍କ ଋଣ ମିଥ୍ୟା ଓ ତଞ୍ଚକ ଅଟେ ବୋଲି ରାୟ ଦେଇ ସେମାନଂକ ମକଦ୍ଦମାମାନ ଡିସ୍‌ମିସ୍ କଲେ । ଏ ପରିସ୍ଥିତିରେ ମହାଜନମାନଂକର ବହୁ ସହସ୍ର ଟଂକାର ଓ ଉକ୍ତ ଟଂକା ପାଇବାର ଆଶା ବୁଡ଼ିଗଲା । କଚେରି ଭାଙ୍ଗିବା ପରେ ସାହେବ ତାଙ୍କୁ ନିଜ ଟମ୍ ଟମ୍ ଗାଡ଼ିରେ ବସାଇ କୋଠିକୁ ନେଲେ ଓ ତାପରେ ତାଙ୍କୁଆଣି ତାଂକର ତୋଡ଼ାଣିଆମଠ (କଟକ ସହରର ପୂର୍ବ ପ୍ରାନ୍ତରେ ପୂର୍ବତ ନପିଲ୍ ଗ୍ରୀମ ରୋଡ଼ ପୂର୍ବ ପାଖରେ ଥିବା) ବସାରେ ଛାଡ଼ିଲେ ଓ ସେହିଦିନଠାରୁ ସାହେବ ପ୍ରାୟ ପ୍ରତିଦିନ କଚେରିରୁ ଫେରିବା ସମୟରେ ତାଂକର ବସାବାଟେ ତାଙ୍କୁ ସଙ୍ଗ ନେଇକରି କୋଠିକୁ ଯାଉଥାଆନ୍ତି ଓ ସମୟେ ସମୟେ ତାଙ୍କୁ ଋଣ ନ କରିବା ବିଷୟରେ ବହୁ ଉପଦେଶ ଦେଉଥାଆନ୍ତି । କିନ୍ତୁ ଏଥିରେ ସୁଦ୍ଧା ତାଙ୍କର ସୁବୁଦ୍ଧି ହେଲାନାହିଁ । ସାହେବ କେତେଦିନ ବାଦ୍ କଟକରୁ ବଦଳି ହୋଇଗଲେ ଓ ଦିବ୍ୟସିଂହ ଭଇନା ପୁଣି ଋଣ କରିବାରେ ଲାଗିଲେ । ଓ ଶେଷକୁ ଏହି ଋଣ ଯୋଗୁ ମହାଜନମାନଙ୍କ ଡ଼ିଗ୍ରୀରେ ଦିବ୍ୟସିଂହ ଭଇନାଙ୍କ ସବୁ ସମ୍ପତ୍ତି ନିଲାମ ହେଲା । ଦିନାକେତେ ସେ ଗୋଟିଏ ସଙ୍ଗୀତ ଆଖଡ଼ା କରି ନାଚୁଆ ଟୋକା ରଖି ନାନା ଅପବ୍ୟୟରେ ବହୁ ସହସ୍ର ଟଙ୍କା ଉଡ଼ାଇଲେ । ସୀତାର, ବେହେଲା, ଏସରାଜ, ପଖୋଜ, ମୃଦଙ୍ଗ, ଡୁଗୀତାବଲ, ହାରମୋନିୟମ, ବଂଶୀ, କ୍ଲାରିଓନେଟ୍, ଫ୍ଲୁଟ୍ ଆଦିରେ ସେ ଜଣେ ଉତ୍କୃଷ୍ଟ ବାଦକରୂପେ ଖ୍ୟାତି ଲାଭ କରିଥିଲେ ଓ ଯେତେବେଳେ ସେ ଦୁଃଖ

ପାଇଲେ ସେ ସମୟରେ କଟକର ପନ୍ତବଳାସୀ କେତେକ ଧନୀଙ୍କଠାରୁ ବହୁ ସମ୍ମାଦର ଓ ଅର୍ଥ ସାହାଯ୍ୟ ଲାଭ କରିଥିଲେ । ୧୯୨୨ ସାଲଠାରୁ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ (୧୯୩୫।୩୬) ? ସେ ମୋ ନିକଟରେ କଟକଠାରେ ରହୁଥିଲେ ଓ ମଝିରେ ମଝିରେ କେତେଦିନ ମାତ୍ର ଘରକୁ ଯାଉଥିଲେ । ସେ ମୋତେ ଓ ଶ୍ରୀମତୀ ପୀତାମ୍ବରୀ ଦେବୀଙ୍କୁ ହାରମୋନିୟମ ଶିଖାଇ-ଥିଲେ । ପ୍ରତିଦିନ ଭୋର ୪ଟା ବେଳେ ଉଠି ମୁଁ ଓ ସେ ଆମ ନିତ୍ୟକର୍ମ ସାରି ହାରମୋନିୟମ ଓ ବେହେଲା ସହ ଭଜନ ହୋଉଥିଲୁ । ଉକ୍ତ ବାର ତେର ବର୍ଷ ମୁଁ ତାଙ୍କ ସହବାସରେ ଆନନ୍ଦରେ ଓ ଶାନ୍ତିରେ ଜୀବନଯାପନ କରିଥିଲି ।

**ସାହେବଙ୍କ ଉଦାରତା** – ସାହେବମାନଙ୍କର ଗୋଟିଏ ଗୁଣ ମୁଁ ଆଜକୁ ୫୦ ବର୍ଷ ହେଲା ନିଜେ ଅଙ୍ଗେ ନିଭେଇଛି । ସେମାନଙ୍କପରି ଆଶ୍ରିତ ବତ୍ସଳ ଜାତି ମୁଁ ସଂସାରରେ ଦେଖିନାହିଁ । ସେମାନଙ୍କର ଯାହା ଉପରେ କରୁଣା ଦୃଷ୍ଟି ପଡ଼ିଛି ସେ ବ୍ୟକ୍ତି (ଅବଶ୍ୟ କିଛି ଗୁରୁତର ଅପରାଧ, ବା କୃତଘ୍ନତା ନ କଲେ) ଚିରକାଳ ସେମାନଙ୍କର କୃପାର ଭାଗୀ ହୁଏ । ମୋର ପରବର୍ତ୍ତୀ ଜୀବନର ଘଟଣାବଳୀ ବର୍ଣ୍ଣନା କରିବା ପ୍ରସଙ୍ଗରେ ମୁଁ ଅନେକଗୁଡ଼ିଏ ସ୍ୱନାମଧନ୍ୟ ମହାନୁଭବ ଶ୍ୱେତାଙ୍ଗ ବ୍ୟକ୍ତିଙ୍କ ନାମ ଓ ମୋ ପ୍ରତି କରୁଣାର ଉଦାହରଣ ଦେବି । ଇଞ୍ଜିଲିସ ସାହେବ କଟକରୁ ବଦଳି ହୋଇଗଲେ ଓ ବହୁବର୍ଷ ପରେ ସେ ପଦୋନ୍ନତି ଲାଭ କରି ବଙ୍ଗ ପ୍ରଦେଶର ଅବକାରୀ କମିସନର୍ ହେଲେ । ସେତେବେଳକୁ ବିହାର ଓଡ଼ିଶା ପ୍ରଦେଶର ସୃଷ୍ଟି ହୋଇ ନଥିଲା । ଅବକାରୀ କମିସନର୍ ରୂପେ ସେ ଗସ୍ତରେ କଟକ ଆସିଥିଲେ । ଏଠାରେ ପହଞ୍ଚି ସେ ଦିବ୍ୟସିଂହ ଭଇନାଙ୍କ ଖବର ବୁଝିଲେ ଓ ତାଙ୍କୁ ଦେଖିବାକୁ ଆଗ୍ରହ ପ୍ରକାଶ କଲେ । ସେତେବେଳକୁ ସେ ଅତି ଦରିଦ୍ର ଅବସ୍ଥାରେ ଗ୍ରାମରେ ଥାଆନ୍ତି । ଅବକାରୀ ବିଭାଗର ସ୍ଥାନୀୟ ହାକିମ ଦିବ୍ୟସିଂହ ଭଇନାଙ୍କ ପାଖ୍କୁ ଲୋକ ପଠାଇଲେ । ଦିବ୍ୟସିଂହ ଭଇନା କଟକ ଆସି ସାହେବଙ୍କ ସଙ୍ଗେ ଦେଖା କଲେ । ତାଙ୍କର ଆର୍ଥିକ ଦୁର୍ଗତି ଶୁଣି ସାହେବ ଅତି ଦୁଃଖିତ ହେଲେ ଓ ତାଙ୍କୁ ଆଶିବୃଷ୍ଟି ଆ ଧନ ମଧ୍ୟ ସାହାଯ୍ୟ କଲେ । 'ତାଙ୍କର କ ଉପକାର କରି

ପାରିବେ' ବୋଲି ସାହେବ ପଚାରିବାରୁ ହବ୍ୟସିଂହ ଭାଇନା କହିଲେ—"ମୋର ଗୋଟିଏ ପୁତୁରା ଅଛି, ଯେବେ ଆପଣ ତାକୁ ଦାନାପାଣି ଦିଅନ୍ତି ତେବେ ମୋର ଉପକାର ହେବ ।"

ସାହେବ ଯଦୁମଣିକୁ ଡକାଇଲେ ଓ ତାଙ୍କର ଉପଯୁକ୍ତ ଯୋଗ୍ୟତା ନ ଥିଲେ ମଧ୍ୟ ଅବକାଶ ଇନସ୍‌ପେକ୍ଟର ରୂପେ ମୁକରର୍ କଲେ । ଇଙ୍ଗ୍ଲିସ ସାହେବଙ୍କର ହବ୍ୟସିଂହ ଭାଇନାଙ୍କ ପ୍ରତି ଅଯାଚିତ କରୁଣା କଥା ମୁଁ ତାଙ୍କଠାରୁ ଶୁଣିଛି ।

**ଭାଇନାଂକ ବିବାହ ଶୋଭାଯାତ୍ରା**—ମୁଁ ଯେତେବେଳେ ଗ୍ରାମ ସ୍କୁଲରେ ପଢ଼ୁଥିଲି ସେତେବେଳେ ହବ୍ୟସିଂହ ଭାଇନାଙ୍କର ବିବାହ ହୋଇଥିଲା । ମୁଁ ପୂର୍ବେ କହିଅଛି ଯେ ଆମ୍ଭମାନଙ୍କ ପୂର୍ବପୁରୁଷମାନଙ୍କର ଆଦିମ ନିବାସ ଥିଲା ପୁରୀଜିଲ୍ଲା ବିହାଙ୍ଗ ଶାସନରେ । ଆମ୍ଭମାନଙ୍କ ବଂଶ ବିହାଙ୍ଗରୁ ଉଠିଆସି କଟକ ଜିଲ୍ଲାରେ ବାସ କରି ରହିବାରୁ ବିହାଙ୍ଗ ଶାସନର ତତ୍‌କାଳୀନ ରକ୍ଷଣଶୀଳତା ଯୋଗୁଁ ବିହାଙ୍ଗର ଶାସନୀ ବ୍ରାହ୍ମଣ-ମାନେ ଆମ୍ଭମାନଙ୍କ ବଂଶ ସଙ୍ଗେ ବନ୍ଧୁ ବାନ୍ଧିବାକୁ କୁଣ୍ଠିତ ହେଉଥିଲେ ଓ କଟକିଆ ବ୍ରାହ୍ମଣମାନଙ୍କୁ ସେମାନେ ହୀନ ବୋଲି ଜ୍ଞାନ କରୁଥିଲେ । କିନ୍ତୁ ଆମ ବଂଶ ବିହାଙ୍ଗ ଶାସନମାନଙ୍କ ସଙ୍ଗେ ବନ୍ଧୁ ବାନ୍ଧି ପୂର୍ବର ବଂଶ ମର୍ଯ୍ୟାଦାକୁ ଅକ୍ଷୁଣ୍ଣ ରଖିବାକୁ ଶ୍ରେୟସ୍କର ମଣୁଥିଲେ । ବିହାଙ୍ଗ ଶାସନର ସଙ୍ଗତିସମ୍ପନ୍ନ ଶାସନୀ ବ୍ରାହ୍ମଣ କଟକ ଉପନିବେଶୀ ସଙ୍ଗେ ବନ୍ଧୁ ବାନ୍ଧୁ ନ ଥିଲେ । ଅଗତ୍ୟା ଆମ କୋଠୀର ଯେଉଁ ପୁରୀଜିଲ୍ଲାବାସୀ ଶାସନୀ ବ୍ରାହ୍ମଣମାନେ ଗରିବ ହୋଇ ଯାଇଥିଲେ ସେହିମାନଙ୍କ ଘରେ କନ୍ୟା ଦେବାକୁ ଓ ସେମାନଙ୍କ ଘରୁ କନ୍ୟା ଆଣିବାକୁ ଆମ୍ଭମାନଙ୍କୁ ହେଉ-ଥିଲା । ହବ୍ୟସିଂହ ଭାଇନାଙ୍କ ସ୍ତ୍ରୀଙ୍କ ପିତୃଗୃହ ପୁରୀଜିଲ୍ଲାର ବିହାଙ୍ଗ ଶାସନରେ । ସେ କନ୍ୟା ଆସି ପ୍ରଥମେ ଆମ ଗ୍ରାମ ନିକଟବର୍ତ୍ତୀ ଅଥଙ୍ଗା କଚେରୀରେ ରହିଲେ ଓ ସେଠା କଚେରୀଠାରୁ ଆମ୍ଭ ଗ୍ରାମ ନିକଟବର୍ତ୍ତୀ ମାଛଗାଁ ସଡ଼କବାଟେ ହବ୍ୟସିଂହ ଭାଇନାଙ୍କ ଗ୍ରାମ ତିରିତୋଳକୁ ଗଲେ ଓ ସେଠାରେ ହବ୍ୟସିଂହ ଭାଇନାଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ବିହାଙ୍ଗ ଶାସନବାସୀଙ୍କ ସହିତ ବୈବାହିକ ସମ୍ପର୍କ ସ୍ଥାପନ ଏବେ ବନ୍ଦହୋଇ

ଯାଇଛି । ଧର୍ମସିଂହ ଭାଇନାଙ୍କ ବିବାହବେଳେ ମୁଁ ସିଦ୍ଧେଶ୍ୱରପୁର ସ୍କୁଲରେ ପଢ଼ୁଥିଲି । ବୋଧହୁଏ ବିବାହର କିଛିଦିନ ପରେ ଅଥବା କଟେଇଠାରୁ ମାଛଗାଁ ସଡ଼କବାଟେ ଗୋଟିଏ ଖୁବ୍ ଆଡ଼ମ୍ବରମୟ ଶୋଭା-ଯାତ୍ରା ଆମ୍ଭେମାନେ ଏକପଲିଙ୍ଗ ଦୁରସ୍ଥ ଗୃହରେ ଥାଇ ଦେଖିଛୁଁ ବୋଲି ମୋର ମନେ ଅଛି ।

ରାଧାମାଧବଙ୍କ ବଡ଼ଭାଇ ଶ୍ରୀ କୃଷ୍ଣଚନ୍ଦ୍ର ପାଟଯୋଷୀଙ୍କ ସଙ୍ଗେ ମୋ ପିତୃଦେବଙ୍କର ଖୁବ୍ ଘନିଷ୍ଠତା ଥିଲା । କୃଷ୍ଣଚନ୍ଦ୍ରଙ୍କ ପୁତ୍ର ଶ୍ରୀ ବ୍ରଜ-ସୁନ୍ଦର ପାଟଯୋଷୀ ମୋ ସମବୟସ୍କ ଥିଲେ ଓ ତାଙ୍କ ସଙ୍ଗେ ମୋର ଖୁବ୍ ଘନିଷ୍ଠତା ଥିଲି । ବ୍ରଜସୁନ୍ଦରଙ୍କ ଜ୍ୟେଷ୍ଠପୁତ୍ର ଶ୍ରୀ ଶତ୍ରୁମର୍ଦ୍ଦି ଆଚାର୍ଯ୍ୟ ଏମ୍. ଏ. ବି. ଏଲ ପୂର୍ବେ କଟକର ଗଭର୍ଣ୍ଣମେଣ୍ଟ ପ୍ଲିଡର ଥିଲେ । ସେ ଜଣେ ନିଷ୍ଠାପର ସାହିତ୍ୟସେବକ ଓ ଐତିହାସିକ ଗବେଷଣାକାରୀ । ସେ ଅନେକଗୁଡ଼ିଏ ଗ୍ରନ୍ଥ ରଚନା କରିଛନ୍ତି । ସେ ମୋର ନାତି ଅଟନ୍ତି ।

**କଟକରେ ଉଚ୍ଚଶିକ୍ଷା**—ବର୍ତ୍ତମାନ ମୁଁ କଟକକୁ ଉଚ୍ଚଶିକ୍ଷା ପାଇବା ପାଇଁ ୧୮୮୭ ଖ୍ରୀଷ୍ଟାବ୍ଦରେ ଆସିଲି ବୋଲି ପୂର୍ବେ ଲେଖିଅଛି । ମୁଁ ଭର୍ଣ୍ଣାକୁଲାର ପାଶକରି ଥିଲେହେଁ ମାଇନର ପରୀକ୍ଷା ଦେଇଥିଲି । ଅତଏବ ରେଭେନ୍ସା କଲିଜିଏଟ ସ୍କୁଲର ଶିକ୍ଷକମାନେ ମୋର ଇଂରାଜୀ ଜ୍ଞାନ ପରୀକ୍ଷା କରି ମୋତେ ଉକ୍ତ ସ୍କୁଲର ୩ୟ ଶ୍ରେଣୀ ବି-ସେକ୍ସନରେ ଗ୍ରହଣ କଲେ । ଶ୍ରୀ ଶଶିଭୂଷଣ ରାୟ, ଶ୍ରୀ ଶ୍ରୀକୃଷ୍ଣ ମହାପାତ୍ର, ଶ୍ରୀ ଶ୍ୟାମବଲ୍ଲଭ ଘୋଷ, ସ୍ୱର୍ଗତ ଶ୍ରୀ କୃଷ୍ଣଚନ୍ଦ୍ର ପାଲିତ, ସ୍ୱର୍ଗତ ଶ୍ରୀ ପ୍ରବୋଧଚନ୍ଦ୍ର ମୁଖର୍ଜୀ, ଶ୍ରୀମାନ୍ ଗୋବିନ୍ଦ ବେଉରା, ସ୍ୱର୍ଗତ ଗୋପାଳ ପ୍ରସାଦ ରାୟ, ରାୟବାହାଦୁର ନନ୍ଦକିଶୋର ଦାସଙ୍କ ପୁତ୍ର ସ୍ୱର୍ଗତ ଶ୍ରୀ ନବକିଶୋର ଦାସ, ସ୍ୱର୍ଗତ ଶ୍ରୀ ରାମଦୟାଲ ସିଂହ, ଶ୍ରୀ ଗଣେଶ୍ୱର ଶତପଥୀ, ଆଡ଼୍ଭୋକେଟ ଏମ୍. ସୁବାରାଓଙ୍କ ଶ୍ୱଶୁର ଶ୍ରୀ ରଘୁନାଥ ଆପ୍ପା, କୋଠପଦା ମହନ୍ତଙ୍କ ଚେଲା ଶ୍ରୀ ରଘୁନାଥ ପୁରୀ ମୋ ସହପାଠୀ ଥିଲେ । ସେତେବେଳେ ସ୍ୱର୍ଗତ ଶ୍ରୀ ରାମଦାସ ଚକ୍ରବର୍ତ୍ତୀ ରେଭେନ୍ସା କଲିଜିଏଟ ସ୍କୁଲର ହେଡ଼ମାଷ୍ଟର ଥିଲେ ଓ ସ୍ୱର୍ଗତ ଶ୍ରୀ ଲକ୍ଷ୍ମୀନାରାୟଣ ମିଶ୍ର (ବଙ୍ଗୀୟ) ଆମର କ୍ଲାସ ମାଷ୍ଟର ଥିଲେ ।

**ଜୁବିଲୀ ଉତ୍ସବ**—ମୋର ସ୍କୁଲରେ ପ୍ରବେଶ କରିବାର କେତେ ସମୟ ପରେ ୧୬।୨।୧୮୮୭ ତାରିଖରେ ସ୍ୱର୍ଗତା ମହାରାଣୀଙ୍କର ପଞ୍ଚାଶତ୍ତ୍ୱ ବର୍ଷରେ ଜୁବିଲି ଉତ୍ସବ ପାଳିତ ହେଲା । ଆମେ ସ୍କୁଲ ପିଲାମାନେ ରାଧାନାଥଙ୍କ ରଚିତ ନିମ୍ନଲିଖିତ ଗୀତଟି ବୋଲି ପତାକା ଉଡ଼ାଇ ଶିକ୍ଷକଙ୍କ ପଛେ ପଛେ ଶୋଭାଯାତ୍ରାରେ ବାହାରିଲୁ ।

ଆଜ ଆନନ୍ଦେ ମିଳଣ ଗାଅ ସରବେ
ପୂର୍ଣ୍ଣ ଚୌଦିଗ ଯଶ ଆନନ୍ଦ ରବେ
ମାତୃକୋଳ ପରିଏ, କି ରାଜା କି ପ୍ରଜାଏ
ଯା ରାଜ୍ୟେ ଛନ୍ତି ନିତ୍ୟ ନିରୁପଦ୍ରବେ
ସେ ମାତା ଭିକ୍ଟୋରିୟା, ଜଗତ ପୂଜନୀୟା
ପଞ୍ଚାଶ ବର୍ଷ ରାଜ୍ୟ କଲେ ଏ ଭବେ
ଜନନୀ ସେ ଆମ୍ଭର, ଅତ୍ୟନ୍ତ ପ୍ରିୟତର
ଧରି ନାହାନ୍ତି ମାନ ସିନା ଗରଭେ
କେ ଅଛି ମାତାସମ ଶିଶୁଙ୍କ ପ୍ରିୟତମ
ମାତ ମାତୃ ମଙ୍ଗଳ ମହୋତ୍ସବେ । ଇତ୍ୟାଦି

ଆମ୍ଭେମାନେ କମିସନର ସାହେବଙ୍କ ଲାଲବାଗ କୋଠିକୁ ଗଲୁଁ । ସେଠାରୁ କଲେକ୍ଟର ସାହେବଙ୍କ କୋଠିକି ଗଲୁଁ । ମୋର ମନେଅଛି ସେ ସମୟରେ ବୋଲ୍‌ଟନ ସାହେବ କଲେକ୍ଟର ଥିଲେ । ଆମ୍ଭେମାନେ ତାଙ୍କ କୋଠି ସମ୍ମୁଖରେ ଉପସ୍ଥିତ ହେବାରୁ ସାହେବ କୋଠିରୁ ବରଣ୍ଡାକୁ ବାହାରି ଆସିଲେ । ଆମ୍ଭେମାନେ ସଙ୍ଗୀତ ବୋଲୁଥାଉ, ସାହେବ ତାଙ୍କ ଟୋପି ଉପରେ ବାଆଁହାତ ଆଙ୍ଗୁଠିମାନଙ୍କ ଦ୍ୱାରା ସଙ୍ଗୀତର ତାଳ ଅନୁସାରେ ତାଳ ଦେଉଥାଆନ୍ତି । ତାଙ୍କ ବାମ ହାତର ଅନାମିକା ଆଙ୍ଗୁଠିରେ ଗୋଟିଏ ପଥରବସା ମୁଦି ଜକଜକ ହେଉଥାଏ । ସେଠାରୁ ଫେରି ଆମେମାନେ କଲେକ୍ଟରୀ ହତାକୁ ଆସିଲୁଁ । ସେଠାରେ ତମ୍ବୁ ଖଟା ହୋଇଥାଏ ଓ ତମ୍ବୁ ତଳେ କଲେକ୍ଟରୀର ଅମଲାମାନେ ପିଲାମାନଙ୍କୁ ଗୋଟିଏ ଗୋଟିଏ କାଠପତ୍ର ଦନାରେ ମିଠାଇ ଦେଲେ । ଆମ୍ଭେମାନେ ମିଠାଇଧରି ବସାକୁ ଫେରିଲୁଁ ।

**ଶିକ୍ଷାଯତ୍ନ**—ସ୍ୱର୍ଗତ ଶ୍ରୀ ଲକ୍ଷ୍ମୀନାରାୟଣ ମିଶ୍ର ବଙ୍ଗୀୟ ବ୍ରାହ୍ମଣ ଆମର କ୍ଲାସଟିଚର୍ ଥିଲେ । ସେ ଟିକିଏ ଆଡ଼ମ୍ବରପ୍ରିୟ ଥିଲେ । ଛାତ୍ରମାନଙ୍କ ଉପରେ ବେତ ପ୍ରହାର ତାଙ୍କର ଦୈନନ୍ଦିନ କର୍ମ ଥିଲା । ଇଂରାଜୀ ପଢ଼ାଇବା ବେଳରେ ବାକ୍ୟମାନଙ୍କ ଉପରେ ଖୁବ୍ ଜୋର ଦେଇ ପଢ଼ାଇଥିଲେ ଓ କୌଣସି ଛାତ୍ରକୁ ଅମନଯୋଗୀ ଦେଖିଲେ ହଠାତ୍ ପଢ଼ା ହେଉଥିବା ବିଷୟକ ପ୍ରଶ୍ନ ତାକୁ ପଚାରୁଥିଲେ ଓ ପଢ଼ା ସମୟରେ ସେ ଅନ୍ୟମନସ୍କ ଥିଲା ବୋଲି ଜଣାଗଲେ ତା' ଉପରେ ବେତାଘାତ କରୁଥିଲେ । ସେ ସମୟରେ ପ୍ରଶ୍ନମାନଙ୍କ ଉତ୍ତର ବିଷୟକ ଯୋଗ୍ୟତା ଅନୁସାରେ ଛାତ୍ରମାନେ ଶ୍ରେଣୀର ସ୍ଥାନ ଅଧିକାର କରୁଥିଲେ । କୌଣସି ଛାତ୍ର ଯେବେ ଠିକ୍ ଉତ୍ତର ଦେଇପାରୁନଥିଲା ତେବେ ଉତ୍ତର ଦେବା ପିଲା ତାକୁ ଟପି ଆଗରେ ବସୁଥିଲା । ଶ୍ରୀ ଶଶିଭୂଷଣରାୟ, ଶ୍ରୀ କୃଷ୍ଣ ମହାପାତ୍ର, ସ୍ୱର୍ଗତ ଗୋପାଳ ପ୍ରସାଦ ରାୟ ଓ ମୁଁ ଶ୍ରେଣୀରେ ପ୍ରଥମ ସ୍ଥାନ ବରାବର ଅଧିକାର କରୁଥିଲୁଁ । କ୍ୱଚିତ୍ ଆମ୍ଭମାନଙ୍କ ମଧ୍ୟରେ ସ୍ଥାନର ଅଦଳ ବଦଳ ଘଟୁଥିଲା । କିନ୍ତୁ ଆମ୍ଭେମାନେହିଁ ବାର୍ଷିକ ପୁରସ୍କାର ପାଇଥିଲୁଁ । ଅମରବାବୁ ନାମକ ଜଣେ ଶିକ୍ଷକ ଆମ୍ଭମାନଙ୍କୁ ଇତିହାସ ଭୂଗୋଳ ପଢ଼ାଉ ଥିଲେ । ସେ ମୁଣ୍ଡରେ ବହୁତ ତେଲ ଲଗାଉ ଥିଲେ ଓ ଅତ୍ୟନ୍ତ ପାନଖିଲ ପ୍ରିୟ ଥିଲେ । ଛାତ୍ରମାନେ ତାଙ୍କ ସୁଦୃଷ୍ଟି ଲାଭ କରିବା ପାଇଁ ତାଙ୍କୁ ଆଣି ପାନ ଖିଲମାନ ଦେଉଥିଲେ । ସିଦ୍ଧେଶ୍ୱର ସ୍କୁଲରେ ଆମ୍ଭେମାନେ ଓଡ଼ିଆ ସାହିତ୍ୟ ପଢିଥିଲୁଁ । ରେଭେନ୍‌ସା କଲିଜିଏଟ୍‌କୁ ଆସି ଆମ୍ଭେମାନେ ସଂସ୍କୃତ ପଢ଼ା ଆରମ୍ଭ କଲୁଁ । ସ୍କୁଲର ୧ମ ପଣ୍ଡିତ ସ୍ୱର୍ଗୀୟ ସ୍ୱର୍ଗତ ବିଶ୍ୱନାଥ ଶତପଥୀ ଆମ୍ଭମାନଙ୍କ ସଂସ୍କୃତଶିକ୍ଷକ ଥିଲେ । ତାଙ୍କ ପଢ଼ାଇବା ଘଣ୍ଟାରେ ପିଲାମାନେ ବେଶୀ ଗୋଳମାଳ କରୁଥିଲେ । ଶଶିଭୂଷଣ ରାୟ ପୂର୍ବେ ମିସନ୍ ହାଇସ୍କୁଲରେ ପଢୁଥିଲେ । ଏଠାରେ ସେ ମୋର ସହାଧ୍ୟାୟୀ ହେଲେ । ଶଶୀକୁ ଜଗିବା ପାଇଁ ପ୍ରତିଦିନ ଜଣେ ଭୃତ୍ୟ ସ୍କୁଲକୁ ଆସୁଥିଲା ।

ମୋର ସେତେବେଳେ ମୁଣ୍ଡରେ ଗୋଛାଏ ବାଳଥାଏ । ବଙ୍ଗାଳୀ ଓ ଲଣ୍ଡାପିଲା ମୋ ଚୁଟି ଟାଣନ୍ତି । କେଶ ପରିଷ୍କାର ନଥାଏ । ଏଥିପାଇଁ

ପିଲାଏ ଚଡ଼ାନ୍ତି ଯେ "ତୁ ମୁଣ୍ଡରେ ଗୁଡ଼ାଏ ଘିଅ ଲଗାଇଚୁ ।" ଆମେ ମଧ୍ୟ ବଙ୍ଗାଳୀଙ୍କୁ ଚଡାଉଁ —ବଙ୍ଗାଳୀ, ଟଙ୍ଗଟଙ୍ଗାଳ, ଖାଆନ୍ତି ସଡ଼ାମାଛ । ଶଶୀକୁ ଆମେ ଚଡ଼ାଉଁ 'ଛେଁଚଙ୍କ' ।

ଚତୁର୍ଥ ଶ୍ରେଣୀ 'କ' ସେକ୍ସନରୁ ମୁଁ ୩ ଶ୍ରେଣୀକୁ ଓ ତତ୍‌ପରେ ୨ୟ ଓ ୧ମ ଶ୍ରେଣୀକୁ ପ୍ରମୋଶନ୍ ପାଇଲି । ମୁଁ ପ୍ରତିବର୍ଷ ପ୍ରତି କ୍ଲାସରେ ୧ମ' ୨ୟ ବା ୩ୟ ସ୍ଥାନ ଅଧିକାର କରି ବହୁତ ବହି ପ୍ରାଇଜ୍ ପାଏ । ପ୍ରାଇଜ୍ ପାଇଥିବା ବହିମାନଙ୍କ ମଧ୍ୟରୁ 'Giftion's History' of the Rise and Fall of Roman Empire ଆଜ ପର୍ଯ୍ୟନ୍ତ ମୋ ପାଖେ ଅଛି । କଲେଜ ଛାତ୍ରାବାସରେ ସେ ବହିକୁ ଥରେ ଆମୂଳଚୂଳ ପାଠକରିଥିଲି ।

**ଚୈତନ ଚୁଟି**—କଲିକଏଟ୍‌ରେ ପାଠ ପଢ଼ିଲାବେଳେ ମୋ ମୁଣ୍ଡରେ ଥିବା ଗୋଛାଏ ବାଳରେ ମୁଁ ଗଣ୍ଠି ପକାଉଥାଏ । ଥରେ ନୂଆ କୋଟ୍ ପ୍ୟାଣ୍ଟ ପିନ୍ଧି ସ୍କୁଲକୁ ଯାଇଥିଲି । ମୁଣ୍ଡର ଗଣ୍ଠିକୁ ଟୋପି ତଳେ ଘୋଡ଼ାଇଲି । ସହପାଠୀମାନେ ମୁଣ୍ଡରୁ ଟୋପି କାଢିନେଇ ମୋତେ ଘରି ଥଟ୍ଟା କଲେ । ତା'ପରେ ମୁଁ ଆଉ ପେଣ୍ଟପିନ୍ଧି ସ୍କୁଲକୁ ଗଲିନାହିଁ । ପ୍ରତିବର୍ଷ ମୁଣ୍ଡପାକ ଅଧିକାର କରିଥିବା ପେଣ୍ଡାବାଳର ଅଧିକୃତ ସ୍ଥାନର ପରିଧି ଭଣ୍ଡାରୀ ପ୍ରସାଦରୁ ମୁଁ କମାଉଥାଏଁ । ଏହପରି କରୁକରୁ ଏଣ୍ଟ୍ରାନସ ପାସ କଲାବେଳକୁ ଲମ୍ବବାଳର ଅଧିକୃତ ସ୍ଥାନର ପରିଧିର ବ୍ୟାସ ୨ଇଞ୍ଚକୁ ଆସିଲା ଓ ବି.ଏ. ପାଶ କଲାବେଳକୁ ପେଣ୍ଡାବାଳ ଲୁପ୍ତହୋଇ ଚୈତନ ଚୂଟିକରେ ଅବସ୍ଥାନ କଲା । ଲମ୍ବବାଳର ଅଧିକୃତ ପରିଧି ପିତୃଦେବଙ୍କ ଅଜାଣତରେ ସଂକୁଚିତ ହେଉଥାଏ । ସେ ଅବସ୍ଥାରେ ମାସେ ଦୁଇମାସ ଖିଅର ନହେଲେ ରୁଡ଼ ବଢିଯାଏ ଓ ଲଣ୍ଡା ମନୁଷ୍ୟଙ୍କ ବଳପରି ଦେଖାଯାଏ । ବ୍ରାହ୍ମଣମାନେ ଆଗେ ମୁଣ୍ଡରେ ଲମ୍ବବାଳ ରଖୁଥିଲେ । କ୍ରମଶଃ ଏ ରକ୍ଷଣଶୀଳତା ଲୋପହେଲା । ଭିଙ୍ଗାରପୁର ଚୌଧୁରୀ ବଂଶର ୨।୩ଟି ପିଲାମଧ୍ୟ ସେତେବେଳେ ଆସି ଆମ ଉପର ତଳ ଶ୍ରେଣୀରେ ନାମ ଲେଖାଇଲେ । ସେମାନଙ୍କ ମୁଣ୍ଡରେ ପେଣ୍ଡାବାଳ ସମନ୍ୱିତ ଗଣ୍ଠି ଥାଏ । ସେମାନେ କୋଟ, ପ୍ୟାଣ୍ଟ ପିନ୍ଧି ସ୍କୁଲକୁ ଆସୁ-

ଥାଆନ୍ତି । ଟୋପି ଭିତରେ ଗଣ୍ଠି କୁ ଲୁଚାଇ ଥାଆନ୍ତି । ଶ୍ରୀ କୃତ୍ତିବାସ ଦାଶଙ୍କ ପୁଅ ବାମଦେବ ଚଉଧୁରୀ (ଯେ ପରେ ଡେପୁଟୀ ମାଜିଷ୍ଟ୍ରେଟ ହୋଇଥିଲେ) ଭଣ୍ଡାରୀ ସାହାଯ୍ୟରେ ଏହି ପେଣ୍ଡାବାଲର ଉଚ୍ଚତା ସଂକୋଚନ କାର୍ଯ୍ୟରେ ମଧ୍ୟବର୍ତ୍ତୀ ହୋଇଥିଲେ ।

**ତୃତୀୟ 'ବ'**—ମୁଁ ସବୁଦିନେ ଗଣିତରେ ଖଇତା । ତୃତୀୟ ଶ୍ରେଣୀରେ ଯେତେବେଳେ ବୀଜ ଗଣିତ ପଢ଼ା ହେଲା ସେତେବେଳେ ମୁଁ ତାହା ଆୟତ୍ତ କରିନପାରି 'ବୀଜଗଣିତ'ରେ ଫେଲ୍ ହେଉଥିଲି । ତା'ପରେ ଦେଖିଲି ଯେ ଯେଉଁମାନେ ମାଇନର ବା ଭର୍ଣ୍ଣାକୁଲର ପାଶ୍ କରି କଲିଜିଏଟରେ ୪ର୍ଥ ବା ୫ମ ଶ୍ରେଣୀରେ ଭରତି ହେଉଥିଲେ, ସେମାନଙ୍କର ପୂର୍ବରୁ ଓଡ଼ିଆ ଭାଷାର ବ୍ୟାକରଣରେ ମୂଳଦୁଆ ଦୃଢ଼ ହୋଇଥିବାରୁ ସେମାନେ ସଂସ୍କୃତରେ ଉନ୍ନତି କରୁଥିଲେ ଓ ଯେଉଁମାନେ ଭର୍ଣ୍ଣାକୁଲର ସ୍କୁଲରେ ନପଢି ହାଇସ୍କୁଲର ଲୋଷ୍ଟ କ୍ଲାସରୁ ପଢ଼ା ଆରମ୍ଭ କରୁଥିଲେ, ସେମାନେ ଆମ ତୁଳନାରେ ସଂସ୍କୃତରେ ଭଲଫଳ ଦେଖାଇ ପାରୁନଥିଲେ । ମୋର ଆଉ ଗୋଟିଏ ବିଶେଷତ୍ୱ ଥିଲାଯେ ମୁଁ ସିଦ୍ଧେଶ୍ୱରପୁର ସ୍କୁଲରେ ସ୍ୱର୍ଗତ ଶ୍ରୀ ବାଞ୍ଛାନିଧି ମହାନ୍ତି ହେଡ୍‌ମାଷ୍ଟରଙ୍କ ପାଖେ ଇଂରାଜୀ **A B C** ଆରମ୍ଭ କରି **minor** ପର୍ଯ୍ୟନ୍ତ ପଢିଥିଲି ଓ ମୋର ଇଂରାଜୀରେ ଭଲ ଦଖଲ ଥିବାରୁ ମୁଁ ବରାବର କ୍ଲାସରେ ସେ ବିଷୟରେ ଉଚ୍ଚସ୍ଥାନ ଅଧିକାର କରୁଥିଲି । ମୋର ଇଂରାଜୀରେ ଯେଉଁ ଜ୍ଞାନ ଲାଭ ହୋଇଥିଲା ତାହା ସାଧାରଣ ମାଇନର ପଢ଼ୁଆଙ୍କ ତୁଳନାରେ ବେଶୀ ଥିଲା । କିନ୍ତୁ ତରବର କରି ଏକା ଟଣାରେ ଉତ୍ତରମାନ ଲେଖିବା ଓ ଯାହା ଲେଖିଥିଲି ତାହା **Revise** ନକରିବା ମୋର ପ୍ରଧାନ ଦୋଷ ଥିବାରୁ ମୁଁ ମାଇନର ଫେଲ ହେଲି । ତଥାପି କଲିଜିଏଟ୍ ସ୍କୁଲରେ ଭର୍ତ୍ତିହେବା ବେଳେ ଇଂରାଜୀ ଜାଣିଥିବା ଛାତ୍ରଙ୍କର ଯେଉଁ ପ୍ରାଥମିକ ପରୀକ୍ଷା ହୋଇଥିଲା ସେଥିରେ ପରୀକ୍ଷକ ଦେଖିଲେ ଯେ ମାଇନର ପାଶ କରିଥିବା ଛାତ୍ରମାନଙ୍କ ଅପେକ୍ଷା ମୋର ଇଂରାଜୀ ଜ୍ଞାନ କମ୍ ନୁହେଁ । ଏଥିପାଇଁ ମୋତେ ୪ର୍ଥ ଶ୍ରେଣୀରେ ନିଆ ନହୋଇ ତୃତୀୟ 'ବ'ରେ ନିଆହେଲା ଓ ମାଇନର ଫେଲ ହୋଇଥିବା ପିଲାମାନଙ୍କୁ ୪ର୍ଥ ଶ୍ରେଣୀରେ ନିଆହେଲା ।

ଂସ୍ଥ 'ବି'ରେ ପଢ଼ୁଥିବାବେଳେ ମୁଁ ବାସୁଦେବ ମହାପାତ୍ରଙ୍କ ବସା ସିନ୍ଧୁକରୁ ଗୋଟିଏ କାଚନଳ ଚୋରି କରିଥିଲି । ସେତେବେଳେ ମହାପାତ୍ରେ କଲେଜରେ ପଢ଼ୁଥିଲେ । ମୁଁ ଲୁଚି ଲୁଚି ଯାଇ ସିନ୍ଧୁକ ଫିଟାଇ କୌତୂହଳ ବଶତଃ ନଳଟି ନେଇ ଆସିଲି ଓ ନଳ ଦେଖି କଲେଜକୁ ବୁଲିଯାଇଥିଲି । କଲେଜ ଚପରାସି କୁଶା ବେହେରା ମୋତେ ଧରିବାରୁ ମୁଁ ଡ଼ରରେ କହିଦେଲି—"ନଳକୁ କଲେଜରୁ ଆଣିଛି ।"

**ଶ୍ରୀ ଶଶୀଭୂଷଣ ରାୟ**— କଲେଜଏଟ୍ ସ୍କୁଲର ରାମଦାସ ହେଡ଼ମାଷ୍ଟର ଚକ୍ରବର୍ତ୍ତୀଙ୍କ ସଙ୍ଗେ ରାଧାନାଥଙ୍କର ବନ୍ଧୁତା ଥିଲା ଓ ସେମାନେ ପରସ୍ପର ଦେଖା କରିବାକୁ ବସାକୁ ଯିବାଆସିବା କରୁଥାଆନ୍ତି । ଏ ଘଟଣାର କେତେକାଳ ପୂର୍ବରୁ ଥରେ ରାମଦାସବାବୁ ରାଧାନାଥଙ୍କ ବସାକୁ ଯାଇ-ଥିଲେ ଓ କଥା ପ୍ରସଙ୍ଗରେ ଟେବୁଲ ଉପରୁ ପୁସ୍ତକମାନ ଅବୋଧ ଭାବରେ ଅନ୍ତର୍ହିତ ହେଉଥିବା କଥା ରାଧାନାଥ ରାମଦାସବାବୁଙ୍କୁ କହିଥିଲେ । ଶ୍ରୀକୃଷ୍ଣଙ୍କଠାରୁ ରାମଦାସବାବୁ ଏକଥା ଶୁଣି ଶଶୀଙ୍କ ପ୍ରଦତ୍ତ ଉପଢୌକନ ପୁସ୍ତକଗୁଡ଼ିକ ଲାଗି ଆମ୍ଭ ସମସ୍ତଙ୍କୁ ତଲବ କଲେ ଓ ଆମ୍ଭେମାନେ ସେଗୁଡ଼ିକ ଆଣି ଦାଖଲ କଲୁ । ରାମଦାସବାବୁଙ୍କ ଅଫିସ ଟେବୁଲ ଉପରେ ସେଗୁଡ଼ିକ ସ୍ତୂପୀକୃତ ହୋଇ ରହିଲା । ଶଶୀବାବୁ ମଧ୍ୟ ସେଗୁଡ଼ିକ ଘରୁ ଆଣି ଆମ୍ଭ-ମାନଙ୍କୁ ଦେଇଛନ୍ତି ବୋଲି ସ୍ୱୀକାର କଲେ । ତତପରେ ରାମଦାସବାବୁ ରାଧାନାଥଙ୍କୁ ଡକାଇଲେ । ସେ ଆସି ଉପସ୍ଥିତ ହେଲେ । ଦେଖାଗଲା ଯେ ପ୍ରାପ୍ତ ସମସ୍ତ ପୁସ୍ତକ ଆମ୍ଭମାନଙ୍କ ଉପଯୋଗୀ ନୁହେଁ (ଯଥା ବୀଜ ଗଣିତ, ପାଟୀ ଗଣିତ, ଇତିହାସ, ବିଜ୍ଞାନ, ଭୂଗୋଳ) । ରାଧାନାଥବାବୁ ଦେଖି କହିଲେ "ଯେତେବେଳେ ବିଦ୍ୟା ପରୀକ୍ଷା କରି ମଧୁ (ଶଶୀବାବୁଙ୍କ ଡାକ ନାମ) ସହପାଠୀମାନଙ୍କୁ ଉପହାର ଦେଇଛି । ମୁଁ ସେ ମାନ ଫେରାଇ ନେବି ନାହିଁ ।" ଅତଏବ ସେ ପୁସ୍ତକମାନ ଆମ୍ଭେମାନେ ଫେରି ପାଇଲୁ । ଆମ୍ଭମାନଙ୍କ ଉପସ୍ଥିତିରେ ରାଧାନାଥ ଶଶୀକୁ କହିଲେ "ମଧୁ ! ଯେବେ ସହପାଠୀଙ୍କୁ ପୁସ୍ତକ ଉପହାର ଦେବାକୁ ଇଚ୍ଛା କରିବ, ତେବେ ମତେ କହିଲେ ମୁଁ ବାଣ୍ଟି କରି ପୁସ୍ତକମାନ ଦେବି ।"

**ଇସ୍କୁଲ ଜୀବନର କେତୋଟି ସ୍ମୃତି**—ପରବର୍ତ୍ତୀ କ୍ଲାସ-ମାନଙ୍କୁ ପ୍ରମୋଶନ ପାଇବାବେଳେ ଶ୍ରୀ ଗୌରଚନ୍ଦ୍ର ମୁଖାର୍ଜି, ଶ୍ରୀ ଗଣପତି

ଦାସ, ଶ୍ରୀ ନନ୍ଦଲାଲ ଦାସ, ପଣ୍ଡିତ କୃତ୍ତିବାସ ଶତପଥୀ ଆମର ଶିକ୍ଷକ ଥିଲେ; ସେକେଣ୍ଡକ୍ଲାସ ଶ୍ରୀ ରାଜେନ୍ଦ୍ରବାବୁ ନାମକ ଜଣେ ବଙ୍ଗୀୟ ସ୍କୁଲର ଦ୍ୱିତୀୟ ଶିକ୍ଷକ ରୂପେ ଆମ୍ଭମାନଙ୍କୁ ପଢ଼ାଉ ଥିଲେ । ସେ ତାଙ୍କର ଆଙ୍ଗୁଠି-ମାନଙ୍କୁ ବଙ୍କା କରି ଦଣ୍ଡାର୍ହ ଛାତ୍ରମାନଙ୍କ ମୁଣ୍ଡର ଖପୁରୀରେ ଆଘାତ କରୁଥିଲେ ଓ ତାହା ଭାରି କାଟୁଥିଲା । ଆଜି ପର୍ଯ୍ୟନ୍ତ ମଧ୍ୟ ସେ ମାଡ଼ର ସ୍ମୃତି ଓ ତାଙ୍କର ସର୍ବଦା ଅପ୍ରସନ୍ନ ଚେହେରା ମୋର ମନେ ଅଛି । କିନ୍ତୁ ରାମଦାସବାବୁ ଏଣ୍ଟ୍ରାନ୍‌ସ କ୍ଲାସରେ ଆମ୍ଭମାନଙ୍କୁ ବେଶି ପଢ଼ାଉଥିଲେ । Row and webb Sahebଙ୍କ 'Mints on the study of English' ବ୍ୟାକରଣ ପୁସ୍ତକ 'Macmordies Composition' ପୁସ୍ତକ ଓ କଲିକତା ବିଶ୍ୱବିଦ୍ୟାଳୟଙ୍କ ପ୍ରକାଶିତ ଇଂରାଜୀ ପ୍ରବନ୍ଧମାନଙ୍କ 'Selections from English Entrance Course for 1891' ଆମ୍ଭେ ୨ୟ ଶ୍ରେଣୀରୁ ଆରମ୍ଭ କରି ପଢ଼ୁଥିଲୁ । ରାମଦାସବାବୁ କହୁଥିଲେ "If you want and learn English attend to what I say" ସେ ଶାନ୍ତ ବାଳକମାନଙ୍କ ପାଇଁ ସ୍ନେହର ଅବତାର, ଦୁଷ୍ଟ ଛାତ୍ରଙ୍କ ଚକ୍ଷୁରେ ଯମ ଥିଲେ । ଆମ୍ଭେମାନେ ସ୍କୁଲରେ ପଢ଼ୁଥିବାବେଳେ କଲେଜ ଏବଂ ସ୍କୁଲ ରେଭେନ୍‌ସା କଲେଜ ସଂଲଗ୍ନ ଥିଲା ଓ କଲେଜ ପ୍ରିନ୍‌ସିପାଲ ଏଜର୍ ସାହେବ (ବୋଧହୁଏ S. H. Agu) ଶାନ୍ତ ପ୍ରକୃତିର ବ୍ୟକ୍ତି ଥିଲେ । ଥରେ ଶିକ୍ଷା ବିଭାଗର ଡାଇରେକ୍ଟର କ୍ରଫ୍‌ଟ ସାହେବ କଲେଜ ପରି-ଦର୍ଶନ କରିବାକୁ ଆସିଥିଲେ । ସେ ସ୍କୁଲର କ୍ଲାସମାନଙ୍କୁ କେବଳ ଆଖି ପକାଇ ଚାଲିଗଲେ ଓ ସ୍କୁଲ, କଲେଜ ଦେଖି ସାରି ବାହାରିଯିବା ବେଳେ ଏଜର ସାହେବ ଓ କ୍ରଫ୍‌ଟ ସାହେବ ସମାନସ୍କନ୍ଧ ଭାବରେ ହସି ଖୁସି କଥାବାର୍ତ୍ତା କରି ସାଙ୍ଗ ହୋଇଗଲେ । ସେ ସମୟରେ କଲେଜରେ ବି.ଏ. ପର୍ଯ୍ୟନ୍ତ ୪ଟି ମାତ୍ର କ୍ଲାସ ଥାଏ । ପ୍ରତି କ୍ଲାସରେ ଛାତ୍ର ସଂଖ୍ୟା ଚାରିଠାରୁ ଆଠ ପର୍ଯ୍ୟନ୍ତ ଥିଲା । ଲବୋରେଟରୀର ସରଞ୍ଜାମମାନ ୨ଟି କୋଠରୀରେ ରଖାଯାଉଥିଲା । ନାଲିପରଦା ବିଶିଷ୍ଟ ଏକ କାଚ ଆଲମାରୀରେ ମନୁଷ୍ୟର କଙ୍କାଳ ଟଙ୍ଗା ହୋଇ ଥିଲା, ଆଉ ୨।୩ଟି ଆଲମାରିରେ ଗୁଡ଼ାଏ ବୋତଲ ରଖା ହୋଇଥିଲା । ଆମ୍ଭେମାନେ ଇସ୍କୁଲରେ ପଢିଲାବେଳେ ଶ୍ରୀ ରାଜ-କିଶୋର ଦାସ (ପରେ ରାୟବାହାଦୁର), ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ

(ପରେ ରାୟବାହାଦୁର), ଶ୍ରୀ ବନବହାରୀ ପାଲିତ, ଶ୍ରୀ ମାୟାଧର ଦାସ, ଶ୍ରୀ ଗୋପାଳବଲ୍ଲଭ ଦାସ କଲେଜର ଶିକ୍ଷକ ଥିଲେ । ପ୍ରଫେସରମାନଙ୍କ ମଧ୍ୟରେ ସଂସ୍କୃତରେ ଶ୍ରୀ ରାମପ୍ରସନ୍ନ ମୁଖୋପାଧ୍ୟାୟ ଇତିହାସରେ ଶ୍ରୀ ଅବିନାଶ ଚନ୍ଦ୍ର ଚାଟାର୍ଜୀଙ୍କ କଥା ମୋର ମନେ ଅଛି । ରାମପ୍ରସନ୍ନ-ବାବୁଙ୍କର ଗୋଟିଏ ପୁସ୍ତକଦୋକାନ ଥିଲା ଓ କଲେଜ ସମୟ ପରେ ସେ ସେଠାରେ ପୁସ୍ତକ ବିକ୍ରୀ କରୁଥିଲେ । ଅବିନାଶବାବୁଙ୍କ କୋଠା ଆମ ବସା ନିକଟରେ ଥିଲା ।

ସେ ସମୟରେ କଲିଜିଏଟ୍ ସ୍କୁଲ ଓ କଲେଜ ଏକ ସ୍ଥାନରେ ହେଉଥିଲା । ୫।୬ଟି ପକ୍କା କୋଠରୀରେ କଲେଜର କ୍ଲାସ ହେଉଥିଲା । ସନ୍ଧ୍ୟାବେଳେ ଓ ସକାଳେ କଲେଜ ଛୁଟିପରେ କଲେଜ ପୂର୍ବରୁ 'ଲ' ( Class ) ସେହିଠାରେ ହେଉଥିଲା । ଆମେ ସ୍କୁଲ ପଢିବା ସମୟରେ 'ଲ' କ୍ଲାସରେ ମିଷ୍ଟର ଦାସ, ପରେ ରାୟବାହାଦୁର ଯୋଗେଶଚନ୍ଦ୍ର ଲ-ଲେକଚରର ଥିଲେ । ସ୍ୱର୍ଗତ ବିଶ୍ୱନାଥ ସିଂହ ଆଡ୍‌ଭୋକେଟ୍ କଲେଜରେ ପଢୁଥାଆନ୍ତି ଓ ଲଣ୍ଡା ଦେଉଳ ସାମନାରେ ଥିବା ଆମ ବସା ନିକଟସ୍ଥ ବୋର୍ଡ଼ିଂରେ ସେ ରହୁଥାଆନ୍ତି— ସେ ମୋର ପ୍ରାଇଭେଟ ଟିଉଟର ଥିଲେ ଓ ମୁଁ ଦୁଇଓଳି ତାଙ୍କ ବସାରେ ଯାଇ ପଢୁଥିଲି । ମୁଁ ସେକେଣ୍ଡ କ୍ଲାସକୁ ପ୍ରମୋଶନ ପାଇବାପରେ ସେ ଓକିଲ ଓ ସାନଭାଇ ସ୍ୱର୍ଗତ କରୁଣାବନ୍ଧୁ ସିଂହ ମୋର ପ୍ରାଇଭେଟ ଟିଉଟର ହେଲେ । ଆମେ ସ୍କୁଲରେ ପଢିବା ସମୟରେ ବଙ୍ଗାଳୀ-ଓଡ଼ିଆ ବିବାଦର ଗନ୍ଧ ସମ୍ବନ୍ଧ ନଥିଲା । ବିଶ୍ୱନାଥବାବୁ ମୋତେ ପୁତ୍ରବତ୍ ସ୍ନେହ କରୁଥିଲେ । ଆମ ବସା ନିକଟରେ ବାବୁ ରାଧା ବିନୋଦ ବୋଷ ଜମିଦାର ଓ ତାଙ୍କ ମାମୁଁ କେଦାର ନାଥ ମିତ୍ର ଆମମାନଙ୍କର ଯତ୍ନ ନେଉଥିଲେ । କେଦାରବାବୁଙ୍କ ଉପରେ ମୋର ଅଭିଭାବକତ୍ୱ ପିତୃଦେବ ଅର୍ପଣ କରିଥିଲେ । ସେ ସମୟରେ ଆମ ବସାରେ ସ୍ୱର୍ଗତ ହରେକୃଷ୍ଣ ମିଶ୍ର (ମୋର କୁଟୁମ୍ବୀ କକେଇ ଶ୍ରୀ ଚକ୍ରଧର୍ମ୍ମ ଜନାର୍ଦ୍ଦନ ପ୍ରହରାଜଙ୍କ ଭଣଜା— ସେ ପରେ ଇନ୍‌କମ୍‌ଟାକ୍‌ସ ଅଫିସର ହୋଇଥିଲେ) ରହି ସ୍କୁଲର ଉଚ୍ଚତର ଶ୍ରେଣୀରେ ଓ କଲେଜରେ ପଢୁଥିଲେ । ସ୍ୱର୍ଗତ ପଣ୍ଡିତ ମଧୁସୂଦନ ରାଓ (ଦର୍ପଣ

ରାଜବାଟୀର ପୌରାଣିକ) ଆମ ବସା ମଧ୍ୟରେ ରହୁଥିଲେ । ମୁଁ ଓ ସ୍ୱର୍ଗତ ରାୟସାହେବ କୃଷ୍ଣଚନ୍ଦ୍ର ନନ୍ଦ ପିଲାଦିନେ କୁମାରପୂର୍ଣ୍ଣିମା ଦିନ 'ରନ୍ଧ' ଖିଆ ଖୋଇ ହୋଇ 'ରନ୍ଧ' ବସିଥିଲୁଁ । ଆମେ ଦୁହେଁ ଅତି ସାଙ୍ଗ ଥିଲୁ ଓ ରାଧାବିନୋଦ ବାବୁଙ୍କ ଘରକୁ ଯାଇ ଇଂରାଜୀ ସାହିତ୍ୟ ପାଠ୍ୟ ପୁସ୍ତକକୁ ଆୟତ୍ତ କରିବାରେ ସେ ଆମ୍ଭକୁ ଖୁବ୍ ସାହାଯ୍ୟ କରୁଥିଲେ । ରାଧାବିନୋଦଙ୍କ ଅନ୍ଦର ମହଲ ଆମ୍ଭଦୁହିଁଙ୍କୁ ଅବାରିତ ଦ୍ୱାର ଥିଲା । ପ୍ରଥମେ ମୁଁ କଟକ ଆସିବାର କେତେଦିନପରେ କୃଷ୍ଣଚନ୍ଦ୍ର ନନ୍ଦ ମହାସିଂହପୁର ମାଇନର ଇସ୍କୁଲରୁ ପାସ୍‌କରି କଟକ ପଢ଼ିବାକୁ ଆସିଲେ । ସେତେବେଳେ ମୋ ବୟସ ୧୧ ଓ କୃଷ୍ଣଚନ୍ଦ୍ରଙ୍କ ବୟସ ୧୨ ବର୍ଷ । ଶ୍ୟାମସୁନ୍ଦର ନନ୍ଦ ଏଫ୍.ଏ. ପାସକରି ନର୍ମାଲ ଇସ୍କୁଲରେ କେତେଦିନ ଶିକ୍ଷକତା କଲେ ଓ କଟକରେ ପଢ଼ିବା ପାଇଁ ରହୁଥିବା ନରସିଂହପୁର ଟ୍ରିବ୍ୟୁଟେରୀଷ୍ଟେଟର ନାବାଳକ ରାଜାଙ୍କ ଗାର୍ଜିନ ଓ ଗୃହ ଶିକ୍ଷକ ଥିଲେ (ସେତେବେଳେ ଓଡ଼ିଶା ଗଡ଼ଜାତମାନଙ୍କର ଫିଉଡ଼େଟରୀ ଷ୍ଟେଟ୍‌ସ ଥିବା ଓଡ଼ିଶା ଷ୍ଟେଟ୍‌ସ ନାମକରଣ ହୋଇ ନଥାଏ ଓ ରାୟପୁରରେ ଓଡ଼ିଶା ଗଡ଼ଜାତ ରାଜକୁମାରମାନଙ୍କ ବିଦ୍ୟା ଶିକ୍ଷା ପାଇଁ ରାଜକୁମାର କଲେଜ ପ୍ରତିଷ୍ଠିତ ହୋଇ ନ ଥାଏ) । ଶ୍ୟାମସୁନ୍ଦର ଉକ୍ତ ରାଜାଙ୍କ କୋଠିରେ ରହିଲେ । କୃଷ୍ଣଚନ୍ଦ୍ର ନନ୍ଦଙ୍କ ସହ ମୁଁ ଏଣ୍ଟ୍ରାନ୍‌ସ ପାସ୍ କଲି ଓ ଆମେ ଦୁହେଁ ଏଫ୍. ଏ. ପଢ଼ିଲୁଁ । ତତ୍‌ପରେ କୃଷ୍ଣଚନ୍ଦ୍ର ଦର୍ପଣ ଇଷ୍ଟେଟ୍‌ର ରାଜ କର୍ମରେ ନିଯୁକ୍ତ ହେଲେ । ଶ୍ୟାମସୁନ୍ଦର ନନ୍ଦଙ୍କର ଗୃହକର୍ତ୍ତା ହେବା ପରେ ମଧୁସୂଦନ ନନ୍ଦ ଆମ ବସା ଛାଡ଼ି ବୈଦ୍ୟନାଥ ପଣ୍ଡିତଙ୍କର ଟାଉନ ଥାନା ସଂଲଗ୍ନ କୋଠାରେ ବସା କରି ରହିଲେ । ଆମେ ସ୍କୁଲରେ ପଢ଼ିବା ବେଳେ ପ୍ରଫେସର ଅବିନାଶବାବୁ କନିକା ରାଜବାଟୀରେ ତତ୍ତ୍ୱାବଧାୟକ ଓ ତତ୍‌କାଳୀନ ନାବାଳକ ରାଜା ନୃପେନ୍ଦ୍ର ନାରାୟଣ ଭଞ୍ଜଙ୍କର ଗାର୍ଜିନ ଥିଲେ । ଲଣ୍ଡ୍ରାଦେଉଳର ଦକ୍ଷିଣରେ ଆମ ବସା ଥିଲା ଓ ମଝିରେ ଗୋଟିଏ ଗଳି ଥିଲା । ସେ ଗଳି ବର୍ତ୍ତମାନ ଅଛି, କିନ୍ତୁ ଆମ ବସା ଓ ଗଳିର ଦକ୍ଷିଣରେ ଥିବା ସମସ୍ତ ଜମି ଓ ଘର ଆଦିକୁ ସରକାର କିଣିନେଇ ସେଠାରେ 'କାଠଯୋଡ଼ି ହଷ୍ଟେଲ' ନିର୍ମାଣ କରିଥିଲେ, ବର୍ତ୍ତମାନ (୧୯୪୨) ସେ ହଷ୍ଟେଲରେ ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କର ଶିକ୍ଷା,

ସ୍ୱାସ୍ଥ୍ୟ, ବାବୁଙ୍କ ମିସ୍ତ୍ରୀ ଆଦି ଝଙ୍କାରର ହେତୁ ଅପ୍ରିୟମାନ ହେଉଅଛୁ । ଲଣ୍ଡା ହେଉଲ ହତାର ଉତ୍ତରକୁ ଅବିନାଶ ବାବୁଙ୍କ ହତା ଲଗିଥିଲ ଓ ତହିଁର ମଦର ଫାଟକ ସାବକ କଲେଜ ଲେନକୁ ମେଲୁଥିଲ । ଫାଟକ ପାଖେ କନିକା ରାଜବାଟୀର ବଡ ଓ୍ୱେଲର ଯୋଡ଼ ଘୋଡ଼ା ଲଗା ବଗି ଅନେକ ସମୟରେ ଠିଆ ହେଉଥିଲ । ସେହି ଗାଡ଼ିରେ ଅବିନାଶ ବାବୁ କନିକା ରାଜବାଟୀକୁ ଯିବା ଆସିବା କରୁଥିଲେ । କଟକରେ ସେତେବେଳେ ୨।୩ ଖଣ୍ଡ ମାତ୍ର ଭଡ଼ା ବଗି ଚଳୁଥିଲ । ଡ଼ମପଡ଼ାର ନାବାଳକ ରାଜା ମଧ୍ୟ କଟକରେ ପଢ଼ୁଥିଲେ । ତାଙ୍କର ଓ ମହାଜନ ବଳଦେବ ଲାଲଙ୍କର ମଧ୍ୟ ଯୋଡ଼ିଲଗା ବଗିଥିଲ । କଲେଜଏଟ ସ୍କୁଲ ଓ କଲେଜ ସଂଲଗ୍ନ ଥିଲ ଓ ପ୍ରିନ୍‌ସିପାଲ ସ୍କୁଲର ମଧ୍ୟ ଉପରିସ୍ଥ ହାକିମ ଥିଲେ । ପ୍ରିନସପାଲ ଏକର ସାହେବଙ୍କର ଛୋଟ ଧଳା ଘୋଡ଼ା ଯୋଡ଼ ଲଗା ଫିଟନ୍ ଥିଲ । ସେସମୟରେ ବାଇ ସାଇକେଲର ମଧ୍ୟ ପ୍ରଚଳନ ନ ଥିଲ । କଲେଜରେ ପଢ଼ୁଥିବା ହପ୍‌କିନ୍ସ ସାହେବ (ପରେ ଗଡ଼ଜାତ ସ୍କୁଲ ମାନଙ୍କର ଇନ୍‌ସପେକ୍ଟର ହୋଇଥିଲେ) ଗୋଟିଏ ବାଇ ସାଇକଲରେ କଲେଜକୁ ଆସୁ ଥାଆନ୍ତି । ସେ ସାଇକେଲର ଆଗ ଚକ ଖୁବ୍ ବଡ଼ ଓ ପଛ ଚକ ଅତି ଛୋଟ ଥିଲ ଓ ଆଗଚକ ଉପରେ ସାଇକେଲ ଚଢ଼ାଳୀଙ୍କ ଆସନ ଥିଲ । ପୂର୍ବେ ପିଲାଙ୍କର ସ୍କୁଲରେ ନାମ ଲେଖାଇବା ବେଳେ ଅଭିଭାବକମାନେ ପ୍ରକୃତ ବୟସ ଅପେକ୍ଷା ୨।୩ବର୍ଷ କମ ବୟସ ଲେଖାଉ-ଥିଲେ । କାଳେ ପିଲା ବାଟରେ ପାଠପଢ଼ା ଝୁଣ୍ଟିବ ଓ ବେଶୀ ବୟସ ହୋଇଗଲେ ସରକାରୀ ଚାକିରୀ ମିଳିବ ନାହିଁ— ଏହି ଆଶଙ୍କାରେ ଅଭିଭାବକମାନେ ବୟସ ଲୁଚଉ ଥିଲେ । ସେ ସମୟରେ ଇଂରାଜୀ ପଢ଼ି ପିଲାଙ୍କୁ ଚାକିରୀ କରାଇବା ଅଭିଭାବକମାନଙ୍କର ଏକମାତ୍ର ଲକ୍ଷ୍ୟ ଥିଲ । ଆଜକାଲି ଅଭିଭାବକମାନଙ୍କ ମନରୁ ସେ ଲକ୍ଷ୍ୟ ନିର୍ମୂଳ ହେଲଣି ବୋଲି ବୋଲାଯାଇ ନ ପାରେ ।

ମୁଁ ସ୍କୁଲରେ ପଢ଼ୁଥିବା ସମୟରେ ମୟୂରଭଞ୍ଜର ନାବାଳକ ରାଜା ସ୍ୱର୍ଗତ ଶ୍ରୀ ରାମଚନ୍ଦ୍ର ଉକ୍ତ ସ୍କୁଲର ଉଚ୍ଚତର ଶ୍ରେଣୀରେ ପଢ଼ୁଥିଲେ । କ୍ୟଡଲୀ ନାମକ ଜଣେ ସାହେବ ତାଙ୍କର ଅଭିଭାବକ ଓ

ଗୃହଶିକ୍ଷକ ଥିଲେ । ଅନେକ ଥର ବସ ମହାରାଜାଙ୍କ ଘୋଡାଗାଡ଼ିରେ ସ୍କୁଲକୁ ଆସୁଥିଲେ ଓ ଫେରିଲାବେଳେ ମଧ୍ୟ ଗାଡ଼ି ଆସି ମହାରାଜାଙ୍କୁ ନେଇ ଯାଉଥିଲେ । ସେ ସମୟରେ ପିଲମାନଙ୍କୁ ବ୍ୟାୟାମ ବା କ୍ରିକେଟ ଖେଳ ପାଇଁ ବାଧ୍ୟ କରା ହେଉନଥିଲା । ସ୍କୁଲ ୧୦ଟାରୁ ୪ଟା ହେଉଥିଲା । ତୃତୀୟ ଶ୍ରେଣୀରେ ନାଗବାଲି ଗ୍ରାମର ସ୍ୱର୍ଗତ ଦିବ୍ୟସିଂହ ମହାନ୍ତି ମୋ ସହପାଠୀ ଥିଲେ । ନାଗବାଲି ଆମର ଜମିଦାରୀ ଓ ଦିବ୍ୟସିଂହଙ୍କ ପିତୃ ପିତାମହ ଆମର ପ୍ରଜା ଥିଲେ । ତାଙ୍କ ଘରେ ଗଣେଶ ମୂର୍ତ୍ତି ବିଆର ହୋଇ ପୂଜା ହୁଏ । ମୁଁ ତାଙ୍କର ସାଙ୍ଗ ଥିଲି ଓ ଥରେ ଗଣେଶ ପୂଜା ଦେଖିବାକୁ ତାଙ୍କ ଘରକୁ ଯାଇଥିଲି । ମୋ ସହିତ ଗୃହର ବଡଦେଇ ବେହେରାକୁ ନେଇଥିଲି । ତାଙ୍କ ପିତା ଓ ପିତୃବ୍ୟ ମୋତେ ଖୁବ୍ ଆଦର କଲେ ଓ ଭୋଗ ମିଷ୍ଟାନ୍ନ ଆଦି ବଢ଼ାଇ ଦେଇ ଖାଦ୍ୟ ଖୁଆଇଲେ । ଜମିଦାର ପୁଅଙ୍କୁ କେତୋଟି ଟଙ୍କା ସଲାମି ମଧ୍ୟ ଦେଲେ । ନାଗବାଲି ନିକଟରେ ଆମର ଖଣ୍ଡାଏତା କଚେରୀ ଥିଲା । ମୁଁ ସେଠାରେ ରାତି ବାସ କରି ସକାଳୁ କଟକ ଫେରିଲି ।

**ଜମିଦାର ପୁଅ ପ୍ରଜା ଘରେ**— କଟକରେ ପହଞ୍ଚିବାର କେତେ ଘଣ୍ଟାପରେ ପିତୃଦେବ ଗ୍ରାମରେ ମୋର ନାଗବାଲି ଯିବା ଶୁଣି ଗ୍ରାମରୁ ଆସି କଟକରେ ପହଞ୍ଚିଲେ । ଯେତେ ବିଶିଷ୍ଟ ପ୍ରଜାହେଲେ ମଧ୍ୟ ଜମିଦାର କୁମାରଙ୍କର ତାଙ୍କ ଘରକୁ ଯାଇ ଜଳଖିଆ କରିବା ସେ କାଳର ଜମିଦାରୀ ଆଦବ କାଇଦା (Etiquette)ର ବିରୁଦ୍ଧ ଥିଲା । ଏହା ଲଙ୍ଘନ କରିଥିବାରୁ ମୁଁ ଗୁଡ଼ାଏ ଗାଳି ଖାଇଲି । ମୋ ପାଖରେ ଥିବା ବଡଦେଇ ବେହେରା ବରଖାସ୍ତ ହେଲା ।

**ପାଠ ପ୍ରତିଯୋଗିତା**— ସ୍କୁଲ ଛୁଟି ହେଲେ ମୁଁ ଗ୍ରାମକୁ ଯାଉଥିଲି ଓ ଗ୍ରାମରୁ ଯିବା ଆସିବା ସବାରୀରେ ହେଉଥିଲା । ସବାରୀ ବେହେରା କେତେଜଣ ଅସୁସ୍ଥ ହେବାରୁ ମୁଁ ଆମର ଅନ୍ୟ ଜମିଦାରୀ ବମ୍ଭୁରିବାଟେ ଆସିଲି । ରାତିରେ ବମ୍ଭୁରୀ କଚେରୀରେ ରହିଲି । ସେଠାର ତହସିଲଦାର ଆମ ଦୂର କୁଟୁମ୍ବୀ ପିତାମହ ଆମ ଗ୍ରାମର ଅନନ୍ତ ଆଚାର୍ଯ୍ୟ ଥିଲେ । ତାଙ୍କୁ ଆମେ ଅନନ୍ତଅଜା ବୋଲି ଡାକୁଥିଲୁଁ । ରାତି ୮ଟା

ବେଳକୁ ଘେରେଇ ହେଲି ଓ ମୁଁ ଏକ ଜିଦ ଧଇଲି ଯେ ମାଛ ନହେଲେ ମୁଁ ଓପାସ ରହିବ । ଅଗତ୍ୟା ଶୀତଦ୍ଦନ ରାତି ୯ଟା ବେଳେ ବମ୍ବିଷର ଜଣେ ସଚଳ ଅବସ୍ଥାପନ୍ନ ପ୍ରଜା ମାଳାଦ୍ରି ପଣ୍ଡାଙ୍କ ପାନବରଜ ସଂଲଗ୍ନ ଚୂଆ (ଗ୍ରେଷ୍ଟ ପୋଖରୀ)ରୁ ଖଣ୍ଡି ଜାଲ ଦ୍ୱାରା ମାଛ ଧରା ହୋଇ ଆସି ରନ୍ଧା ହେଲା । ଅନନ୍ତ ଅଜା ମାଛ ଧରାଇବା ପାଇଁ ଜାଲୁଆ ନେଇ ଗଲେ । ମୁଁ ଜଗର କରି ତାଙ୍କ ସଙ୍ଗେ ଗଲି । ଜମିଦାରଙ୍କ ପୁଅ ପ୍ରଜାଙ୍କ ଦୁଆରକୁ ଆସିବା ସେ ସମୟରେ ଅଭୂତପୂର୍ବ ଘଟନା ଥିଲା । ମାଳାଦ୍ରି ପଣ୍ଡା ତାଙ୍କ ଦାଣ୍ଡ ପିଣ୍ଡାରେ ଆଣି ସତ୍ତପ ଓ ଶେଯ ବିଛାଇ ଦେଲେ ଓ ମୋତେ ଆଦର କରି ବସାଇଲେ । ମାଛ ଧରା ହେବାକୁ କିଛି ସମୟ ଲାଗିଲା । ସେଠାରେ ଗ୍ରାମବାସୀ ପ୍ରଜା ୨୫।୩୦ ଜଣ ଆସି ରୁଣ୍ଡ ହେଲେ ଓ ସ୍ତ୍ରୀ ଲୋକ ପିଣ୍ଡା ମୁଣ୍ଡରେ, ହାତିଆଦମାନଙ୍କରେ ଓ କବାଟ ଦରଆଉଜା କରି ଜମିଦାର ପୁଅଙ୍କୁ ଲୁଚି କରି ଦେଖୁଥାଆନ୍ତି । ମାଳେଇ ପରିଡ଼ା ଆଣି ମୋ ହାତରେ ୧।୨ଟଙ୍କା ଦେଲେ । ତାଙ୍କ ପୁଅ ହାଡ଼ବନ୍ଧୁ ପରିଡା ଗ୍ରାମ ମାଟିବଂଶ ଅବଧାନଙ୍କ ପାଖେ ସେତେବେଳେ ଖଡ଼ିପାଠ ପଢୁଥାଆନ୍ତି ଓ ଗୁଡ଼ଏ ଲୀଳାବତୀ ସୂତ୍ର ସାଧନ କରିଥାଆନ୍ତି । ଖଡ଼ି ପାଠରେ ସେ ଖୁବ୍ ଧୁରନ୍ଧର ବୋଲି ଗ୍ରାମର ପିଲାମାନଙ୍କ ମଧ୍ୟରେ ତାଙ୍କର ଖୁବ ଖ୍ୟାତି ଥାଏ । ଜମିଦାରଙ୍କ ପୁଅ କଟକରେ ପଢ଼ୁଛନ୍ତି ଓ ପ୍ରଜାଙ୍କ ପୁଅ ମାଟିବଂଶ ଅବଧାନଙ୍କ ପାଖେ ପଢ଼ୁଥା'ନ୍ତି । ଏ ଦୁହିଁଙ୍କର ପାଠ ପରଖ ହେବାର ପ୍ରସ୍ତାବ ହେଲା । ଆମର ସେତେବେଳେ ବୀଜ ଗଣିତ ଓ ତ୍ରିକୋଣମିତି ପଢ଼ା ହେଉଥାଏ । ହାଡ଼ବନ୍ଧୁ ମୋତେ ପ୍ରଶ୍ନକଲେ—

"ଗୃହଟ ଓଡ଼ାଙ୍କ ଧରିବାର ବେଳେ
ଓଝାଏ ଛାଟ ପିଟି ଦେଲେ ତଳେ
ତରସ୍ତ ହୋଇଣ କୁମରମଣି
ଦେଲା ଓଡାଙ୍କ ମେଲାଙ୍କରେ ଗୁଣି
ଫଳ ହେଲା ନବେ
ଓଡାଙ୍କ ମେଲାଙ୍କ କହିବ ତେବେ ।"

ମୁଁ ତ ସିଦ୍ଧେଶ୍ୱରପୁର ସ୍କୁଲରେ ନୂଆ ରୀତିର ପାଟୀ ଗଣିତ ପଢ଼ିଥିଲି । କଲେଜିଏଟ୍ରେ ନଧ ତାହାହିଁ ପଢିଥିଲି । 'ଓଡାଙ୍କ',

'ମେଲନ୍ସ' ଶୁଣି ମୁଁ କିଂକର୍ତ୍ତବ୍ୟବିମୂଢ଼ ହେଲି । କଟକ ପଢୁଆ ପିଲା କି ହାରିବା କଥା ସହଜେ ମୁହଁରେ ମାନିବା ଜିନ୍ଷ ? ମୁଁ ଏ ପ୍ରଶ୍ନଟାକୁ ହସରେ ଉଡ଼ାଇ ଦେଲି । ମୁଁ କହିଲି ଓଡାର୍କ୍ସ, ମେଲନ୍ସ, ମରହଟ୍ଟିଆ ପାଠ । ଏ ଗୁଡ଼ାକ ଆମେ ପଢ଼ନାହିଁ । ବୀଜ ଗଣିତ, ତ୍ରିକୋଣମିତି ପଚାର, କହିବା; ସେଥିରୁ ହାଡ଼ିବନ୍ଧୁ ଲୀଳାବତୀର ଆଉ ଗୋଟିଏ 'ପଦ' ବୋଲିଲେ । ପଦଟି ମନେ ନାହିଁ । ତାର ମର୍ମ ଏହି ଯେ —

୩୦ ହାତର ବାଉଁଶ ପୋତା ହୋଇଥିଲା, ତା' ଉପରେ ମାଙ୍କଡ଼ଟିଏ ବସିଥିଲା । ଲୋକେ ବାଉଁଶ ମୂଳେ ଯାଇ ଜଗିବାରୁ ମାଙ୍କଡ଼ ବାଉଁଶ ଅଗରୁ କୁଦି କରି ବାଉଁଶ ମୂଳରୁ ୪୦ ହାତ ଛଡ଼ା ଜାଗା ଡେଇଁ ପଡ଼ି ପଳାଇଲା । ବାଉଁଶ ଅଗରୁ ମାଙ୍କଡ଼ କୁଦିଥିବା ସ୍ଥାନର ଦୂରତା କେତେ ?

ମୁଁ ଏ ପ୍ରଶ୍ନକୁ ସେହି ଧାରାରେ ପିଣ୍ଡା ଉପରେ ଖଡ଼ିଗୋଟାଏରେ କଷି ଫଳ ବାହାର କରିଦେଲି । କିନ୍ତୁ ହାଡ଼ିବନ୍ଧୁ ଲୀଳାବତୀ ସୂତ୍ରରୁ ଘୋଷିଥିବା ପଦମାନ କହିଲେ । ତାଙ୍କ ଉତ୍ତର ଓ ମୋ ଉତ୍ତର ମେଳ ହେବା ଦେଖି ପ୍ରଜାମାନେ ମୋତେ ବାହାଦୁର ଦେଲେ । (ହାଡ଼ିବନ୍ଧୁ ଖଡ଼ି ପାଠ ଶେଷ କରି ବମ୍ଭୁଆ କଚେରୀରେ ଅନନ୍ତ ଅଜାଙ୍କ ପାଖେ ଧନା କେତେ ଜମିଦାର ଶିରସ୍ତା କାମଶିଖି ପରେ ମୋହରିର ଓ ଗୁମାସ୍ତା ହେଲେ । ଅନନ୍ତ ଅଜାଙ୍କ ମୃତ୍ୟୁପରେ ବମ୍ଭୁଆ ଇଲାକାର ତହସିଲଦାର କାମକଲେ । ପରବର୍ତ୍ତୀ କାଳରେ ତାଙ୍କ ସଙ୍ଗେ ମୋର ଖୁବ୍ ସ୍ନେହ ସୌହାର୍ଦ୍ଦ୍ୟ ଜନ୍ମିଲା । କିନ୍ତୁ ସେ ଅକାଳ ମୃତ୍ୟୁ ଲଭିଲେ) ।

ମୁଁ ଗଣିତରେ ଖରା କଚା ଥିଲି ଓ ଯେନ ତେନ ପ୍ରକାରେଣ ଗଣିତରେ ପାସ ମାର୍କ ରଖୁଥିଲି । କିନ୍ତୁ ଅନ୍ୟ ବିଷୟମାନଙ୍କରେ ଭଲ ନମ୍ବର ରଖି କ୍ଲାସରେ ପ୍ରଥମ ୪ ସ୍ଥାନ ଭିତରୁ ଗୋଟିଏ ଅଧିକାର କରୁଥିଲି ଓ ପ୍ରାଇଜ ପାଉଥିଲି । ପିଲାଦିନେ ବ୍ରତ ହେବାପରେ ପିତୃଦେବଙ୍କ ଉପଦେଶରେ ମୁଁ ସନ୍ଧ୍ୟା, ବୈଶ୍ୱଦେବ, ନିତ୍ୟକର୍ମ ଓ ଅନେକ ସ୍ତୋତ୍ର ମୁଖସ୍ଥ କରିଥିଲି । ଏହି ସବୁ ସଂସ୍କୃତ ଶ୍ଲୋକ (ଶିବଦ୍ୱାଦଶ ନାମ,

ସୂର୍ଯ୍ୟସ୍ତବ, ମହାବନାସ୍ତବ ସ୍ତୋତ୍ର, ବଗଳାମୁଖୀ ସ୍ତୋତ୍ର, ଶିବସ୍ତୋତ୍ର ଇତ୍ୟାଦି) ସବୁ ମୁଖସ୍ଥ ଥିବା ଯୋଗୁଁ ମୋର ସଂସ୍କୃତ ପଢ଼ାରେ ଖୁବ୍ ସାହାଯ୍ୟ ମିଳିଥିଲା । ୩ୟ ଶ୍ରେଣୀରେ ଆମ୍ଭେମାନେ ବ୍ୟାକରଣକୌମୁଦୀ ଓ ଉପକ୍ରମଣିକା (ବଙ୍ଗଳାରେ ଲିଖିତ) ପଢ଼ୁଥିଲୁଁ । ୨ୟ ଶ୍ରେଣୀରେ ପଢ଼ୁଥିବା ସମୟରେ ଶଙ୍ଖବାସ ନିବାସୀ ସ୍ୱର୍ଗତ ଦୟାନିଧି ପଣ୍ଡିତଙ୍କୁ ପିତୃଦେବ ମୋତେ 'ବର୍ଦ୍ଧମାନ ବ୍ୟାକରଣ' ପଢ଼ାଇବା ପାଇଁ ନିଯୁକ୍ତ କରିଥିଲେ, କିନ୍ତୁ ମୁଁ ଚପଳପଣ କରି ସଂସ୍କୃତ ଶିକ୍ଷାକୁ ଖାତିର ନ କରି ସେ ବ୍ୟାକରଣର କେତେକ ଅଂଶ ମାତ୍ର ପଢ଼ି ଛାଡ଼ିଦେଲି । ପର ଜୀବନରେ ମୋତେ ଏଥିପାଇଁ ଅନୁତାପ କରିବାକୁ ହେଲା ।

**ସତ୍ୟନିଷ୍ଠା ଓ ଈଶ୍ୱରବିଶ୍ୱାସ**—ଏଠାରେ ଗୋଟିଏ ବିଷୟ ଉଲ୍ଲେଖ କରିବା ମୁଁ ଉଚିତ୍ ମନେ କରୁଛି । ମୁଁ ନିଜେ ଅନୁଭବରୁ ଦେଖିଛି ଯେ 'ସତ୍ୟବାଦିତା' ପ୍ରତି ଆମର ଖୁବ୍ ନିଷ୍ଠା ନାହିଁ । ପାଶ୍ଚାତ୍ୟ ବ୍ୟକ୍ତିମାନଙ୍କର ଏବମ୍ଭୂତ ମନ୍ତବ୍ୟ ଶୁଣି ଆମଦେଶର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଅଗ୍ନିଶର୍ମା ହୋଇ ଉଠନ୍ତି କିନ୍ତୁ 'ସର୍ବଦା ସତ୍ୟ କହିବ' ଏହା ଆମ ଗାର୍ହସ୍ଥ୍ୟ ଆବହାଓ୍ୱା ତୁଳନାରେ ପୋଥି ପାଠ ହୋଇ ରହେ । ଯାହା ଶିଶୁ ଅବସ୍ଥାରେ ଘରେ ଦେଖିଲି ଓ ବାଲ୍ୟାବସ୍ଥାରେ ସ୍କୁଲରେ ଦେଖିଲି, ଯୌବନାବସ୍ଥାରେ କଲେଜରେ ଓ ପ୍ରୌଢ଼ାବସ୍ଥାରେ ସଂସାରରେ ଦେଖିଲି, ଏଥିରୁ ମୋର ଧାରଣା ହୋଇଛି ଯେ ଆମେ ପିଲାଦିନୁ ମିଛ କହିବା ଧାତୁରେ ଗଢ଼ାହୋଇ ଆସିଛୁଁ ଓ 'ଈଶ୍ୱର ବିଶ୍ୱାସ' ର ଦୃଢ଼ତା ମଧ୍ୟ ହରାଇ ଅଛୁଁ । ମୁଁ ନିଜ ଅନୁଭବରୁ ଜାଣି ପାରୁଛି ଯେ ଆମ୍ଭେମାନେ ଯେଉଁ ଗାର୍ହସ୍ଥ୍ୟ, ପାରିବାରିକ, ସାମାଜିକ ଓ ସାଂସାରିକ ଜଳବାୟୁରେ ବଢ଼ୁ ତାହା ନ ବଦଳିବା ପର୍ଯ୍ୟନ୍ତ ଆମର ସତ୍ୟବାଦିତା ଓ ଈଶ୍ୱର ବିଶ୍ୱାସରେ ଦାର୍ଢ୍ୟ ଜନ୍ମିବ ନାହିଁ, କଥାରେ ଅଛି "ମାଛ ଗନ୍ଧିବା ଯେତେ ସହଜ, ମିଛ କହିବା ମଧ୍ୟ ସେତେ ସହଜ" ମାତୃଭାଷାରେ ଈଶ୍ୱର ପ୍ରାର୍ଥନା ନକରି ଆମେ କେତେଗୁଡ଼ିଏ ସଂସ୍କୃତଶ୍ଳୋକ ଆଉଡ଼ାଉଁ ଓ ଏଥିର ଫଳ ଏହିତା ହୁଏ ଯେ ମାତୃଭାଷାର ପ୍ରାର୍ଥନା ଆମ ମନରେ ଯେଉଁ ଦୃଢ଼ତା ଓ ସନ୍ତୋଷ ଦିଅନ୍ତା, ଅବୁଝା

ସଂସ୍କୃତ ଭାଷାରେ ଉଚ୍ଚାରିତ ତାହା କଦାପି ସେ ଦୃଢ଼ତା ଓ ସନ୍ତୋଷ ଦେଇ ପାରେ ନାହିଁ । ମୁଁ ନିଜେ ବହୁ ଚେଷ୍ଟା କରିଛି ଯେ ଶଯ୍ୟାତ୍ୟାଗ କଲାକ୍ଷଣି, ତା'ର ଅବ୍ୟବହିତ ପୂର୍ବରୁ, ବିପଦ ସମୟରେ, ଅଶାନ୍ତି ସମୟରେ, ଈଶ୍ୱରଙ୍କର ଆଶୀର୍ବାଦ ଭିକ୍ଷା କରିବି ଓ ପ୍ରଭୁଙ୍କର ମୋ ଉପରେ ଦୟାର ଯେଉଁ ଉଦାହରଣମାନ ପ୍ରତ୍ୟକ୍ଷ କରୁଛି, ସେଥିପାଇଁ ଈଶ୍ୱରଙ୍କୁ ଧନ୍ୟବାଦ ଦେବି । କିନ୍ତୁ ଏହା ନିୟମିତ ରୂପେ କରି ପାରିଲି ନାହିଁ । ପରିବାରର ସମସ୍ତେ ବା ୨।୩ଜଣ ବନ୍ଧୁ ଏକତ୍ର ବସି ପ୍ରାର୍ଥନା କରିବା ହୋଇପାରୁ ନାହିଁ । ଢଗ ଅଛି । "ଯାହା ହୋଇ ନାହିଁ କାଳ କାଳେ, ତାହା ନହେବଟି ପାଚିଲାବାଳେ ।" ଏ ସବୁର କାରଣ ମୁଁ ଉପଲବ୍ଧି କରିଛି ଯେ ଆମେ ଏ ଜଳବାୟୁରେ ଶିଶୁକାଳରୁ ବଢ଼ି ନଥିବାରୁ ତାହା ପରବର୍ତ୍ତୀ କାଳରେ ଆମ ପକ୍ଷରେ ସୁକର ହେଉନାହିଁ ।

**ମୋର ଟିକି ଦୋକାନ**—ରେଭେନ୍‌ସା କଲିଜିଏଟ ସ୍କୁଲରେ ପଢ଼ିବା ସମୟରେ ଗ୍ରାମରେ ସ୍କୁଲ ପିଲାମାନଙ୍କୁ କାଗଜ କଲମ ଆଦି ଯୋଗାଇବା ପାଇଁ ଗୋଟିଏ ଟିକି ଦୋକାନ (ମୂଳଧନ ୨ ଟଙ୍କାରେ) ଖୋଲିଲି । ତା ନାମ ହେଲା Praharaj Acharya & Company ଓ ସଂକ୍ଷେପରେ 'P. A. & Co.' । ଗୋଟିଏ ଖଡ଼ି ମୁଣ୍ଡାକୁ ପଥରରେ ଘଷି ତାର ଗୋଟିଏ ପାର୍ଶ୍ୱକୁ ସମତୁଲ କରି ସେହି ପାଖରେ P. A. & Co. ଅକ୍ଷରରେ ଲେଉଟାଇ ଡାମ୍ଫଣରେ ଖୋଳିଲି ଓ ଶଗଡ଼ ଅଖରେ ବ୍ୟବହୃତ ତେଲ କାଣ୍ଟିରେ ହାଣ୍ଡିକଳା ମିଶାଇ ତାକୁ ଉକ୍ତ Seal ର କାମ ଉଆଦ କଲି । ଏ ଦୋକାନରେ ଖୋଦ ପ୍ରହରାଜଙ୍କ ମୂଳଧନ ଟ୧୲ଙ୍କା ଓ ସାନଭାଇ ଉଦୟ ନାଥ ଆଚାର୍ଯ୍ୟଙ୍କର ଟ୦।୲ ଲାଗିଥିବାରୁ ଏ କମ୍ପାନିର ନାମ ହେଲା ପ୍ରହରାଜ ଆଚାର୍ଯ୍ୟ ଆଣ୍ଡ କୋମ୍ପାନି । ପିତୃଦେବଙ୍କ କଟକ ବସା ଖରଚ ପାଇଁ ମାସକୁ ମାସ ଯେଉଁ ଟଙ୍କା ଆସୁଥିଲା, ତହିଁର ବ୍ୟୟ ଓ ଜମାଖରଚର ଭାର ମୋ କୁଟୁମ୍ବୀ କକେଇଙ୍କ ଭଣଜା ଶ୍ରୀ ହରେକୃଷ୍ଣ ମିଶ୍ରଙ୍କଠାରେ ଥିଲା । ସେ ମଧ୍ୟ ଆମ ବସାରେ ରହି ଉପର କ୍ଲାସରେ ଓ କଲେଜରେ ପଢ଼ୁଥାଆନ୍ତି । ତାଙ୍କ ପେଟରାରେ

ସେ ଟଙ୍କା ପଇସା ରଖୁ ଥାଆନ୍ତି । ସେ ଜାଗାକୁ ମୁଁ ଠଉରାଇଥାଏଁ ଓ ସେ ବସାରେ ନଥିବା ବେଳେ ପେଟରା ତଳ ଫାଳକୁ ଗୋଡ଼ରେ ମାଡ଼ିବସି ପେଟରାର ଉପର ଡାଲାକୁ ଡାହାଣ ହାତଦ୍ୱାରା ଟେକିଧରି ମେଲିବାଟେ ବାଆଁ ହାତକୁ ଗଳାଇ ଗୁଞ୍ଜୁଡ଼ିରୁ ଯେତିକି ମୋ ହାତୁଡ଼େ ପଡ଼େ ସେତିକି ଆଣେ । ଅବଶ୍ୟ ମୂଳପୋଛ କରିଦେଲେ ଓ ବେଶୀ ପଇସା ନେଲେ କଥାଟା ଧରା ପଡ଼ିବ ଓ ସେ ଘରେ ମୋ ଛଡ଼ା ଆଉ କେହି ପଶୁ ନଥିବାରୁ ମୁଁ ଚୋର ସାବ୍ୟସ୍ତ ହେବି । ଏହି କାରଣରୁ ମୁଁ ଥରକେ ଦୁଇ ପଇସା ଚାରି ପଇସାଠାରୁ ବେଶୀ ଆଣୁ ନଥିଲି । ହରିଭାଇ ବସା ଖରଚ ହିସାବ ମୋ ଆଗେ ବସି ଲେଖୁଥିଲେ ଓ ଦୁଇ ଦିନେ ଚାରି ଦିନେ ଜମାରୁ ଦୁଇ ପଇସା ଚାରି ପଇସା କମି ଯିବାରୁ ଧନ୍ଦି ହେଉଥିଲେ । ମୁଁ କହୁଥିଲି "ତୁମେ କଅଣ ଖୁଚୁରା ଖରଚ କରିଥିବ । ତୁମର ମନେ ନାହିଁ ।" ଏହିପରି ୨।୪ ପଇସା ଚୋରି କରି ଯାହା ରଖିଥିଲି । ତାହାହିଁ ପ୍ରହରାଜ ଆଚାର୍ଯ୍ୟ ଆଣ୍ଡ୍ କମ୍ପାନୀର ମୂଳଧନ । ମୁଁ ବରାବର ୮ଦିନେ ଏଠାରେ ଟଙ୍କାଏ ଆଠଅଣାର କାଗଜ, କଲମ, ପେନ୍‌ସିଲ୍, ବ୍ଲଟିଙ୍ଗ୍ ଚକ୍‌ଖଡ଼ି, ଉଡ଼ନ୍ ପେନ୍‌ସିଲ କିଣି ପଠାଏ, ଟଙ୍କାତିକି ୪ଅଣା ଲାଭରଖି ସିଦ୍ଧେଶ୍ୱରପୁର ସ୍କୁଲର ପିଲାଙ୍କୁ ଏସବୁ ବିକ୍ରୀ କରିବାକୁ ହେଡ଼ମାଷ୍ଟର ସ୍ୱର୍ଗତ ବାଞ୍ଛାନିଧି ମହାନ୍ତିଙ୍କୁ ବରାଦ କଲି । ମାଷ୍ଟର ମହାଶୟ ପ୍ରାୟ ଦୁଇତିନି ମାସ ମୋ ପ୍ରେରିତ ଦ୍ରବ୍ୟମାନଙ୍କର କଟକର କିଣାମୂଲ୍ୟ ଲାଭ ଟଙ୍କା ପଠାଇଲେ । ପଛକୁ କହିଲେ ଯେ ପିଲାମାନଙ୍କ ଉପରେ ବାକି ରହିଗଲା । ସେତ ବିଦ୍ୟାଗୁରୁ । ମୁଁ ଆଉ ତାଙ୍କୁ କହନ୍ତି କଣ ? ଶେଷକୁ ପ୍ରହରାଜ ଆଚାର୍ଯ୍ୟ ଆଣ୍ଡ କୋମ୍ପାନୀ ସମୂଳେ ବିଲୁପ୍ତ ହେଲା ।

ଶଶୀଭାଇ (ଶଶିଭୂଷଣ ରାୟ) ପତଳା ଓ ଗୋରା ଦେହରେ ଗିଲକୁଞ୍ଚା, ଚନ୍ଦ୍ରକଣା, ଧୋତି, ଲମ୍ବ କଳାକୋଟ, ଗିଲକୁଞ୍ଚା ସରୁବୁଦାର ଓ ବାର୍ଣ୍ଣିସ ଜୋତା ପିନ୍ଧି ସ୍କୁଲକୁ ଆସୁଥିଲେ । ତାଙ୍କର ଗଳାର ସ୍ୱର ମଧୁର ଥିଲା । ସେ ଗୋଟିଏ ବଙ୍ଗଳା ଗୀତ ଆବୃତ୍ତି କରୁଥିଲେ—

"ଦୟା ଘନ ! ତବ ବିନେ କେ ହିତକାରୀ ?
ମରିବେ ସକଲେ—ଅନ୍ତିମ କାଲେ
କେ ଲୟ କ୍ରୋଡ଼ ପ୍ରସାରି ।"

ମୁଁ ମଧ୍ୟ ଏ ଗୀତଟି ଶିଖିଥିଲି ।

**'ଇନ୍ଦ୍ରଧନୁ', 'ବିଜୁଳି'**—ଆମେ ସ୍କୁଲରେ ପଢ଼ିଲାବେଳେ ଦେବାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ର ଆମ ବସା ନିକଟରେ ନର୍ମାଲ ସ୍କୁଲ ଲେନରେ ଖଣ୍ଡିଏ ବସାରେ ଶ୍ରୀ ଭବଗ୍ରାହୀ ମହାପାତ୍ର ନାମକ ଜଣେ ଛାତ୍ରଙ୍କ ସଙ୍ଗେ ରହୁଥିଲେ ଓ ସ୍କୁଲରେ ପଢ଼ିବା ସମୟରୁ ସେ 'ଛମାଣ' ନାମ ଦେଇ ଉତ୍କଳ ପତ୍ରିକାକୁ ବେଳେ ବେଳେ ପଦ୍ୟମାନ ଲେଖୁଥିଲେ । ଆମ ସ୍କୁଲରେ ପଢ଼ିବା ସମୟରେ 'ଇନ୍ଦ୍ରଧନୁ' ଓ 'ବିଜୁଳି' ନାମକ ଦୁଇଗୋଟି ସାମୟିକ ପତ୍ରିକା ଉତ୍କଳୀୟ ସାହିତ୍ୟ ଜଗତରେ ଭାରି ଏକ ଚହଲ ପକାଇ ଦେଇଥିଲା । କବିବର ରାଧାନାଥ ରାୟଙ୍କ ଜୀବନ ଚରିତରେ ଗ୍ରନ୍ଥକାର ଶ୍ରୀ ଦୁର୍ଗାଚରଣ ରାୟ ଏ ଦୁଇ ପତ୍ରିକା ବିଷୟରେ ଅନେକ ଜ୍ଞାତବ୍ୟ ବିଷୟ ସଂଗ୍ରହ କରି ଲିପିବଦ୍ଧ କରି ଅଛନ୍ତି । 'ଇନ୍ଦ୍ରଧନୁ' ଭଞ୍ଜଙ୍କ ପକ୍ଷରେ ଓ 'ବିଜୁଳି' ଭଞ୍ଜଙ୍କ ବିପକ୍ଷରେ ଲେଖାମାନ ପ୍ରକାଶ କରୁଥିଲେ । 'ଇନ୍ଦ୍ରଧନୁ'ର ଲେଖାରେ ବହୁତ ବ୍ୟଙ୍ଗ ବିଷୟ ପ୍ରକାଶିତ ହେଉଥିଲା । ସେତେବେଳକୁ ଆମେ ଭଞ୍ଜ ବା ରାଧାନାଥଙ୍କ କାବ୍ୟ ଆଦି ପଢ଼ି ନ ଥିଲୁଁ । ଏଥିପାଇଁ ଏ ପତ୍ରିକାଦ୍ୱୟ ଆମ୍ଭମାନଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କରି ପାରୁ ନ ଥିଲା । 'ଇନ୍ଦ୍ରଧନୁ' ଉପେନ୍ଦ୍ରଭଞ୍ଜ ଆଦିଙ୍କୁ ଉଚ୍ଚ ସ୍ଥାନ ଦେଉଥିଲା, 'ବିଜୁଳି' ରାଧାନାଥଙ୍କୁ ଉଚ୍ଚସ୍ଥାନ ଦେଉଥିଲା । ଶେଷକୁ ଦୁହିଁଙ୍କ ମର୍ମାନ୍ତିକ ଭଦ୍ରତାର ସୀମା ଲଙ୍ଘନ କରିଥିଲା । ଏହି ସମୟରେ ରାଧାନାଥ ଭଞ୍ଜଙ୍କୁ ପୂଜନୀୟ ଆସନ ଦେଇ ଏ ବିତଣ୍ଡା ଓ କଳହର ମୀମାଂସା କରି ଦେଲେ ।

**କଲେଜ ଛାତ୍ର ହେଲି**—

୧୮୯୧ରେ ମୁଁ ଏଣ୍ଟ୍ରାନ୍‌ସ ପାସ କଲି । ମୁଁ ସେଥିରେ ଓଡ଼ିଶାର ୩ୟ ସ୍ଥାନ ଅଧିକାର କରିଥିଲି । ସେତେବେଳେ ଓଡ଼ିଶାରେ ଏଣ୍ଟ୍ରାନ୍‌ସ ପାସ କଲାବାଲାଙ୍କ ସଂଖ୍ୟା ଅତି କମ ଥିଲା । ପାସ କରିବାକୁ ଗୋଟାଏ ଗଡ଼ଜୟ କରିବା ବୋଲି ଲୋକେ ଭାବୁଥିଲେ । ତାପରେ ମୁଁ ରେଭେନ୍‌ସା କଲେଜରେ ନାମ ଲେଖାଇଲି । ଫାଷ୍ଟଇଅରରେ ଛାତ୍ର ସଂଖ୍ୟା ୧୫।୨୦ ଥିଲା । କଲେଜରେ ଇଂରାଜୀ, ଇତିହାସ, ଗଣିତ, ଲଜିକ୍, ସଂସ୍କୃତ, ବିଜ୍ଞାନ ପଢ଼ାଇବା ପାଇଁ ୪।୫ ଜଣ ପ୍ରଫେସର ଥିଲେ । ଫାଷ୍ଟଇଅର

କ୍ଲାସରେ ଗୋଟିଏ ମାତ୍ର ସେକ୍‌ସନ ଥିଲା । ସେକେଣ୍ଡଇଅର ତଦ୍ରୂପ । ଥାର୍ଡ ଓ ଫୋର୍ଥଇଅରରେ ଛାତ୍ରସଂଖ୍ୟା ଅତି ଅଳ୍ପ ଥିଲା । ବି. ଏ. କ୍ଲାସ ଦ୍ୱୟରେ ୨ ବା ୩ଟି ସେକ୍‌ସନ ଥିଲା । ଏଫ. ଏ. କ୍ଲାସରେ Children's Treasury of Golden lyrics, Help's Essays, Blackies Self Culture, 'Goldsmith's Deserted' Village, Milton's Paradise lost, ରଘୁବଂଶ, କୁମାର ସଂଭବ, ଭଟ୍ଟୀକାବ୍ୟ, Physics, Chemistry, Conic Section, Algebra ଆଦି ପଢ଼ା ହେଉଥିଲା । ସେତେବେଳକୁ Arts ଓ Science ବିଭାଗ ସ୍ୱତନ୍ତ୍ର ହୋଇ ନ ଥିଲା । ମୁଁ ମାସକୁ ୧୮ ଟଙ୍କା ଲେଖାଏଁ ସରକାରୀ ବୃତ୍ତି ପାଉଥାଏଁ । ସ୍କୁଲରେ ପଢ଼ିବା ସମୟରୁ ସ୍ୱର୍ଗତ କେଦାରନାଥ ମିତ୍ର (ଯେ କଲେକ୍ଟରୀରେ ଜଣେ କ୍ଲର୍କ ଥିଲେ) ମୋର ଅଭିଭାବକ ଥିଲେ ଓ ପ୍ରତିଦିନ ଆମ ବସାକୁ ଆସି ସେଠାରେ ୨।୩ ଘଣ୍ଟା ସମୟ ରହୁଥିଲେ । ତାଙ୍କ ଭଣଜା ରାଧାବିନୋଦ ଘୋଷ ଜଣେ ଜମିଦାର ଥିଲେ । କେଦାରବାବୁ ତାଙ୍କ ଘରେ ରହୁଥିଲେ ।

**ପଞ୍ଚମକାର ସେବା**—ଫାଷ୍ଟଇଅରରେ ପଢ଼ିଲାବେଳେ ଗୁଡ଼ିଏ ସଙ୍ଗୀ ଜୁଟିଲେ । ସେମାନଙ୍କ ସଙ୍ଗେ ରାତିରେ ଲୁଚିକରି ଗଣେଶ ଯାତ୍ରା, ଝୁଲଣ ଦେଖିବାକୁ ମୁଁ ଯାଇଥିଲି । ସେ ସମୟରେ କଟକରେ ଅନେକ ଭଦ୍ରଲୋକ ଗଣେଶ ପ୍ରତିମା ତିଆରି କରାଇ ବହୁ ଭଦ୍ର ଲୋକଙ୍କୁ ନିମନ୍ତ୍ରଣ କରି ଖୁଆଉ ଥିଲେ । ଗଣେଶ ମୂର୍ତ୍ତିଙ୍କ ଆଗରେ 'ବାଇ ନାଚ' ହେଉଥିଲା । ଜଣ କେତେ ସଙ୍ଗୀଙ୍କ ସଙ୍ଗେ ଜଣେ ଭଦ୍ରଲୋକଙ୍କ ଘରେ ଗଣେଶ ପୂଜା ସଂପୃକ୍ତ ପଞ୍ଚମକାର ଉପାସନାରେ ଯୋଗଦେଇ ତେଣୁ ଫେରି ବେଶ୍ୟା ଗୃହରେ ମଧ୍ୟ ସଙ୍ଗୀଙ୍କ ସଙ୍ଗରେ ଅତିଥି ହେଲି । ଏ ସମ୍ପର୍କରେ ପ୍ରଶ୍ନ—

"ଭିକ୍ଷୋ ! ମାଂସ ନିଷେବଣଂ ପ୍ରକୁରୁଷେ" ?

ଉତ୍ତର—"କିଂ ତେନ ମଦ୍ୟଂ ବିନା"

ପ୍ରଶ୍ନ—"ମଦ୍ୟଂଚାପି ତବ ପ୍ରିୟଂ" ?

ଉତ୍ତର—"କିମହୋ ବାରଙ୍ଗନାଭିଃ ସହ"

ପ୍ରଶ୍ନ—"ବେଶ୍ୟା ଦ୍ରବ୍ୟ ରୁଚିଃ, କୁତସ୍ତବ ଧନଂ" ?

ଉତ୍ତର—"ଦ୍ୟୂତେନ ଚୌର୍ଯ୍ୟେଣ ବା"

ପ୍ରଶ୍ନ—"ଦ୍ୟୂତଶ୍ଚୌର୍ଯ୍ୟ ପରଗ୍ରହୋସ୍ତି ଭବତଃ" ?
ଉତ୍ତର—' ନଷ୍ଟସ୍ୟ କାନ୍ୟାଗତିଃ"

ଏହି ସଂସ୍କୃତ ବଚନକା ମୋଠାରେ ଫଳିଲା । ବେଶ୍ୟାସକ୍ତ ଲୋକର ଧନ ଲୋଡ଼ା, ଧନ କେଉଁଠାରୁ ଆସିବ ? ସଙ୍ଗୀମାନଙ୍କ ପରାମର୍ଶରେ ଅର୍ଥାଗମର ଉପାୟ ମଧ୍ୟ ହାବୁଡ଼େ ପଡ଼ିଲା । ମୁଁ ଯେଉଁ ମାସିକ ଟ ୧୫ ବୃତ୍ତି ପାଉଥିଲି, କେଦାରବାବୁଙ୍କ ବରାଦ ଅନୁସାରେ ସେଭିଙ୍ଗ୍ସ ବ୍ୟାଙ୍କରେ ତାହା ଜମା ରଖିବାକୁ ନନା ରାଜି ହେଲେ । ବସା ଖରଚ ଓ ପଢ଼ା ଖରଚ ତ ନନା ଚଳାଉ ଥାଆନ୍ତି । ମୋର ବୃତ୍ତି ଟଙ୍କାତକ ମାସକୁ ମାସ ମୋ ନାମରେ ସେଭିଙ୍ଗ୍ସ ବ୍ୟାଙ୍କରେ ଜମା ହେଉଥାଏ ଓ ପାସ୍‌ବୁକ୍ କେଦାରବାବୁଙ୍କ ପାଖରେ ଦେଉଥାଏ । ମଝିରେ ମଝିରେ ଗ୍ରାମକୁ ଯାଇ ବୋଉକୁ ଫସୁଲାଇ କିଛି ଟଙ୍କା ଆଣି ମାତୃଦତ୍ତ ଧନର ଶ୍ରାଦ୍ଧ ବେଶ୍ୟା ଦ୍ୱାରରେ ହେଉଥାଏ । ସେଥିରେ ଆଉ କାମ ଚଳିଲା ନାହିଁ । ସଙ୍ଗୀମାନଙ୍କ ପରାମର୍ଶରେ ପୋଷ୍ଟ ଅଫିସରେ ଦରଖାସ୍ତ ଦେଲି ଯେ ପାସ ବହି ଖଣ୍ଡି ହଜିଛି । ଅତଏବ ଉପଯୁକ୍ତ ଫିସ୍ ଦାଖଲ କରି ଡାକଘରୁ ନୂଆ ପାସ୍ ବହି ଆଣି ସେଭିଙ୍ଗ୍ସ ବ୍ୟାଙ୍କରୁ ଟଙ୍କା ଆଣି ଆମର ପଞ୍ଚମକାର ଉପାସନାର ବ୍ୟୟ ଚଳୁଥାଏ । ସେ ସମୟରେ ଆଉ ଦୁଇ ତିନୋଟି ବଡ଼ଲୋକଙ୍କ ପିଲା ମଧ୍ୟ ମୋ ସହପାଠୀ ଥିଲେ । ପାଳକରି ସେମାନେ ଦିନ ଦିନକର ମଜଲିସର ବ୍ୟୟ ଚଳାଉ ଥାନ୍ତି ଓ ମୁଁ ମଧ୍ୟ ପାଳି ଦିନର ଖର୍ଚ୍ଚ ଚଳାଉଥାଏ । ଏଠାରେ କହିବା ଉଚିତ ଯେ ସେ ସମୟରେ କଲେଜ ଛାତ୍ରମାନଙ୍କ ମଧ୍ୟରେ ବେଶ୍ୟା ସଙ୍ଗ ଓ ମଦ୍ୟ ସେବା ଫେସନ ହୋଇଥାଏ । ଆମେ ସ୍କୁଲରେ ଓ ଏଫ୍. ଏ. କ୍ଲାସରେ ପଢ଼ୁଥିବା ବେଳେ ବି.ଏ. କ୍ଲାସରେ ପଢ଼ୁଥିବା କେତେଜଣ ବଡ଼ଲୋକ ପିଲାଙ୍କ ମଧ୍ୟରେ ଏ ଫେସନ ଚଳୁଥାଏ । ଏମନ୍ତ କି କଟକର ଏକାଧିକ ଶିକ୍ଷିତ ଓ ପଦସ୍ଥବ୍ୟକ୍ତି ପ୍ରକାଶ୍ୟ ଭାବରେ ବେଶ୍ୟା ଓ ମଦ୍ୟ ଭକ୍ତ ଥିଲେ । ଥରେ ବାରାଙ୍ଗନା ପ୍ରିୟାଙ୍କ ପାଇଁ ଦଶହରା (ଦୁର୍ଗାପୂଜା) ପୂର୍ବରୁ ବଜାରରୁ ମୁଁ ଖଣ୍ଡେ ଢାକାଇ ଶାଢ଼ୀ କିଣି ଆଣି ମୋ ପେଟରାରେ ରଖିଥିଲି । ଏକଥା ମୋ ସଙ୍ଗେ କଟକରେ ରହୁଥିବା ପିତୃନିଯୁକ୍ତ ଭୃତ୍ୟ ଜାଣି ପାରିଲା ଓ ଏହା ତାକୁ ଅସହ୍ୟ ହେଲା । ସେ କଥା ଗୁପ୍ତଭାବରେ ପିତୃଦେବଙ୍କ କର୍ଣ୍ଣଗୋଚର କଲା ।

ଦିନେ ଭୋର ବେଳେ ଆମେମାନେ ଶଯ୍ୟା ତ୍ୟାଗକରି ଦେଖିଲୁ ଯେ ପିତୃଦେବ ଆସି ଅପ୍ରତ୍ୟାଶିତ ଭାବରେ ବସାରେ ଉପସ୍ଥିତ । ତାଙ୍କ ଆଦେଶ ଅନୁସାରେ ମୋ ପେଟରା ତାଙ୍କ ଆଗକୁ ଅଣାହେଲା ଓ ମୋଠାରୁ ପେଟରାର ଚାବି ତଲବ ହେଲା । ପେଟରା ଫିଟାଇ ଦେବାରୁ 'ଢାକାଇଶାଢ଼ୀ' ବାହାରିଲା । ପିତୃଦେବଙ୍କ ପ୍ରଶ୍ନରେ ମୁଁ ଉତ୍ତର ଦେଲି ଯେ ସେ ଶାଢ଼ୀ ମୁଁ ବୋଉଙ୍କ ପାଇଁ କିଣିଥିଲି । ଆମ ସମାଜରେ ସ୍ତ୍ରୀଲୋକମାନେ ସେତେବେଳେ 'ଢାକାଇଶାଢ଼ୀ' ପିନ୍ଧୁ ନଥିଲେ । ପିତୃଦେବ ମୋ ଉପରେ ଅତ୍ୟନ୍ତ ବିରକ୍ତ ହେଲେ ଓ ମୋ ଆଗରେ ସେଶାଢ଼ୀରେ ଅଗ୍ନି ସଂଯୋଗ କରାହେଲା ।

## ଆସକ୍ତି ଓ ଅବମାନନା—

ମୁଁ କଲେଜରେ ପଢ଼ିବା ସମୟରେ ମୋ କନିଷ୍ଠ ଉଦୟନାଥ ସିଦ୍ଧେଶ୍ୱରପୁର ସ୍କୁଲରୁ ପାଶକରି ଆସି କଲେଜିଏଟ୍ ସ୍କୁଲରେ ପଢ଼ୁଥାଏ । ତାକୁ ମୋ ଜ୍ୟେଷ୍ଠ ପିତୃବ୍ୟ କୁଳମଣି ଆଚାର୍ଯ୍ୟ ପୋଷ୍ୟପୁତ୍ର କରିନେଇ ଥିଲେ । ଉଦୟ କଟକକୁ ଆସି ମୋ ସଙ୍ଗେ ରହିଲା । ରାତିରେ ତାକୁ କହି ମୁଁ ବସାରୁ ବାହାରି ବେଶ୍ୟାଶ୍ରମକୁ ଯାଉଥିଲି । ମୋ ବିଛଣାରେ ତକିଆମାନଙ୍କୁ ଲମ୍ବ କରି ଶୁଆଇ ଦେଇ ତା'ଉପରେ ଚଦରଟିଏ ଘୋଡ଼ାଇ ଦେଇ ଯାଉଥିଲି । ରାତି ଘଡ଼ିଏ ଦୁଇଘଡ଼ି ଥାଏ— ବାଡ଼ିରୁ ଆଉଜା ହୋଇଥିବା ପାଚେରି କବାଟ ବାଟେ ଆସି ପଞ୍ଜରରେ ମୁଁ ହାତ ମାରେଁ ଓ ଭାଇନା-ଗତ-ପ୍ରାଣ ଉଦୟ ଉଠିକରି ଘରର କବାଟ ଖୋଲିଦିଏ ଓ ମୁଁ ଘର ଭିତରକୁ ଆସି ବିଛଣାରେ ଶୋଇପଡ଼େ । ବସାର ଲୋକମାନେ ମୋତେ ମୋ ଶେଯରେ ଶୋଇଥିବା ଦେଖନ୍ତି । ଏହିପରି ଦିନାକେତେ ଗଲା । ପ୍ରବଚନ ଅଛି 'Frequent Commission of sins hardens the heart' କ୍ରମଶଃ ଏତେଦୂର ଦାମ୍ଭିକ ହେଲି ଯେ କେଦାରବାବୁଙ୍କୁ ସୁଦ୍ଧା ମାନିଲି ନାହିଁ ଓ ପ୍ରକାଶ୍ୟରେ ତାଙ୍କର ବିଦ୍ରୋହୀ ହେଲି । ସେତେବେଳେ ରାତ୍ରି ଅଭିଯାନ ସଙ୍ଗେ ଦିବାଭିଯାନ ସଂଯୋଜିତ ହେଲା । କ୍ଲାସରେ ହାଜିରା ପକାଇଦେଇ କଲେ କୌଶଳେ କ୍ଲାସରୁ ଖସିଆସି ମୁଁ ଉକ୍ତ ତୀର୍ଥଯାତ୍ରୀ ହେଲି । କଲେଜକୁ ଯିବା ପାଇଁ ବସାରୁ ବାହାରି ସେଠାରୁ ଖସିଆସି ଦିବାତୀର୍ଥ, ପୁଣି କଲେଜ

ଛୁଟି ହେବାପରେ ବସାକୁ ଆସି ସେଠାରେ ଜଳଖିଆ ସାରି ପୁଣି ସାଙ୍ଗମାନଙ୍କ ସଙ୍ଗେ ସାନ୍ଧ୍ୟତୀର୍ଥ ଦର୍ଶନ ଓ ରାତି ୧୦ଟା ବେଳେ ବସାକୁ ଆସି ରାତ୍ରିଭୋଜନ ପରେ 'ଜହ୍ନ'ର ସନ୍ଧାନରେ ପୁଣି ରାତ୍ରି-ତୀର୍ଥ ଦର୍ଶନ । ଏ ଅବସ୍ଥାରେ ପଢ଼ା-ପଢ଼ିର ଅବସ୍ଥା ସହଜରେ ଅନୁମାନ କରାଯାଇ ପାରେ । ପ୍ରଥମବର୍ଷ ଏଫ୍.ଏ. ଫେଲ ହେଲି ଓ ଦ୍ୱିତୀୟବର୍ଷ ମଧ୍ୟ ଏଫ୍.ଏ. ଫେଲ ହେଲି । ଏହି ସମସ୍ତ ମଧ୍ୟରେ ପୂର୍ବୋକ୍ତ ତୀର୍ଥ ଯାତ୍ରାର ଅବଶ୍ୟମ୍ଭାବୀ ପୁରସ୍କାର (ଉପଦଂଶ, ମେହ) ମଧ୍ୟ ମିଳିଲା । ନନା ମୋ କୀର୍ତ୍ତିକଳାପ ଶୁଣି ଏପରି ମର୍ମପୀଡ଼ିତ ହେଲେ ଯେ ବୋଧହୁଏ ଦୁଇବର୍ଷ ସେ ମୋ ମୁଖାବଲୋକନ କରି ନଥିଲେ । ଏ ଦଶା ମୋର ଏକା ହେଲା ନାହିଁ । ମୋ ସାଙ୍ଗୀଙ୍କର ମଧ୍ୟ ସେହି ଦଶାହେଲା । ଦ୍ୱିତୀୟଥର ଏଫ-ଏ. ଫେଲ ହେଲାପରେ ମୁଁ ଭାବିଲି ଯେ ଏଠାରେ କୁସଙ୍ଗୀମାନଙ୍କ ପ୍ରରୋଚନାରେ ମୁଁ ବିପଥଗାମୀ ହୋଇଛି, କଲିକତା ଯାଇ ପଢ଼ିଲେ ସଙ୍ଗୀମାନଙ୍କ Influenceରୁ ଦୂରରେ ରହିବି । ମୋର ଏ କଳ୍ପନା ପଟିଆ ନିବାସୀ ମୋ ମାମୁଁ ଅଜା ଶ୍ରୀ କୁଳମଣି ପ୍ରହରାଜଙ୍କ ଦ୍ୱାରା ନନାଙ୍କୁ ଜଣାଇଲି । ସେ ନନାଙ୍କୁ କହୁଥାଆନ୍ତି ଓ ମୁଁ ଉକ୍ତ କୋଠରୀର ଦୁଆର ମୁହଁରେ ଲୁଚିକରି ଉକ୍ତ କଥୋପକଥନ ଶୁଣୁଥାଏ । ମାମୁଁ ଅଜା କହିଲେ "ଗୋପାଳର କଟକରେ ପଢ଼ାପଢ଼ିରେ ସାଙ୍ଗମାନଙ୍କ ଯୋଗୁଁ ବ୍ୟାଘାତ ଘଟୁଛି । ସେ କହୁଛି ଯେ କଲିକତାକୁ ଯାଇ ସେଠାରେ ଏଫ. ଏ. ପଢ଼ି ପରୀକ୍ଷା ଦେବ । ପିତୃଦେବ ମାମୁଁ ଅଜାଙ୍କୁ ଜଣେ ଭଣ୍ଡାରୀ ଦମ୍ପତିଙ୍କ କାହାଣୀ କହିଲେ—

"ଜଣେ ଭଣ୍ଡାରୀର ସ୍ତ୍ରୀ ଦୁଷ୍ଟଚରିତ୍ରା ହେବାରୁ ଏକଥା ଭଣ୍ଡାରୀର କର୍ଣ୍ଣଗୋଚର ହେଲା । ଅନେକେତେବେଳେ ଭଣ୍ଡାରୀକୁ ଲୋକେ ପ୍ରକାଶ୍ୟ ଭାବରେ ତା ସ୍ତ୍ରୀର ଦୁଷ୍ଟଚରିତ୍ର କଥା କହିଲେ । ଭଣ୍ଡାରୀ ଏହା ଶୁଣି ସେ ଗ୍ରାମରୁ ଉଠିଯାଇ ଅନ୍ୟ ଗ୍ରାମରେ ଘର କରି ରହିବ ବୋଲି ସ୍ଥିର କଲା ଓ ଭଣ୍ଡାରୁଣୀକୁ ଏକଥା କହିଲା । ଅନେ ସେ ଖଣ୍ଡିଏ ଶଗଡ ଭଡ଼ା କରି ସେଥିରେ ଘରର ଆସବାବପତ୍ର ବୋଝେଇ କରି ଶଗଡ ପଛରେ ଆଗେ ଚାଲିଲା । ତା, ପଛରେ ଭଣ୍ଡାରୁଣୀ ଯାଉଥାଏ । ଭଣ୍ଡାରୁଣୀ ବାରମ୍ବାର ପୂର୍ବନିବାସ ଗ୍ରାମ ଆଡକୁ ଫେରି କରି ଅନାଉଥାଏ । ଏପରି ବାରମ୍ବାର

କରିବାରୁ ଭଣ୍ଡାରୀ ବିରକ୍ତ ହୋଇ ଭଣ୍ଡାରୁଣୀକୁ ପଚାରିଲା—"କିଲୋ ! ଆମେତ ସେ ଗାଆଁ ଛାଡ଼ି ଚାଲି ଆସିଲେଣି, ତୁ କିଆଁ ଥରକୁ ଥର ସେ ଗାଆଁକୁ ଫେରି ଅନାଉଚୁ ?" ଭଣ୍ଡାରୁଣୀ ଏହାଶୁଣି ଭଣ୍ଡାରୀକୁ କହିଲା—"ମୁଁ ପୁରୁଣା ଘରେ ଯେଉଁ ଚୁଲ୍ଲୀଟି ପାରିଥିଲି ସେ ଚୁଲ୍ଲୀଟିତ ଉଠି ଆସି ପାରିଲା ନାହିଁ । ସେଇ ଚୁଲ୍ଲୀ କଥା ମୋର ମନେ ପଡ଼ିବାରୁ ସେ ଚୁଲ୍ଲୀକୁ ସୁମରଣା କରି ମୁଁ ସେ ଗାଆଁ ଆଡ଼କୁ ଚାହୁଁଚି ।" ଭଣ୍ଡାରୀ ଏହା ଶୁଣି କହିଲା "ମଲା ! ଏହି ଅପସନ୍ଦ କଥାଟା ତୁ ଝୁରି ହେଉଛୁ ! ଆମେ ଯେଉଁ ଗାଆଁରେ ଘର କରିବାକୁ ଯାଉଛେ ସେ ଗାଆଁରେ ନୂଆ ଘରେ କଣ ଆଉ ନୂଆ ଚୁଲ୍ଲୀ କରି ପାରିବୁ ନାହିଁକି ?" ଭଣ୍ଡାରୁଣୀ ଏହା ଶୁଣି କହିଲା "ସେ ଗାଆଁରେ ଯଦି ନୂଆ ଚୁଲ୍ଲୀ କରି ପାରିବ ତେବେ ଆଉ କେଉଁ ନୂଆ କଥା ନ କରି ପାରିବକି ?" ଭଣ୍ଡାରୀ ଏହା ଶୁଣି ଆଉ ନୂଆ ଗାଁକୁ ଗଲା ନାହିଁ । ବାଟରୁ ଶଗଡ଼ ଫେରାଇ ପୁରୁଣା ଗାଆଁକୁ ବାହୁଡ଼ି ଆଇଲା । ସେ ଭଣ୍ଡାରୁଣୀର ବଚନକା ଶୁଣି ମନେ ମନେ ହେଜିଲା— "ସତେତ ତ ! ନୂଆ ଗାଁରେ କଣ ଭଣ୍ଡାରୁଣୀକୁ ଦୁଷ୍ଟରିଜ ଲୋକ ମିଳିବେ ନାହିଁ ଯେ ମୁଁ ବୃଥାରେ ପୁରୁଣା ଗାଆଁକୁ ଛାଡ଼ି ନୂଆ ଗାଆଁକୁ ଯାଉଛି । ସେଠାକୁ ଯାଇ ମୋ ଭରସା ପୁରୁଣା ଗାଆଁର ନାଟ ଲଗାଇବ ସିନା ।" ଏତିକି ପାଞ୍ଚି ଭଣ୍ଡାରୀ ଆପଣା କର୍ମକୁ ଆଦରି ପୁରୁଣା ଗାଆଁକୁ ଫେରି ଆସି ତା' ପୁରୁଣା ଘରେ ବାସ କରି ରହିଲା ।

ମୋ ପିତୃଦେବ ମାମୁଁ ଅଜାଙ୍କୁ କହିଲେ—"ମାମୁଁ, ଆମେ ତ କୁଳଚନ୍ଦ୍ରମାକୁ ଜନ୍ମ କରିଛୁ । ପାଠ ନ ପଢ଼ାଇଲେ ଲୋକେ ଆମକୁ ନିନ୍ଦା କରିବେ । ଅତଏବ କୁଳଚନ୍ଦ୍ରମା ଯାହା କରିଥାନ୍ତୁ ପଛେ ଆମେ ତାକୁ ଝିକ୍‌ମାରି ପାଠ ପଢ଼ାଇବା । କିନ୍ତୁ ସେ କଲିକତାକୁ ଗଲେ ସେଠାରେ କଣ ତାକୁ ନୂଆ ସାଙ୍ଗ ମିଳିବେ ନାହିଁକି ? ନା ସେଠାରେ ଦୁଷ୍ଟରିଜର ଉପକରଣମାନ ନ ମିଳିବ ? ବାବୁ କଟକରେ ପଢନ୍ତୁ, ପଡିଲେ ପଡ଼ନ୍ତୁ, ଯାହା ମନ ହଉଚି କରନ୍ତୁ, କିନ୍ତୁ ଯେବେ ଜିଦ୍ ଧରି ବସିବେ, ତେବେ ବର୍ତ୍ତମାନ ଆମେ ତ ତାଙ୍କ ହୁକୁମଦାର ହୋଇଛୁ, ତେବେ ବାପଙ୍କ ସୁପୁତ୍ର ହୋଇ ତାଙ୍କୁ କଲିକତାକୁ ଏଫ୍. ଏ. ପଢିବା ପାଇଁ ଅବଶ୍ୟ ଅବଶ୍ୟ ପଠାଇବୁ ।"

**ଅନୁତାପ ଓ ପରିବର୍ତ୍ତନ**—ମୁଁ ଦୁଆରମୁହଁର ଆଡ଼ୁଆଳରେ ଥାଇ ଏକଥା ଶୁଣୁଥାଏ । ଈଶ୍ବରଙ୍କର ଭଙ୍ଗୀ ବଡ଼ ବିଚିତ୍ର । ଏଥି ପୂର୍ବରୁ ମୋର କଟକରେ ଅସଦାଚରଣ ଯୋଗୁ ପିତୃଦେବଙ୍କ ମନୋଦୁଃଖ କଥା ଲୋକ ମୁଖରୁ ଶୁଣିଥିଲି । କିନ୍ତୁ ତାଙ୍କ ଶ୍ରୀମୁଖରୁ ଏ ବେଦନାଭରା ବାକ୍ୟ ଶୁଣି ନ ଥିଲି । ସେହିକ୍ଷଣି ଶୁଣିଲି ଓ ମୋର ଅଦ୍ଭୁତ ମାନସିକ ପରିବର୍ତ୍ତନ ଘଟିଲା । ମାମୁଁ ଅଜାଙ୍କ ଦ୍ୱାରା ମୋର କଲିକତାକୁ ଯିବା ଇଚ୍ଛା ଜଣାଇବା ପୂର୍ବରୁ ଆଶଙ୍କା କରିଥିଲି ଯେ ପିତୃଦେବ ଏ ପ୍ରସ୍ତାବ ଶୁଣି ଗର୍ଜନ ତର୍ଜନ କରିବେ । କାରଣ ମୋ ଅସଚ୍ଚରିତ୍ର ଯୋଗୁ ତହିଁ ପୂର୍ବରୁ ପ୍ରାୟ ଛଅମାସ ପିତୃଦେବ ମୋ ମୁଖାବଲୋକନ କରି ନ ଥିଲେ । କିନ୍ତୁ ପିତୃଦେବଙ୍କ ବେଦନାପୂର୍ଣ୍ଣ ଶ୍ରୀମୁଖ ବଚନ ଶୁଣି ମୋ ହୃଦୟ ଅନୁତାପ ଜର୍ଜର ହୋଇ-ଗଲା । ସେତେବେଳେ ରାତି ୧୦ଟା ବେଳ । ମୁଁ ତତ୍‌କ୍ଷଣାତ୍ ଯାଇ ମୋର ବାଲ୍ୟ ସହଚର ଭିକାରୀଙ୍କୁ ତାଙ୍କଘରୁ ଡାକିଲି ଓ ତାଙ୍କୁ ସଙ୍ଗେ ଘେନି ପିନ୍ଧିଥିବା ଲୁଗା ଓ ଗାମୁଛାକୁ ସମ୍ବଳ କରି କଟକ ଚାଲି କରି ଆସିଲି । ଆସିଲାବେଳେ ଏହି ସଂକଳ୍ପ କଲି ଯେ ଯେବେ ଏଫ୍. ଏ. ପାଶ କରିବି ତେବେ ଘରକୁ ଆସିବି ଓ ନନାଙ୍କୁ ମୁହଁ ଦେଖାଇବି । ନଚେତ୍ ଗୃହତ୍ୟାଗ କରି ଦେଶତ୍ୟାଗୀ ହେବି । [ଏଠାରେ କହିବା ଉଚିତ ଯେ ମୁଁ ଏଣ୍ଟ୍ରାନ୍‌ସ ପାସ କରିବାର ଦ୍ୱିତୀୟ ବର୍ଷ ଅର୍ଥାତ୍ ମୁଁ ଯେତେବେଳେ ସେକେଣ୍ଡଇଅର କ୍ଳାସରେ ପଢୁଥିଲି ପ୍ରଥମଥର ଏଫ୍. ଏ. ପରୀକ୍ଷା ଦେଇ ନ ଥିଲି । ସେ ସମୟରେ ମତେ ୧୮ ବର୍ଷ ହୋଇଥାଏ ଓ ପୁରୀ ରହାଙ୍ଗ ପ୍ରଗନ୍ନାର ରାୟ ଚକ୍ରଧରପୁର ନିବାସୀ ଶ୍ରୀ ଦୟାନିଧି ମିଶ୍ରଙ୍କ ଅଷ୍ଟମ ବର୍ଷୀୟା ଜ୍ୟେଷ୍ଠା କନ୍ୟାଙ୍କ ସଙ୍ଗେ ମୋର ବିବାହ ହୋଇଥିଲା ଓ ବିବାହ ହେବା ପରେ ସଙ୍ଗ ଦୋଷରୁ ମୋର ଚରିତ୍ରର ସ୍ଖଳନ ଘଟିଥିଲା । ସେ ସମୟରେ ମୋର ବାଳିକା ସ୍ତ୍ରୀ ଆମ ଘରେ ରହୁଥିଲେ, କିନ୍ତୁ 'ଗୃହଯୋଗ୍ୟା' ହୋଇ ନ ଥିବାରୁ ତାଙ୍କ ସଙ୍ଗେ ମୋର ଭେଟ ହେଉ ନ ଥିଲା । ଭିକାରୀ ମୋଠାରୁ ବୟସରେ ୨ ବର୍ଷ ବଡ଼ ଥିଲେ । ସେ ଓ ମୁଁ ସଙ୍ଗୀ ରୂପେ ସିଦ୍ଧେଶ୍ୱରପୁରରେ ମାଇନର-ଶ୍ରେଣୀଯାଏ ପଢ଼ିଥିଲୁ ଓ ଦୁହେଁ ଏକ ସମୟରେ ପରୀକ୍ଷା ଦେଇ ଦୁହେଁ ମାଇନରର ଫେଲ ହୋଇ ଭର୍ଣ୍ଣାକୁଲାର ପାଶ କରିଥିଲୁ । ତତ୍‌ପରେ ମୁଁ କଟକ ଆସି କଲେଜିଏଟ

ସ୍କୁଲରେ ପଢ଼ିଲି ଓ ଭିକାନ୍ନା ପାଠ ପଢ଼ିଲେ ନାହିଁ । କିନ୍ତୁ ଗାଆଁକୁ ଗଲେ ଆମେ ଦୁହେଁ ସାଙ୍ଗ ହୋଇ ଖେଳାବୁଲା, ଯାହା ଦେଖିବାରୁ ଅଥଙ୍ଗା ଓ ବମ୍ଭୃଶକୁ ଯିବା ଆସିବା ଓ ରାତିରେ ଅନ୍ୟ ଗ୍ରାମମାନଙ୍କୁ ଯାଇ ନାଟ ଓ ମେଳଣ ଆଦି ଦେଖା, କେଳା କେଳୁଣୀଙ୍କ ନାଚ ଦେଖା ଆଦି କରୁଥିଲୁ । ମୋର କଟକରେ ଅସଚ୍ଚରିତ୍ର ଆଡ୍ଡାରେ ଭିକା'ନ୍ନା ଆସି ବେଳେ ବେଳେ ଯୋଗ ଦେଉଥିଲେ] ଭିକା'ନ୍ନା ଓ ମୁଁ ଦୁହେଁ ଚାଲିଚାଲି କଟକରେ ଭୋର ବେଳେ ପହଞ୍ଚିଲୁ । ଗ୍ରାମରୁ ମୁଁ ମୋ ଲୁଗାପଟା ଓ ପଢ଼ା ବହି ଆଦି ମଗାଇ ପଠାଇଲି । ଭିକା'ନ୍ନାଙ୍କୁ କହିଲି—"ଭିକା'ନ୍ନା ଏଫ୍. ଏ. ପାଶ କଲେ ତୁମର ମୋର ଦେଖା ହେବ । ଇତି ମଧ୍ୟରେ ତୁମେ ମୋତେ ଦେଖା କରିବାକୁ କଟକ ଆସିବ ନାହିଁ ।" ଏହା କହି ତାଙ୍କୁ ମୁଁ ଗ୍ରାମରୁ ବିଦାୟ କଲି ଓ ସେହି ଦିନଠାରୁ ମୋ ପଢ଼ାଘର ଥିବା ଖଞ୍ଜାରେ ମୁଁ ଆବଦ୍ଧ ହୋଇ ପଢ଼ାରେ ମନ ଦେଲି । ମୁଁ ଦୁଇବର୍ଷ ଫେଲ ହୋଇ-ଥିବାରୁ କଲେଜ 'ଲେକଚର ଆଟେଣ୍ଡ' ମୋ ପକ୍ଷରେ ଆବଶ୍ୟକ ନଥିଲା । ବେଳେ ବେଳେ ଅକସ୍ମାତ୍ କଲେଜକୁ ଯାଉଥାଏ । ପଢ଼ାଘର ଖଞ୍ଜାରେ ସବୁବେଳେ ରହୁଥାଏ । କୁଅମୂଳେ ଗାଧୁଆ ପାଧୁଆ କରୁଥାଏ । ସନ୍ଧ୍ୟା-ବେଳେ ସଙ୍ଗୀମାନଙ୍କଠାକୁ କିମ୍ବା ବଜାରକୁ ବୁଲିବା ଏକଦମ ବନ୍ଦ କଲି । ସଙ୍ଗୀମାନେ ଆସି ଦାଣ୍ଡ ଦୁଆରେ ମୋତେ ଡାକିଲେ ଚାକରମାନେ ମୋର ଉପଦେଶ ଅନୁସାରେ କହୁଥାଆନ୍ତି ଯେ ବାବୁ ଘରେ ନାହାନ୍ତି । ସଙ୍ଗୀମାନେ ମଧ୍ୟ ପତ୍ରଦ୍ୱାରା, ପତ୍ରବାହକ ଦ୍ୱାରା ସାକ୍ଷାତକାର ପ୍ରାର୍ଥୀ ହେଲେ । ସମସ୍ତଙ୍କୁ ଚାକରମାନଙ୍କର ଏକମାତ୍ର ଉତ୍ତର "ବାବୁ ଘରେ ନାହାନ୍ତି ।" ମୁଁ ଅକ୍ଲାନ୍ତ ପରିଶ୍ରମ ପୂର୍ବକ ପାଠ୍ୟ ପୁସ୍ତକମାନଙ୍କୁ ଅନ୍ତତଃ ୧୦ ଥର ଆବୃତ୍ତି କଲି । ଯେଉଁଠାରେ ସନ୍ଦେହ ହୁଏ, ରାତିରେ ପ୍ରୋଫେସରମାନଙ୍କ ଘରେ ସେ ବିଷୟ ବୁଝି ଆସୁଥାଏ । ପଢ଼ୁ ପଢ଼ୁ ନିଦ ମାଡ଼ିବ ବୋଲି ଚାହା ଖାଉଥାଏ ଓ ନାସ ଶୁଙ୍ଘୁଥାଏ । ମୋର ପାଠ ପଢ଼ାରେ ଏପରି ମନୋଯୋଗ ଓ 'ସଙ୍ଗ ଦୋଷ', 'ବଜାରବୁଲା' ତ୍ୟାଗ ବିଷୟ ଲୋକ ମୁଖରେ ପିତୃଦେବଙ୍କ କର୍ଣ୍ଣଗୋଚର ହେଲା । ପରୀକ୍ଷା ମାସେ ଖଣ୍ଡେ ଅଛି ପିତୃଦେବ କଟକ ଆସି ବସାରେ ଦୁଇଦିନ ରହିଥିଲେ— ମୁଁ ତାଙ୍କୁ ମାତ୍ର ଆସିଲାବେଳେ ଓ ଘରକୁ ଫେରିଲାବେଳେ

ଦୁଇଥର ଗୋଡ଼ଖସିଲେ ପଡ଼ିଥିଲି । ପିତୃଦେବ ଘରକୁ ଫେରି ଯାଇ ଖଣ୍ଡେ ପତ୍ର ଦେଲେ "ବାବୁ ଗୋପାଳଚନ୍ଦ୍ର, ଶରୀରକୁ ଜଗି ପରିଶ୍ରମ କରିବା ଉଚିତ୍ । ଅତିରିକ୍ତ ପରିଶ୍ରମ କଲେ ଶରୀର ରୁଗ୍ଣ ହେବ, ଅତଏବ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ରଖିବ ।" ଏଥିପୂର୍ବରୁ ମୋ ଉପରେ ବିରକ୍ତ ଥିବାରୁ ପିତୃଦେବ ପ୍ରାୟ ୧୨ ବର୍ଷ ପତ୍ର ଲେଖି ନ ଥିଲେ । ଯେଉଁ କେଦାରବାବୁ ମୋର ଦୁଷ୍ଟଚରିତ୍ର ଯୋଗୁ ଆମ ବସାକୁ ଆସିବା ବନ୍ଦକରି ଦେଇଥିଲେ । ସେ ମଧ୍ୟ ପ୍ରତିଦିନ ମୋ ପାଖକୁ ଆସି, ପାଠପଢ଼ାର ତତ୍ତ୍ୱ ନେବା ଆରମ୍ଭ କଲେ । ସେବର୍ଷ ମୁଁ ଏଫ୍. ଏ. ପରୀକ୍ଷା ଦେଇ ଓ ଫାଷ୍ଟ ଡ଼ିଭିଜନରେ ପ୍ରଥମ ସ୍ଥାନ ଅଧିକାର କରି ପାସ୍ କଲି । ପାସ୍ ଖବର ଶୁଣି ଗ୍ରାମକୁ ଗଲି । ମୋର ସେ ସମୟରେ ଏକ ଝୁଙ୍କ୍ ଲାଗିଥାଏ ଯେ ମୁଁ ଏଫ୍. ଏ. ପାସ୍ କରିବା ପରେ ମୋର ଆଶୀର୍ବାଦ ଘର (ନଷେକ) ସମ୍ପାଦିତ ହେଲା । ଏଫ୍. ଏ. ପାସ କରିବା ପରଠାରୁ ମୋର ନିୟମିତ ଡାଏରୀ ଅଛି । ସେଥିରୁ ବହୁତ ସାହାଯ୍ୟ ମିଳିବ ।

**ମୋର ବିବାହ ପ୍ରସଙ୍ଗ** – ମୁଁ ତା ୨୭।୩।୭୪ରେ ଜନ୍ମ ଗ୍ରହଣ କରିଥିଲି । ସ୍ୱନ୍ ୧୮୯୧ ସାଲରେ ଏଣ୍ଟ୍ରାନସ ପାସ ବେଳକୁ ମୋର ବୟସ ୧୭ ବର୍ଷ ୫ ମାସ, କିନ୍ତୁ ସ୍କୁଲ ଅନୁସାରେ ୧୪ ବର୍ଷ ୭ ମାସ । ଶେଷଥର ବି. ଏଲ. ପରୀକ୍ଷା ଦେବାବେଳେ ମୋର ବୟସ ୨୮ ବର୍ଷ ୨ ମାସ, କିନ୍ତୁ ସାର୍ଟିଫିକେଟ ବୟସ ୨୭ ବର୍ଷ । ସେକେଣ୍ଡଇଅରରେ ପଢ଼ିଲାବେଳେ ମୋର ପ୍ରକୃତ ବୟସ (୧୮୯୩ ସାଲରେ) ୧୮ ବର୍ଷ । ମୋର କନିଷ୍ଠ ଉଦୟନାଥ ମୋଠାରୁ ୨ ବର୍ଷ ସାନ । ଆମ୍ଭ ବଂଶ ମର୍ଯ୍ୟାଦା ବଢିବା ଲାଗି ଆମ୍ଭର ପୁରୀର ରାହାଙ୍ଗ ବ୍ରାହ୍ମଣଶାସନରେ ବନ୍ଧୁ ବାନ୍ଧୁଥିଲେ । ମୋ ମାମୁଁଙ୍କ ଘର ବୀରନରସିଂହପୁରରେ । ମୋର ତିନି ଭଉଣୀ ପୁରୀ ରାହାଙ୍ଗ-ଶାସନର କୁଳୀନ ବ୍ରାହ୍ମଣ ବଂଶରେ ବିବାହ କରିଥିଲେ । କଟକ ଜିଲ୍ଲାର କେତେକ ଜମିଦାରଙ୍କ ବଂଶ ସଙ୍ଗେ ମୋର ବିବାହ ପ୍ରସଙ୍ଗ ଉତ୍ଥାପିତ ହୋଇଥିଲା । କିନ୍ତୁ ପିତୃଦେବ ତହିଁରେ ସ୍ୱୀକୃତ ହେଲେ ନାହିଁ । ସେ ସତ୍ୟବାଦୀକୁ ଯାଇ ସେଠାରେ ମାସେ ମାସେ ରହୁଥିଲେ ଓ ରାହାଙ୍ଗିଆ ବନ୍ଧୁମାନଙ୍କୁ ଶିଙ୍ଖୁଳୁ ଥିଲେ । ସେମାନେ ଗରୀବ ଥିବାରୁ କେତେକ ଆମ-

ଘରକୁ ଓ ତଣଚୋ ରଘୁନାଥ ସାମନ୍ତଙ୍କ ଘରକୁ ଆସୁଥିଲେ । ପିଚ୍ଛ-ଦେବ ମୋ' ପାଇଁ ଗଡ଼ଚନ୍ଦ୍ରଧରପୁରର ସ୍ୱର୍ଗତ ଲେଙ୍କେଇ ପ୍ରହରାଜଙ୍କ ବଂଶଧର ଶ୍ରୀ ଦସ୍ୟାନିଧି ମିଶ୍ରଙ୍କ ଜ୍ୟେଷ୍ଠା କନ୍ୟାକୁ ସ୍ଥିର କଲେ । ରହାଙ୍ଗର ସଙ୍ଗତିସମ୍ପନ୍ନ ଲୋକେ ଆମ୍ଭମାନଙ୍କ ଘରେ ବନ୍ଧୁ ବାନ୍ଧିବାକୁ ରାଜି ହେଉ-ନ ଥିଲେ । ଏପରି ସ୍ଥଳେ ଆମେ ଯେଉଁ କନ୍ୟାମାନଙ୍କୁ ବିବାହ କରୁଥିଲୁ ସେମାନେ ଗରିବ ଥିଲେ ଓ ବରକୁ, ବରଯାତ୍ରୀମାନଙ୍କୁ ତାଙ୍କ ଗ୍ରାମକୁ ନେଇ ସେମାନଙ୍କୁ ଚର୍ଚ୍ଚା କରିବାକୁ ସେମାନଙ୍କର ଶକ୍ତି ନ ଥିଲା । ଫଳତଃ ଆମେ କିଛି ଶୁଳ୍କ ଦେଇ କନ୍ୟାମାନଙ୍କୁ ଆମ ଘରକୁ ଆଣୁଥିଲୁ ଓ ଆମ ଘରେ ବିବାହ କର୍ମ ସମାହିତ ହେଉଥିଲା । ମୋ ଶ୍ୱଶୁରଙ୍କ ବଂଶ ପୂର୍ବେ ସଙ୍ଗତି ସମ୍ପନ୍ନ ଥିଲେ । କିନ୍ତୁ ମକଦ୍ଦମା ମାମଲା ଲାଗି ହାଇକୋର୍ଟ ପର୍ଯ୍ୟନ୍ତ ଯାଇ ସେ ଶ୍ରୀହୀନ ହୋଇଥିଲେ । ବିବାହ ସମୟରେ ମୋ ସ୍ତ୍ରୀଙ୍କ ବୟସ ୮ ବର୍ଷ ହୋଇଥିଲା । ମୋ ଶଶୁର, ଶାଶୂ, ତାଙ୍କ ଜ୍ୟେଷ୍ଠା, କନିଷ୍ଠା କନ୍ୟା ସମସ୍ତେ ଆମ ଘରକୁ ଆସିଲେ ଓ ବିବାହ ହେବା ପର୍ଯ୍ୟନ୍ତ ଆମ ଗ୍ରାମଠାରୁ ଅଳ୍ପ ଦୂରବର୍ତ୍ତୀ ଅଥଙ୍ଗା କଚେରୀରେ ରହିଲେ । ମୋ ବିବାହ କିଛିଦିନ ପୂର୍ବରୁ ମୋ ଦେଠେଇ ତାଙ୍କ ପୋଷ୍ୟପୁତ୍ର ଉଦୟନାଥର ବିବାହ ପାଇଁ ପିତାଙ୍କ ସଙ୍ଗେ ଅଳି କଲେ । ପୁରୀ ଜିଲ୍ଲାରୁ କନ୍ୟା ବାଛି-ବାକୁ ସେତେବେଳେ ସମୟ ନ ଥିଲା । ଅଗତ୍ୟା ସ୍ୱର୍ଗତ କୃଷ୍ଣଚନ୍ଦ୍ର ନନ୍ଦଙ୍କ ଦ୍ୱିତୀୟା ଭଗ୍ନୀଙ୍କ ସହ ଉଦର ସ୍ଥିର ହେଲା । ସେ କନ୍ୟାଙ୍କ ବୟସ ୧୦ ବର୍ଷ । ଏକଦିନ ମୋର ଓ ଉଦୟନାଥର ବିବାହ ହେଲା । ସେ ସମୟରେ ବ୍ରାହ୍ମଣ ସମାଜରେ ପିଲାକନ୍ୟା ବିବାହ କରୁଥିଲେ ଓ ବିବାହ ରାତିରୁ ସପ୍ତମଙ୍ଗଳା ରାତି ପର୍ଯ୍ୟନ୍ତ ବରକନ୍ୟା ମଧୁଶଯ୍ୟାରେ ଏକତ୍ର ଶୟନ କରୁଥିଲେ । ତତ୍ପରେ ଆଶୀର୍ବାଦ ଘର ପର୍ଯ୍ୟନ୍ତ ବର-କନ୍ୟାଙ୍କର ଭେଟ ହେଉ ନ ଥିଲା । ବିବାହର ପ୍ରଥମ ରାତିରେ ବହୁ ସାଧ୍ୟ ସାଧନା କଲି, କିନ୍ତୁ ମୋ ସ୍ତ୍ରୀଙ୍କୁ କଥା କୁହାଇ ପାରିଲି ନାହିଁ । ତହିଁଆର ଦିନ ଏକଥା ଅନ୍ୟମାନଙ୍କ ଦ୍ୱାରା ଶାଶୂଙ୍କ କାନକୁ ଗଲା । ବୋଧହୁଏ ତାଙ୍କ ପ୍ରେରଣାରେ ଦ୍ୱିତୀୟ ରାତ୍ରରେ ମୋର ସ୍ତ୍ରୀଙ୍କ ସଙ୍ଗେ ବାକ୍ୟାଳାପ ହେଲା । ତାଙ୍କଠାରୁ ବୁଝିଲି ଯେ ସେ ବର୍ଣ୍ଣବୋଧକ ପଢି-ଛନ୍ତି । ତାଙ୍କୁ ଉପଦେଶ ଦେଲି ଯେ ତୁମେ ପାଠ ପଢ଼ିବ । ଲୁଚେଇ କରି

କିଛି ମିଷ୍ଟାନ୍ନ ମଧୁଶଯ୍ୟା ଘରକୁ ନେଇଥିଲି, ଯେତେ ସାଧ ସାଧନା କଲି ସେ ତାହା ଖାଇଲେ ନାହିଁ । ଚତୁର୍ଥୀ ରାତ୍ରରେ ମଧ୍ୟ ସାଧ ସାଧନା କଲି । ସେ ଖାଇଲେ ନାହିଁ । ମୁଁ ମନେ ମନେ ବିରକ୍ତ ହେଲି । ସେହି ରାତ୍ରି ଠାରୁ ତାଙ୍କର ମୋର ବାକ ଅବରୁଦ୍ଧ ବାକ୍ୟାଳାପ ହେଲା ନାହିଁ । ତତ୍‌ପରେ ସେ ଆମ ଘରେ ଚନ୍ଦ୍ରବନ୍ଦାପନା ପରେ ସେ ପିତା ମାତାଙ୍କ ସହ ନୂଆ ଗାଁ ଗଲେ । ଯିବା ପୂର୍ବରୁ ମୁଁ ଲଜ୍ଜା ତ୍ୟାଗ କରି ଶ୍ୱଶୁରଙ୍କୁ କହିଲି ଯେ ତାଙ୍କୁ ପାଠ ପଢ଼ାଇବେ । ସେଥି ପାଇଁ ଲୁଚେଇ କରି ବର୍ଣ୍ଣବୋଧକ, ଗ୍ରନ୍ଥମାଳା, କାଗଜ କଲମ ଆଦି ଶ୍ୱଶୁରଙ୍କ ଜମାକଲି । ମଝିରେ ମଝିରେ ମୋ ସ୍ତ୍ରୀଙ୍କ ପିଲିଆ ଅକ୍ଷରରେ ଖଣ୍ଡେ ଖଣ୍ଡେ ଚିଠି ପାଉଥାଏ । ଥରେ କିଛି ମିଷ୍ଟାନ୍ନ, ଚିଠିକାଗଜ, ହସ୍ତାକ୍ଷର ଖାତା, ଦୁଆତ, କଲମ, ଶ୍ୱଶୁରଙ୍କ ଖର୍ଚ୍ଚ ପାଇଁ କିଛି ଟଙ୍କା ପଠାଇଥିଲି । ସେ ସମୟରେ ସେହାଙ୍ଗ ବ୍ରାହ୍ମଣ ଶାସନ ରକ୍ଷଣ ଶୀଳତାର ଆଉ୍ଡା ଥିଲି । ଜୋଇଁ ଶଶୁରଘରକୁ ସ୍ତ୍ରୀ ପାଇଁ ଜିନିଷ ପଠାଇଛି, ଏହା ସେଠାରେ ବିଶେଷ ଅସନ୍ତୋଷ ଉପୁଜାଇଲା । ଜିନିଷର ବାହକ ବିଦେଇ ବାରିକ ଫେରିଆସି ମୋତେ ଶ୍ୱଶୁର ଓ ମୋ ସ୍ତ୍ରୀଙ୍କର ପତ୍ର ଦେଲା । କ୍ରମଶଃ ଏ କଥା ପ୍ରଘଟ ହେଲା । ଦିନେ ମୋ ମାତୃଦେବୀ ମତେ ଡାକିକରି କହିଁ ନେଇ ବହୁତ କଥା କହିଲେ—"ଗୋପାଳ ! ତୁ ତ ମତେ ବୋହୂ ପାଖକୁ ଜିନିଷ ପଠାଇବା କଥା କହିଥିଲେ ମୁଁ ବିଦେଇ ବାରିକ ହାତରେ ପଠାଇ ଦେଇ ଥାଆନ୍ତି । ତୁ ଲୋକ ପଠାଇବାରୁ ସେହାଙ୍ଗରେ ହାଟ ବସିଛି । ଯାହା ବୋହୂ ପାଖକୁ ପଠାଇବା କଥା ଏଣିକି ମୋତେ କହିବୁ, ମୁଁ ପଠାଇ ଦେବି ।" ମୁଁ ମାତୃଦେବୀଙ୍କ କଥା ପାଳିଲି । ବିବାହର ବର୍ଷକ ପରେ ମୋ ସ୍ତ୍ରୀଙ୍କୁ ବୋଉ ଆମ ଘରକୁ ଅଣାଇଲେ । ଶ୍ୱଶୁରଙ୍କ ଅବସ୍ଥା ଭଲ ନଥିବାରୁ ସେ ମଧ୍ୟ ଅପ୍ରାପ୍ତ ବୟସ୍କା କନ୍ୟାକୁ ଆମ ଘରକୁ ପଠାଇଦେଲେ । ମୁଁ କଲେଜରେ ପଢ଼ୁଥାଏଁ; ଗ୍ରାମକୁ ଯାଇ ସ୍ତ୍ରୀଙ୍କ ସଙ୍ଗେ ୫।୧୦ ମିନିଟ୍ ଭେଟ ହେବାକୁ ଗୋପନରେ ଚେଷ୍ଟା କରୁଥାଏଁ । ମାତୃଦେବୀ ଏ କଥାର ସୁରାକ୍ ପାଇ ମୋତେ କହିଲେ "ଗୋପାଳ ! ଘଇ ଭଗାରି ଏକଥା ଜାଣିଲେ ଗାଁରେ ନିନ୍ଦାହେବ । ଏପରି କରିବୁ ନାହିଁ ।" ଦିନେ ଉପର ବେଳା ମୋ ଅପ୍ରାପ୍ତବୟସ୍କା ସ୍ତ୍ରୀ ଆମଘର

ଗୋଟିଏ କୋଠରୀରେ ଥାଆନ୍ତି । ଏହି ସମୟରେ ସେହି କୋଠରୀରେ ଥିବା ଆଲମାରିରୁ ବାକ୍ସଟିଏ ଆଣିବାକୁ ବୋଉ ମୋତେ ପଠାଇଲେ । କୋଠରି ଦୁଆର ମୁହଁରେ ନିଜେ ଜଗିକରି ଠିଆ ହେଲେ । ମୁଁ ଭିତରକୁ ଯାଇ ଦେଖିଲି ମୋ ସ୍ତ୍ରୀ ଠିଆ ହୋଇଛନ୍ତି । ମୁଁ ତାଙ୍କୁ ସେଠାରେ ଦେଖିବି ବୋଲି ଆଶା କରିନଥିଲି । ବେଶି ୨।୪ ମିନିଟ କଥାବାର୍ତ୍ତା ହେଲି । ଏହି ସମୟରେ ବୋଉ ଡ଼ାକଦେଲେ ଓ ମୁଁ ପଦାକୁ ବାହାରି ଆସିଲି । ବୋଧହୁଏ ମୋ ସ୍ତ୍ରୀଙ୍କର ପ୍ରଥମ ରଜୋଦର୍ଶନ ହେବା ପୂର୍ବରୁ ବୋଉଙ୍କ ଗୁପ୍ତ ବ୍ୟବସ୍ଥାରେ ମୋ ସଙ୍ଗେ ସ୍ତ୍ରୀଙ୍କର ୪ବର୍ଷ ମଧ୍ୟରେ ୩।୪ଥର ଥରକେ ୫।୧୦ ମିନିଟ୍ ପାଇଁ ଭେଟ ହୋଇଥିବ । ସବୁ ଥର ବୋଉ ଦୁଆର ମୁହଁରେ ବାଆଁରେଇ ହୋଇ ବସି ପ୍ରହରୀର କାର୍ଯ୍ୟ କରୁଥାଆନ୍ତି । ସେତେବେଳେ ମୋର କଣ୍ଠକରେ ସୁସଙ୍ଗୀ ଲାଭ ଓ ଓ ପଞ୍ଚମକାର ଉପାସନା ଚାଲିଥାଏ । ମଝିରେ ମଝିରେ ଭଉଣୀମାନେ ଆସି ଆମ ମଜଲିସ୍‌ରେ ଯୋଗ ଦିଅନ୍ତି । ବେଳେ ବେଳେ ମୋତେ ଡ଼ାକି ନେଇ ତାଙ୍କ ସ୍ତ୍ରୀଙ୍କ ସଙ୍ଗେ ଦେଖା କରାଉ ଥାଆନ୍ତି । ଏହି 'ପ୍ରତ୍ୟକ୍ଷ ଦର୍ଶନର'ର ସୁଯୋଗ ପାଇ ସ୍ୱାଧୀନତାର ଅପବ୍ୟବହାର କରି 'ପରୋକ୍ଷ ଦର୍ଶନ' ଅପରାଧରେ ମଧ୍ୟ ଲିପ୍ତ ହେଲି । ଏସବୁ ଆଜି ଭାବିଲାବେଳେ ମନରେ ଦାରୁଣ ଦୁଃଖ ଉପୁଜୁଛି । ସେତେବେଳେ ବୟସ ମଦରେ ଏ ସବୁର ଗୁରୁତା ଉପଲବ୍ଧି କରୁନଥିଲି । କେତେଦିନ ପରେ ମୁଁ ଶୁଣିଲି ଯେ ମୋ ସ୍ତ୍ରୀଙ୍କର ପ୍ରଥମ ରଜୋଦର୍ଶନ ହୋଇଛି । ଏ ସମ୍ବାଦ ଶୁଣିବା ପରେ ମୁଁ କେତେଥର ଗ୍ରାମକୁ ଯାଇଥିବି, କିନ୍ତୁ ବୋଉ କହିଲେ ଯେ ମୋ ସ୍ତ୍ରୀଙ୍କର 'ଗଣ୍ଡଦୋଷ' ଥିବାରୁ ଦେଖାକଲେ ମୋର ଅମଙ୍ଗଳ ହେବ । ଏକବର୍ଷ 'ଗଣ୍ଡଦୋଷ' ହେତୁ ମୋ ସ୍ତ୍ରୀଙ୍କ ସଙ୍ଗେ ମୋର ଦେଖା ହୋଇନଥିଲା । ଆଶୀର୍ବାଦ ଘର ରାତିରେ ମୁଁ ଅନୁଭବ କଲି ଯେ ମୋ ସ୍ତ୍ରୀଙ୍କର ବୟସ ୧୨ବର୍ଷ ଓ ସେ ପ୍ରକୃତରେ ଗୃହଯୋଗ୍ୟା ହୋଇନଥିଲେ । ସେହି ରାତିରେ ମୋର ଚୈତନ୍ୟୋଦୟ ହେଲା । ଗତ ତିନିବର୍ଷର ଉଚ୍ଛୃଙ୍ଖଳ ଦୁର୍ନୀତିର ଦଣ୍ଡ ମୋତେ ମିଳିଲା ବୋଲି ମନକୁ ସାନ୍ତ୍ୱନା ଦେଲି । ତହିଁର କେତେଦିନ ପରେ ମୋର ଶିବପୁର ଇଞ୍ଜିନିଅରିଂ କଲେଜକୁ ପଢ଼ିବାକୁ ଯିବାପାଇଁ କଲିକତା ଯିବାକୁ ହେଲା । ସେତେବେଳକୁ ମୋର ଚରିତ୍ରର ସୁପରିବର୍ତ୍ତନ

ଘଟିଥିଲା । ଜଗାଇ ମାଧାଇ ଦୁର୍ଦ୍ଦାନ୍ତ ଦୁରାଚାରୀ ଥିଲେ । କିନ୍ତୁ ଶ୍ରୀଚୈତନ୍ୟଙ୍କ ପ୍ରସାଦରୁ ସେମାନେ ଆଦର୍ଶ ଭକ୍ତ ହୋଇଥିଲେ । ମୋର ମଧ୍ୟ ତାହାହିଁ ହେଲା ।

**ନାକଫୋଡ଼ା ବେହେରା**— ମୋ ଜୀବନରେ ମଧ୍ୟ ମହାପରିବର୍ତ୍ତନ ଘଟିଲା । ଏଣ୍ଟ୍ରାନ୍ସ ପାସ କରି ଫାଷ୍ଟଇଅର କ୍ଲାସରେ ମୋର ଚରିତ୍ର ଦୋଷ ଘଟିନଥିଲା । କିନ୍ତୁ ସେକେଣ୍ଡ୍ ଇଅର କ୍ଲାସରେ ଯେଉଁ ତିନିବର୍ଷ ରହିଲି ସେଥି ମଧ୍ୟରୁ ପ୍ରଥମ ଦୁଇବର୍ଷ କଟକରେ ଓ ଗ୍ରାମରେ ସାଙ୍ଗ ପିଲାଙ୍କ ସଙ୍ଗେ ମିଶି ମୋର ଚରିତ୍ରର ଭୟଙ୍କର ସ୍ଖଳନ ଘଟିଲା । କଟକରେ ବାରାଙ୍ଗନା ତୀର୍ଥ ଦର୍ଶନ ଓ ତହିଁ ସଙ୍ଗେ ମଦ୍ୟପାନ ଓ ଏସବୁରେ ଅବଶ୍ୟମ୍ଭାବୀ ଫଳ ଉପଦଂଶ, ମେହ ଓ ବାଘୀ ମଧ୍ୟ ମତେ ଆକ୍ରମଣ କଲା । ଗ୍ରାମରେ ଗାଉଁଲି ବୈଦ୍ୟଙ୍କଠାରୁ 'ରସକର୍ପୂର' ଆଦି ପାରଦଘଟିତ ଔଷଧ ଖାଇ ଦାନ୍ତପାଟି ଧରିଲା ଓ ଦିନାକେତେ ଶଯ୍ୟାଗତ ହେଲି । ସେ ସମୟରେ କଟକରେ ନାକଫୋଡ଼ା ବେହେରା ନାମକ ଜଣେ ବଜାରୀ ଦୁଷ୍ଟ ବ୍ୟକ୍ତି ଥାଏ । ସନ୍ଧ୍ୟାପରେ ସେ ବେଶ୍ୟା ପଡ଼ାରେ ବୁଲେ । ବେଶ୍ୟାଘରକୁ ଆସୁଥିବା ଭଦ୍ର ଓ ପଦସ୍ଥ ବ୍ୟକ୍ତିମାନଙ୍କ ସୁରାକ୍ ପାଇଲେ ସେ ଉକ୍ତ ବେଶ୍ୟା ଦ୍ୱାରରେ ଛକି ବସିଥାଏ । ରସିକାବାବୁ ବେଶ୍ୟାଘରୁ ବାହାରିବା ମାତ୍ରେ ବାବୁଙ୍କୁ ଭେଟିକରି ପ୍ରଥମେ ଭଦ୍ର ଭାବରେ ଓ ତହିଁରେ କୃତକାର୍ଯ୍ୟ ନହେଲେ ଅଭଦ୍ର ଭାବରେ ବାବୁଙ୍କଠାରୁ କିଛି ଅର୍ଥ ଓ ଅର୍ଥାଭାବରେ ଘଣ୍ଟା ଚେନ୍ ଶାଲ, ଆଲୁଆନ୍ ଆଦି କାଢ଼ି ନଏ । ବଜାରରେ ପାଟିତୁଣ୍ଡ ଓ ସୋର ଗୋଳ ହେଲେ କାଳେ ସାଇପଡ଼ିଶା ଆସି ଜମା ହେବେ ଓ ବାବୁଙ୍କ ମହତ୍ତ୍ୱ ପଦାରେ ପଡ଼ିବ ଏଥିଯୋଗୁଁ ବାବୁ ଆପଣା ମହତ୍ତ୍ୱକୁ ଡରି ନାକଫୋଡ଼ାକୁ ବୋଧଶୋଧ କରନ୍ତି । ଯେଉଁ ବାବୁଙ୍କଠାରୁ କିଛି ମିଳିବାର ଆଶା ନଥାଏ ସେମାନଙ୍କୁ ନାକଫୋଡ଼ା ଗୋଟାକେତେ ଉତ୍ତମ ମଧ୍ୟମ ଦେଇ ଓ ଆପଣା ସ୍ତ୍ରୀ ସଙ୍ଗେ ଭାଇ ସମ୍ପର୍କ ଲଗାଇ ସମ୍ବୋଧନ କରି ବିଦାୟ ନଏ । ମୋର ଓ ମୋର କେତେଜଣ ସଙ୍ଗୀଙ୍କ ଭାଗ୍ୟରେ କଟକରେ ଦୁଇଥର ଏ ଅନୁଭବ ଘଟିଥିଲା କିନ୍ତୁ ଏଫ.ଏ. ପରୀକ୍ଷା ଦେବା ପୂର୍ବରୁ ଆଠମାସ ମୁଁ ଏସବୁ ଦୁଷ୍କରିତ୍ର ତ୍ୟାଗ କରିଥିଲି । ପିତୃଦେବଙ୍କର

କୁଳମଣି ମାମୁଁ ଅଜାଙ୍କ ସଙ୍ଗେ ବେଦନାଭରା କଥାବାର୍ତ୍ତା ଶୁଣିବା ଦିନରୁ ମୋର ଦୁଷ୍ଟଗ୍ରହ ସୁଧୁରିଲା ।

**ମୋର କଲିକତା ଯାତ୍ରା**—ଏଫ.ଏ. ପାଶ୍ କରିବାପରେ ମତେ ଇଞ୍ଜିନିୟରିଂ କଲେଜକୁ ପଠାଇବାକୁ ପିତୃଦେବ ରାଜିହେଲେ । ସେ ସମୟରେ କଟକରୁ କଲିକତା ଯିବା ପାଇଁ ରେଲ ଲାଇନ୍ ଫିଟି ନଥାଏ । କଟକରୁ ମୋ ସଙ୍ଗେ ନନା, କେଦାରବାବୁ, ପାଚକ କର୍ମ ପାଇଁ ଜଣେ ବାନ୍ଧବ ଓ ଆମଘରର ବିଶ୍ୱାସୀ ଗୃହକର ରଘୁ ବେହେରା କଲିକତା ଗଲେ । ଆମେମାନେ ଷ୍ଟିମ ଲଞ୍ଚରେ ଚଢ଼ି ଚାନ୍ଦବାଲି ଗଲୁଁ ଓ ସେଠାରୁ ଜାହାଜରେ ଚଢ଼ି କଲିକତା କୋଇଲାଘାଟରେ ଯାଇ ଓହ୍ଲାଇଲୁ । ଷ୍ଟିମ୍ ଲଞ୍ଚରେ ଜଳଖିଆ କରିଥିଲୁ କିନ୍ତୁ ଜାହାଜରେ ନନା ଜଳଗ୍ରହଣ କଲେନାହିଁ । ମୁଁ କ୍ଷୁଧାତୁର ହେବାରୁ ସାଙ୍ଗରେ ଥିବା ଚୂଡ଼ା ଓ କଦଳି ଜଳଖିଆ କରିଥିଲି । କଟକରୁ ବାହାରିବାର ଚତୁର୍ଥ ଦିନ ଆମେ ଯାଇ କୋଇଲାଘାଟରେ ପହଞ୍ଚିଲୁ । ଏହା ୧୮୯୪ ମସିହା ଅଗଷ୍ଟମାସର ଶେଷ ଭାଗ ହେବ ।

---

[ ଏ ଆତ୍ମ-ଜୀବନୀ ଅସମାପ୍ତ । ଶୁଣିବାକୁ ମିଳେ ଅନ୍ୟ ଦୁଇଖଣ୍ଡି ଖାତାରେ ସ୍ୱର୍ଗତ ପ୍ରହରାଜ ତାଙ୍କ ଆତ୍ମଜୀବନୀର ଅବଶେଷାଂଶକୁ ଲିପିବଦ୍ଧ କରିଥିଲେ । କିନ୍ତୁ ତାହା ତାଙ୍କ ମୃତ୍ୟୁପରେ ବିପର୍ଯ୍ୟସ୍ତ ହୋଇ କେଉଁଠି କାହା ହାତରେ ପଡ଼ିଯାଇଛି । କେହି ତାହାର ସନ୍ଧାନ ପାଇ ଏହି 'ପରଜନ୍ମ'ର ସମ୍ପାଦକଙ୍କୁ ଜଣାଇଲେ ଓଡ଼ିଆ ଜାତି ଓ ସାହିତ୍ୟର ଏକ ମହତ୍ତମ କଲ୍ୟାଣ ସାଧିତ ହେବ ଓ ପରେ ପରେ ସେ ସବୁ ଆମେ ପ୍ରକାଶ କରିପାରିବୁ—ସମ୍ପାଦକ ]

—*—

# "ନନାଙ୍କ ବସ୍ତାନି"—ଏକ ଅଧ୍ୟୟନ

ଅଧ୍ୟାପକ—**ବୈଷ୍ଣବଚରଣ ସାମଲ**

ଲୋକମୁଖର ଭାଷା ମାଧ୍ୟମରେ ଶାଣିତ ବ୍ୟଙ୍ଗୋକ୍ତି ଓ ହାସ୍ୟରସ ପ୍ରୟୋଗ କରି ଫକୀରମୋହନ ସେନାପତି ଓଡ଼ିଆ ସାହିତ୍ୟରେ ଯେଉଁ ପରମ୍ପରାର ସୃଷ୍ଟି କରିଥିଲେ ସେହି ପରମ୍ପରାର ଯୋଗ୍ୟଦାୟାଦ ଓ ପରିପୂରକ ଭାବରେ ଗୋପାଳଚନ୍ଦ୍ର ପ୍ରହରାଜ ଚିରସ୍ମରଣୀୟ ହୋଇ ରହିବେ । କାହାଣୀ ଓ ଲୋକଗଳ୍ପ ସଂଗ୍ରହ କରିବାରେ ଏହି ପ୍ରତିଭାବାନ୍ ଶିଳ୍ପୀଙ୍କର ପ୍ରତିଭାର ଆଦ୍ୟ ସ୍ୱାକ୍ଷର ମିଳିଥିଲା । "ଉତ୍କଳ କାହାଣୀ" ସମ୍ବନ୍ଧରେ ଆଲୋଚନା କରି ଡକ୍ଟର କୁଞ୍ଜବିହାରୀ ଦାଶ ଲେଖିଛନ୍ତି "ଆଧୁନିକ ଯୁଗାଦ୍ୟରେ ଏହା ନାଗରିକ ଏବଂ ଗ୍ରାମୀଣ ମନ ମିଳନର ପ୍ରଥମ ଓ ପ୍ରଧାନ ପୀଠ ଭୂମି ।"[୧] ଏହା ପରେ ପରେ ସେ ରଚନା କରିଛନ୍ତି ସାମାଜିକ ଚେତନା ପ୍ରସୂତ ବ୍ୟକ୍ତିନିଷ୍ଠ ଭାବ ସମ୍ବଳିତ ବିଦ୍ରୂପାତ୍ମକ ସରସ ରମ୍ୟ ରଚନା । ସମସାମୟିକ ସମାଜର ବିଭିନ୍ନ ଦିଗପ୍ରତି ସେ ସୂକ୍ଷ୍ମ ଦୃଷ୍ଟିପାତ କରି ଅଛନ୍ତି । ରାଜନୀତି, ଧର୍ମନୀତି, ସାଂସ୍କୃତିକ ଚିନ୍ତାଧାରା, ବ୍ୟବସାୟିକ ପରିସ୍ଥିତି, ବିଚାରର ବିଭାଗୀୟ ରୀତି, ଶିକ୍ଷା ସମସ୍ୟା—ପ୍ରତ୍ୟେକ କଥାକୁ ସେ ଗଭୀର ଭାବରେ ଅନୁଧ୍ୟାନ କରିଅଛନ୍ତି ଏବଂ ନିଜକୁ ପ୍ରତ୍ୟେକ ସମସ୍ୟାର ଅବିଚ୍ଛେଦ୍ୟ ଅଙ୍ଗ ଭାବରେ ବିବେଚନା କରି କଠୋର ନିର୍ମମ ବ୍ୟଙ୍ଗୋକ୍ତି ପ୍ରକାଶ କରିଛନ୍ତି । ଏହି ବ୍ୟଙ୍ଗୋକ୍ତି ଯେପରି ଶାଣିତ ବୁଦ୍ଧିଦୀପ୍ତ, ସେହିପରି ସରସ ରସସିକ୍ତ । ଯେପରି ଉଦ୍ଦେଶ୍ୟ ଧର୍ମୀ ସେହିପରି କଳାତ୍ମକ । "ବ୍ୟକ୍ତିନିଷ୍ଠ ସରସ ରମ୍ୟ ରଚନା ସୃଷ୍ଟିରେ

---

୧—**ଓଡ଼ିଆ ଲୋକଗୀତ ଓ କାହାଣୀ, ( ଡକ୍ଟର କୁଞ୍ଜବିହାରୀ ଦାଶ ପୃ-୩୪ )**

ପ୍ରହରାଜଙ୍କ କୃତିତ୍ୱ ଅସାମାନ୍ୟ ।" (୨) ସେ ଯେ କେବଳ ରମ୍ୟରଚନା ସୃଷ୍ଟି କରି ନିଜର ପ୍ରତିଭାର ପରିଚୟ ଦେଇଛନ୍ତି ତାହା ନୁହେଁ, ବରଂ ଉତ୍କୃଷ୍ଟ ସମାଲୋଚନା ଏବଂ ପ୍ରବନ୍ଧ ରଚନାକରି ନିଜର ବହୁମୁଖୀ ପ୍ରତିଭାକୁ ସ୍ୱାକ୍ଷର କରି ଯାଇଅଛନ୍ତି । ଏହି ମହାନ୍ ଶିଳ୍ପୀଙ୍କର ବ୍ୟକ୍ତିଗତ ଜୀବନ ଯେପରି ରହସ୍ୟମୟ ଏବଂ ବହୁ ଜଟିଳ ଅନୁଭୂତି ଦ୍ୱାରା ପରିପୂର୍ଣ୍ଣ, ସେହିପରି ତାଙ୍କର ଶିଳ୍ପ ସମ୍ଭାର ବହୁ ବୈଚିତ୍ର୍ୟ ପରିପୂର୍ଣ୍ଣ ଏବଂ ବିଚିତ୍ର ଅନୁଭୂତିରେ ଛନ୍ଦାୟିତ । ସ୍ୱକାଳସ୍ଥ ସମାଜ ଓ ପରିବେଶର, ନିଜ ଭିତର ଏବଂ ବାହାରର ସେ ସାର୍ଥକ ରୂପକାର । 'ଆମ ଘରର ହାଲ ଚାଲ', 'ଦୁନିଆଁର ହାଲ ଚାଲ', 'ଭଗବତ ଟୁଙ୍ଗୀରେ ସନ୍ଧ୍ୟା', 'ବାଇ ମହାନ୍ତି ପାଞ୍ଜି', 'ନନାଙ୍କ ବସ୍ତାନି', 'ବାଇନାମାଙ୍କ ବୁଜୁଳି', 'ଦୁନିଆଁ ଖିଡ଼ି ଏ', 'ମିଆଁ ସାହେବଙ୍କ ରୋଜନାମଚା' ପ୍ରଭୃତି ତାଙ୍କର ବ୍ୟକ୍ତି ନିଷ୍ଠ ସରସ ରମ୍ୟ ରଚନାର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଲୋକ ଚରିତ୍ରର ଅନୁଧ୍ୟାନ ଏବଂ ଅନୁଶୀଳନ ଓ ଏହାର ସରସ ରୂପାୟନହିଁ ପ୍ରହରାଜଙ୍କ ସାହିତ୍ୟିକ ପ୍ରତିଭାର ପ୍ରକୃତ ପରିଚୟ ।

**ନନାଙ୍କ ବସ୍ତାନିର ସୃଷ୍ଟି କଳ୍ପନା**—'ନନାଙ୍କ ବସ୍ତାନି'ର ସୃଷ୍ଟି ପୂର୍ବରୁ ସେ 'ଦୁନିଆଁର ହାଲଚାଲ', 'ଆମ ଘରର ହାଲଚାଲ' ପ୍ରକାଶ କରୁଥାନ୍ତି । 'ଦୁନିଆଁର ହାଲଚାଲ'— ଉତ୍କଳ ସାହିତ୍ୟର ନବମ ଭାଗ ଦ୍ୱିତୀୟ ସଂଖ୍ୟାଠାରୁ କ୍ରମାନ୍ୱୟରେ ଅଷ୍ଟାଦଶ ଭାଗ ଅଷ୍ଟମ ସଂଖ୍ୟା ପର୍ଯ୍ୟନ୍ତ ଦଶବର୍ଷକାଳ ପ୍ରକାଶିତ ହୋଇଥିଲା । 'ଦୁନିଆଁର ହାଲଚାଲ' ପ୍ରକାଶ କରିବାରେ ତାଙ୍କର ପିତାହିଁ ପ୍ରଧାନ ସହାୟକ ଥିଲେ । ମାତ୍ର ପିତାଙ୍କ ମୃତ୍ୟୁ ପରେ ସେ 'ନନାଙ୍କ ବସ୍ତାନି'କୁ ଖୋଜିଖାଜି ସେଥିରୁ ମାଲମସଲା ବାହାର କରି ସର୍ବସାଧାରଣରେ ପ୍ରକାଶ କରିବାକୁ ପ୍ରୟାସୀ ହେଲେ । ଏକଥା ସେ 'ଦୁନିଆର ହାଲଚାଲ' ଶୀର୍ଷକ ରମ୍ୟ ରଚନାରେ ଉଲ୍ଲେଖ କରିଛନ୍ତି । 'ନନାଙ୍କ ବସ୍ତାନି'ରେ ତାଙ୍କର ମୃତ ପିତାଙ୍କର ସ୍ମୃତିହିଁ ବିଶେଷ ଭାବରେ ଲକ୍ଷଣୀୟ । 'ନନାଙ୍କ ବସ୍ତାନି' ସୃଷ୍ଟି କଳ୍ପନାର

୨—ଗଦ୍ୟ ଶିଳ୍ପୀ ଗୋପାଳ ଚନ୍ଦ୍ର ପ୍ରହରାଜ, (ଝଙ୍କାର ୨୧ଶ ବର୍ଷ ୮ମ ସଂଖ୍ୟା ଡ଼କ୍ଟର ଶ୍ରୀନିବାସ ମିଶ୍ର ପୃ-୭୪୧)

ଅବ୍ୟବହିତ ପୂର୍ବରୁ ସେ 'ବାଇ ମହାନ୍ତି ପାଞ୍ଜି' ରଚନା କରିଥିଲେ । ଏହି 'ବାଇ ମହାନ୍ତି ପାଞ୍ଜି' ରଚନାର ପ୍ରେରଣା ସେ ସ୍ୱର୍ଗତ ଫକୀରମୋହନ ସେନାପତିଙ୍କ ରଚିତ 'ନନାଙ୍କ ପାଞ୍ଜି'ରୁ ପାଇଥିବାର ଅନୁମାନ କରାଯାଇ ପାରେ । ମାତ୍ର ଉଭୟର କଥାବସ୍ତୁ ସମାନ ନୁହେଁ । ପ୍ରହରାଜ ଯେପରି ଭାବରେ ବ୍ୟଙ୍ଗାତ୍ମକ ଶାଣିତ ରମ୍ୟ ରଚନାର ଶୈଳୀ ଏଥିରେ ପ୍ରୟୋଗ କରିଛନ୍ତି ଫକୀରମୋହନ ସେପରି କରି ପାରିନାହାନ୍ତି । ଫକୀରମୋହନ 'ନନାଙ୍କ ପାଞ୍ଜି' ସୃଷ୍ଟି କଳ୍ପନା କରିବାକୁ ଯାଇ ଲେଖିଛନ୍ତି— 'ମୋ ନନା ବାଇ ମହାନ୍ତି ମୁକୁନ୍ଦଦେବଙ୍କ ଅଢ଼େଇ ଅଙ୍କରେ ସ୍ୱର୍ଗକୁ ଯିବାବେଳେ ତାହାଙ୍କ ବହୁମୂଲ୍ୟ ପାଞ୍ଜି ସବୁ ହେବା କରି ଯାଇଥିଲେ । ସେଥିରୁ କେତେ ବଡ଼ା ପାଞ୍ଜି ମୋ ଭାଗରେ ପଡ଼ିଅଛି । ମୁଁ ତାକୁ ତର୍ଜମା କରି ଆପଣଙ୍କୁ ଦେବି ।' (୩) ଶ୍ରୀ ପ୍ରହରାଜଙ୍କ 'ବାଇ ମହାନ୍ତିଙ୍କ ପାଞ୍ଜି' ଓ 'ନନାଙ୍କ ବସ୍ତାନି'ର ସୃଷ୍ଟି କଳ୍ପନାର ଉତ୍ସ ଫକୀରମୋହନଙ୍କ 'ନନାଙ୍କ ପାଞ୍ଜି' ହୋଇଥିଲେହେଁ ଏଗୁଡ଼ିକ ବିଭିନ୍ନ ବୈଶିଷ୍ଟ୍ୟରେ ପରିପୂର୍ଣ୍ଣ ହୋଇଛି । ନନାଙ୍କ ପୁରୁଣା ବସ୍ତାନିର ଆଲମାରିକା ପୋଥି ଖୋଲି ସେଥିରୁ ସେ ଗୋଟିକ ପରେ ଗୋଟିଏ ପ୍ରସଙ୍ଗ ଲୋକ ସମ୍ମୁଖରେ ଦେଖାଇଛନ୍ତି । 'ଉତ୍କଳ ସାହିତ୍ୟ'ର ୨୦ଶ ଭାଗ ୧ମ ସଂଖ୍ୟା, ୨ୟ ସଂଖ୍ୟା, ୪ର୍ଥ ସଂଖ୍ୟା, ୫ମ ସଂଖ୍ୟା ଓ ୬ଷ୍ଠ ସଂଖ୍ୟାରେ 'ନନାଙ୍କ ବସ୍ତାନି' ପ୍ରକାଶିତ ହୋଇଛି । ୩ୟ ସଂଖ୍ୟାରେ ଏହା ପ୍ରକାଶିତ ହୋଇନାହିଁ । କଟକରୁ ପୁରୀ ଯାଇ ସେଠାରେ ୩ ବର୍ଷ ରହି ପୁନର୍ବାର କଟକ ଫେରି ଆସିବା ପରେ 'ମାଦଳା ପାଞ୍ଜିରୁ ବଢ଼ାଏ' ଶୀର୍ଷକ ଲେଖାରେ ପୁରୀ ଅନୁଭୂତି ଲେଖିବେ ବୋଲି ସ୍ଥିର କରିଥିଲେ । ୨୦ଶ ଭାଗ ୪ର୍ଥ ସଂଖ୍ୟା (ଶ୍ରାବଣ ୧୩୨୩) ରେ ତାଙ୍କର 'ଇତିଶ୍ରୀ' ଅଧ୍ୟାୟ ଥିଲା ବୋଲି ସେ ଉଲ୍ଲେଖ କରିଥିଲେ । ମାତ୍ର କାଜର ପୁତ୍ରର ଆକ୍ଷେପ ପରେ ସେ ପୁଣି 'ନନାଙ୍କ ବସ୍ତାନି' ଲେଖା ଆରମ୍ଭ କଲେ । ଏହା ୨୦ଶ ଭାଗ ୫ମ ସଂଖ୍ୟାରେ (ଭାଦ୍ର ୧୩୨୩) ପ୍ରକାଶିତ ହେଲା । ସେ ଲେଖିଛନ୍ତି, 'ପାଠକ ଅବଧାନ ମାନେ ଓ

---

୩—ଫକୀର ମୋହନ ଗ୍ରନ୍ଥାବଳୀ, (୨ୟ ସଂସ୍କରଣ ୨ୟ ଖଣ୍ଡ ପୃ-୬୭୭)

ସମ୍ପାଦକ ମଣିମା, ନନାଙ୍କ ବସ୍ତାନଟି 'ଇତିଶ୍ରୀ' ଅଧ୍ୟାୟ ଗତ ସଂଖ୍ୟା 'ଉତ୍କଳ ସାହିତ୍ୟ'ରେ ବାହାର କରି ଲେଖକ ଏକ ପ୍ରକାର ନିଶ୍ଚିନ୍ତ ହୋଇଥିଲେ ।' (୪) ମାତ୍ର ନଜର ପୁନ 'ବସ୍ତାନ'ର ପୀଠିକା ସମ୍ବନ୍ଧରେ କେତେକ ପ୍ରଶ୍ନ ପଚାରିବାରୁ ସେ ପୁନରାୟ ୨୦ ଭାଗ ୬ଷ୍ଠ ସଂଖ୍ୟାରେ (ଆଶ୍ୱିନ ୧୩୨୪) 'ପୀଠିକା ଏ ଫିରସ୍ତ' ଶୀର୍ଷକ ଲେଖା ଲେଖିଲେ । ଏ ପ୍ରସଙ୍ଗରେ ସେ ଲେଖିଛନ୍ତି, 'ପାଠକ ମାନଙ୍କ ହଜୁର ! ଗତ ପୂର୍ବଥର ଆପଣମାନଙ୍କଠାରୁ ଭିନ୍ନୁଲ ଚକଟା ଭଦାଭଦଟାଏ ହୋଇ ଫେର୍ ଗତଥର ଲେଖକଙ୍କର କୁଳଚନ୍ଦ୍ରମାଙ୍କ ଯୋଗୁଁ ନନାଙ୍କ ବସ୍ତାନର ପୀଠିକାରେ ଟିପାଟିପି ହୋଇଥିବା ଭିଷୟ ଗୁଡ଼ିକ ସର୍ବସାଧାରଣଙ୍କ ଆଗରେ ଉପସ୍ଥାପିତ କରାଇବାର ଆଶା ଲେଖକ ଆପଣମାନଙ୍କୁ ଦେଇଥିଲା ।' (୫) ଏହି ୬ଷ୍ଠ ସଂଖ୍ୟା ପରେ ଲେଖକ ଆଉ ନନାଙ୍କ ବସ୍ତାନ ଫିଟାଇଲେ ନାହିଁ । ଏ ସମ୍ବନ୍ଧରେ ସେ 'ଆମ ଘରର ହାଲଚାଲ' ଶୀର୍ଷକରେ ଲେଖିଛନ୍ତି 'ଅର୍ଥାତ ଦୁନଆର ହାଲଚାଲ ଦେଖି ଗୋପିଆ ଭାଇ, ମଧିଆ ଦାଦା, କଣ୍ଢିଆ ନନା, ଜଗା ଭାଇନା, ଭଣିଆ କକେଇଙ୍କୁ ତିଆରୁ ତିଆରୁ ଓ ନନାଙ୍କ ବସ୍ତାନ ଫିଟାଇ ପରର ମାଣ୍ଡୁଆପାତକ ପାଇଁ ବ୍ୟବସ୍ଥା କାଢ଼ି କାଢ଼ି ଆପଣା କାମ ଓ ମଣିଷ ପଣିଆ ଶେଷ ।' (୬) ଏଥିରୁ ଅନ୍ୟଙ୍କୁ ସମାଲୋଚନା କରିବାର ଦୃଷ୍ଟିଭଙ୍ଗୀ ବେଶ୍ ଅନୁମେୟ । 'ନନାଙ୍କ ବସ୍ତାନ'ର ଶେଷ ଭିଡ଼ାଟି ନେଇ ଉତ୍କଳ ସାହିତ୍ୟର ସମ୍ପାଦକଙ୍କୁ ପ୍ରକାଶ ପାଇଁ ଦେଇଥିଲେହେଁ ତାହା ପ୍ରକାଶିତ ହେଲାନାହିଁ । ସମ୍ପାଦକ ଲେଖାଟିର ପ୍ରଶଂସା କରି ଫେରାଇ ଦେଲେ । କାରଣ ଏହା ବିଦ୍ରୂପାତ୍ମକ ଲେଖା ହେତୁ କେତେକ ଗ୍ରାହକ ଚାଲିଯିବେ । ତେଣୁ ନନାଙ୍କ ବସ୍ତାନର ଇତିଶ୍ରୀ ହେଲା । ଆମ ଘରର ହାଲଚାଲରେ ତେଣୁ ସେ ଲେଖିଛନ୍ତି 'ନନାଙ୍କ ବସ୍ତାନ'ରୁ ଶେଷ ଭିଡ଼ାଟା ବାହାର କରି ତହିଁର ଟୀକା ଟିପ୍ପଣୀ ଖଞ୍ଜି ସମ୍ପାଦକଙ୍କ ନିକଟରେ ଦାଖଲ କରିବାରୁ ସମ୍ପାଦକ ମହାଶୟ ସେ ଭିଡ଼ାଟି ଉଆପସ ଦେଇ ମୋ ନିକଟରେ ପଠାଇଲେ । ସ୍ପଷ୍ଟ କଥା କହିଲେ

୪—ନନାଙ୍କ ବସ୍ତାନ (ଉତ୍କଳ ସାହିତ୍ୟ ୨୦ଶ ଭାଗ ୫ମ ସଂଖ୍ୟା ପୃ-୨୩୭)
୫—ନନାଙ୍କ ବସ୍ତାନ (ଉତ୍କଳ ସାହିତ୍ୟର ୨୦ଶ ଭାଗ ୬ଷ୍ଠ ସଂଖ୍ୟା ପୃ-୩୦୬)
୬—ଆମ ଘରର ହାଲଚାଲ (ଉତ୍କଳ ସାହିତ୍ୟ ୨୦ଶ ଭାଗ ୧୧ଶ ସଂଖ୍ୟା ପୃ-୫୩୨)

ଜଣେ ଲଗୁଆ ଲେଖକ ଖସିଲେ, ଏଣେ ସେ ବଡ଼ାଟି ପତ୍ରିକାରେ ପ୍ରକାଶ-କଲେ ପଞ୍ଚାଏ ଗ୍ରାହକ ଚଳ । ଅତଏବ ପ୍ରବୀଣ ସଂପାଦକ ମହାଶୟ ଲହ-ଲହକା ଭାବ ଭଂଗୀରେ କଥାଟାକୁ ମୋଡିମାଡି ଲେଖକହାତରେ ସେ ବଡ଼ାଟାକୁ ଗୁଞ୍ଜି ଦେଇ ଚାଲିଗଲେ, କହିଲେ ଲେଖାଟି ଉତ୍ତମ ଓ ଉପାଦେୟ ହୋଇଥିଲା, ପରନ୍ତୁ ଏଁ ଏଁ—', (୭) ଏହାପରେ 'ନନାଙ୍କ ବସ୍ତାନି' ବଡ଼ା ବନ୍ଧାହୋଇ କେଉଁଠି ପଡ଼ି ରହିଲା । 'ଉତ୍କଳ ସାହିତ୍ୟ'ର ପୃଷ୍ଠା ଆଉ ଏହାର ରହଣିଆ ମସିଆଗନ୍ଧ ମଣ୍ଡନ କଲାନାହିଁ ।

**'ନନାଙ୍କ ବସ୍ତାନି'ର ବିଷୟ ଆଲୋଚନା**—ଲେଖକଙ୍କ ଅନ୍ୟାନ୍ୟ ରମ୍ୟରଚନା ଭଳି ନନାଙ୍କ ବସ୍ତାନିରେ ନିର୍ଦ୍ଦିଷ୍ଟ କୌଣସି ବିଷୟରେ ବର୍ଣ୍ଣନା ନାହିଁ । ସାମାଜିକ ପରିସ୍ଥିତିର ବ୍ୟକ୍ତିନିଷ୍ଠ ଖଣ୍ଡିତ ଅନୁଭୂତିର ସରସ ଗ୍ରନ୍ଥନହିଁ ଏହାର ବୈଶିଷ୍ଟ୍ୟ । ପ୍ରହରାଜଙ୍କ ସାହିତ୍ୟର ସୃଷ୍ଟି ଦୁଇ ଯୁଗର ସନ୍ଧିକାଳରେ । ବିଗତ ଶତାବ୍ଦୀର ଗ୍ଲାନିଚଳଣି ସାଂସ୍କୃତିକ ଭାବଧାରା ସହିତ ବିଂଶ ଶତାବ୍ଦୀର ଆଦ୍ୟପାଦର ନବାଗତ ସାଂସ୍କୃତିକ ଓ ସାମାଜିକ ମୂଲ୍ୟବୋଧର ସଂଘର୍ଷ ଓ ଚିତ୍ତବିକ୍ଷୋଭ ଏବଂ ସାଲିସହିଁ ପ୍ରହରାଜଙ୍କ ଏହି ରମ୍ୟରଚନାର ବିଷୟବସ୍ତୁ । ସେ ସଂପୂର୍ଣ୍ଣ ଭାବରେ ପ୍ରାଚୀନ ଚିନ୍ତା ଓ ସଂସ୍କୃତିକୁ ପରିତ୍ୟାଗ କରି ପାରିନାହାନ୍ତି ବା ରକ୍ଷଣଶୀଳ ମନୋଭାବ ନେଇ ପ୍ରାଚୀନ ପରଂପରାକୁ ଜାବୁଡ଼ିଧରି ନାହାନ୍ତି । ନୂତନ ମୂଲ୍ୟବୋଧ ସହିତ ପ୍ରାଚୀନ ମୂଲ୍ୟବୋଧକୁ ତୁଳନା କରିଛନ୍ତି । ସାମାଜିକ ଦୋଷ ଦୁର୍ବଳତାକୁ ସେ ଅତି ନିର୍ମମ ଭାବରେ ସମାଲୋଚନା କରିଛନ୍ତି । ମଣିଷର ପ୍ରକୃତିକୁ ସେ ବାସ୍ତବ ଭାବରେ ବର୍ଣ୍ଣନା କରିଛନ୍ତି । 'ମନୁଷ୍ୟ ପ୍ରକୃତି ଅନେକ ସମୟରେ ଅବୋଧ୍ୟ, ଅଭେଦ୍ୟ ଓ ଅଦମ୍ୟ ମଧ୍ୟ ।' (୮) ମନୁଷ୍ୟ ପ୍ରକୃତିର ବିଭିନ୍ନ ଦିଗକୁ ସେ ସୂକ୍ଷ୍ମଭାବରେ ଅନୁଧ୍ୟାନ କରିଛନ୍ତି । ନନାଙ୍କର ଧର୍ମାନୁରାଗ ସମ୍ବନ୍ଧରେ ସେ ଆଲୋଚନା କରିଛନ୍ତି । ଏ ପ୍ରସଙ୍ଗରେ ସେ ଯୌବନୋଦ୍ଦୀପ୍ତ ଯୁବସୁଲଭ ଭାବରେ ଅନୁପ୍ରାଣିତ ହୋଇ ଚିତା ଚୈତନ୍ୟଧାରୀ ବ୍ୟକ୍ତିମାନଙ୍କୁ କଠୋର ସମା-

---

୭—ଆମ ଘରର ହାଲଚାଲ (ଉତ୍କଳ ସାହିତ୍ୟ ୨୦ଶ ଭାଗ ୧୧ଶ ସଂଖ୍ୟା ପୃ—୫୩୩)
୮—ଆମଘରର ହାଲଚାଲ (ଉତ୍କଳ ସାହିତ୍ୟ ୨୦ଶ ଭାଗ ୧୨ଶ ସଂଖ୍ୟା ପୃ-୫୮୧)

ଲୋଚନା କରିବାକୁ ପଛେଇ ନାହାଁନ୍ତି । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ତାଙ୍କର ଏହି ଚିନ୍ତା ପରିବର୍ତ୍ତିତ ହୋଇଛି । 'ମୁଁ ଆଗେ ମନେ ମନେ ହସୁଥିଲି, ଏ ଭଜନବୋଲା, ପୂଜାପୂଜି ମାଳା ଜପା ଏସବୁ ଠାକୁରଙ୍କୁ ଧପାଧପି କରି ଠାକୁରଙ୍କ ଆଖିରେ ଧୂଳି ପକାଇବା କାମ ।' (୯) ତିଳକ ବେଶଧାରୀ ମରହଟ୍ଟିଆ ବ୍ୟକ୍ତିମାନଙ୍କୁ ସମାଲୋଚନା କରି ସେ ଲେଖି-ଛନ୍ତି "ଏ ମରହଟ୍ଟିଆମାନଙ୍କର ଅର୍ଦ୍ଧପୁଣ୍ଡ୍ର, ଊର୍ଦ୍ଧ୍ୱ ପୁଣ୍ଡ୍ର, ବୃନ୍ଦାବନୀ ନାମମୋହର ଚିତାକଣ୍ଠୀ ଏସବୁ ଯମଦୂତମାନଙ୍କ ନିକଟରେ ଚିହ୍ନିତ ହେବା ଓ ଠେଲାଠେଲି ହେବା ଉଦ୍ଦେଶ୍ୟରେ ମାର୍କା । କେଉଁ ମହାତ୍ମା ଧ୍ରୁବଲୋକ, କିଏ ଚନ୍ଦ୍ରଲୋକ, କିଏ ଶିବଲୋକ, କିଏ ସୂର୍ଯ୍ୟଲୋକ, କିଏ ଗୋଲକ ଯିବେ ତାହାସବୁ ଯମଦୂତମାନେ ଏ ମାର୍କାମାନଙ୍କରୁ ସମୁଜିନେଇ ଏମାନଙ୍କୁ ଏମାନଙ୍କ ଗନ୍ତବ୍ୟ ସ୍ଥାନକୁ ଚାଲାନ କରିଦେବେ; କିନ୍ତୁ ସାଧାରଣଙ୍କ ଚକ୍ଷୁରେ ଏହାର ଅର୍ଥ କିଛିନୁହେଁ" । (୧୦) ଉପରେ ହରିମନ୍ଦିର ଚିତାକାଟି, ତିଳକ ଚର୍ଚ୍ଚିତ ବେଶହୋଇ ଭିତରେ ଭିତରେ କପଟ କପଟ ସ୍ୱଭାବ ଆଚରଣ କରନ୍ତି ସେ ସମ୍ବନ୍ଧରେ ଲେଖକ ଅତି କଠୋର ଭାବରେ ବର୍ଣ୍ଣନା କରିଅଛନ୍ତି । ଫକୀରମୋହନ ସେନାପତି 'ଛମାଣ ଆଠଗୁଣ୍ଠ' ଉପନ୍ୟାସରେ ଲଳିତା ଦାସ ବାବାଜୀ ଚରିତ୍ର ପ୍ରସଙ୍ଗରେ ଏହିକଥା ଉଲ୍ଲେଖ କରିଅଛନ୍ତି । ତାଙ୍କର 'ଧୂଳିଆ ବାବା' ଏବଂ ରାମଶଙ୍କର ରାୟଙ୍କ 'ଯୁଗଧର୍ମ'ରେ ମହନ୍ତ ଉଦ୍ଧବ ଦାସ ଚରିତ୍ର ମଧ୍ୟ ଏହିଭଳି କପଟ ସ୍ୱଭାବ ସମ୍ପନ୍ନ ବଦଗ୍ର ଚରିତ୍ର । ପ୍ରହରାଜ ଏ ପ୍ରସଙ୍ଗରେ କୌଣସି ନିର୍ଦ୍ଦିଷ୍ଟ ଚରିତ୍ରର ଅବତାରଣା କରି ନଥିଲେ ହେଁ ଚିତା ଚୈତନ୍ୟଧାରୀ ବ୍ୟକ୍ତିମାନଙ୍କ ପ୍ରତି ପ୍ରଥମେ ଘୃଣା ପ୍ରକାଶ କରିଛନ୍ତି । 'ସମସ୍ତ ସମୟରେ ରେଲ କର୍ମଚାରୀମାନଙ୍କୁ କିଛି ଅଣ୍ଟାଗୁଞ୍ଜା ଦେଇ ରେଲ କମ୍ପାନୀକୁ ଠକାନ୍ତି, ଏ ମରହଟିଆଯାକ ମଧ୍ୟ ସେହିପରି ଏ ହରିମନ୍ଦିର ଚିତାଦ୍ୱାରା ଖୋଦ ଜଗନ୍ନାଥଙ୍କୁ ଚିତା କାଟନ୍ତି ।' (୧୧) 'ବାଇମହାନ୍ତି ପାଞ୍ଜି'ରେ ଏ ପ୍ରସଙ୍ଗରେ ମଧ୍ୟ ଲେଖକ ବର୍ଣ୍ଣନା କରିଅଛନ୍ତି ।

---

୯—ନନାଙ୍କ ବସ୍ତାନି (ଉତ୍କଳ ସାହିତ୍ୟ ୨୦ଶ ଭାଗ ୧ମ ସଂଖ୍ୟା ପୃ-୨୨)
୧୦—ନନାଙ୍କ ବସ୍ତାନି (ଉତ୍କଳ ସାହିତ୍ୟ ୨୦ଶ ଭାଗ ୧ମ ସଂଖ୍ୟା ପୃ-୨୨)
୧୧—ନନାଙ୍କ ବସ୍ତାନି (ଉତ୍କଳ ସାହିତ୍ୟ ୨୦ଶ ଭାଗ ୧ମ ସଂଖ୍ୟା ପୃ-୬୨)

ନୂତନ ସଭ୍ୟତାର ଆଗମନ ଫଳରେ ପୁରାତନ ସଭ୍ୟତା ଲୋପ ପାଇ ଯିବ । ତେଣୁ ବାଇମହାନ୍ତିଙ୍କର ଚିନ୍ତା 'ଆଜକାଲି ନବ୍ୟ ସଭ୍ୟତା ଯେପରି ମାସମାସ କୁହୁଡ଼ି ଭଳି ଘାରି ଚଞ୍ଚଳ ମାଡ଼ି ଆସୁଛି, ଏଥିରେ ଭୟ ହେଉଛି ଯେ, ମରହଟ୍ଟୀ ଅମଳର କଥା ସବୁ ଏ ଅମଳରେ ବୁଡ଼ିଯିବ। ଆଜକାଲି ଶିକ୍ଷିତ ପିଲାମାନଙ୍କର ମରହଟ୍ଟିଆ ବୁଢ଼ାଙ୍କ ପ୍ରତି ଗୋଟିଏ ଘୋର ଘୃଣା ।' (୧୨) 'ନନାଙ୍କ ବସ୍ତାନି' ଅପେକ୍ଷାକୃତ ବୟସ୍କ ସମୟର ଲେଖା ହୋଇଥିବାରୁ ଲେଖକ ମରହଟ୍ଟିଆ କାଳର ମସିଆ କଥାକୁ ଘୃଣା ନ କରି ନୂତନ ସହିତ ସାଲିସ୍ କରାଇବାର ଚେଷ୍ଟା କରିଅଛନ୍ତି । ତେଣୁ ନନାଙ୍କର ଶରୀର ଭେଦ, ଚଉତିଶା, ଜଣାଣ, ଆଦି ଭଜନ ମାନ ଅଳନ୍ଧୂ ଲଗା ବସ୍ତାନିରୁ ଖୋଜି ଲେଖକ ଘୃଣା କରି ନାହାଁନ୍ତି । ମରହଟ୍ଟିଆ ବ୍ୟକ୍ତିମାନେ ଏହି ଭଜନ ମାଧ୍ୟମରେ ଚିତ୍ତ ପ୍ରଶାନ୍ତି ଲାଭ କରୁଥିଲେ । ନନା ପାରିବାରିକ ଜଞ୍ଜାଳ ମଧ୍ୟରେ ଥାଇ ମଧ୍ୟ 'ନହାତ ନଷ୍ଟମ ଇବ ପ୍ରଦୀପଃ ।'

ଦ୍ୱିତୀୟ ସଂଖ୍ୟାରେ ଲେଖକ ନନାଙ୍କଠାରୁ ଶୁଣିଥିବା ପୋଖରୀର ବର୍ଣ୍ଣନା କରିଛନ୍ତି । ଲୋକ କାହାଣୀ ସଂଗ୍ରହ ଦ୍ୱାରା ବୋଧହୁଏ ଲେଖକ ପ୍ରଭାବିତ ହୋଇ ପୋଖରୀର ଏହି ଭଳି ବର୍ଣ୍ଣନା କରିଛନ୍ତି । ଫକୀର ମୋହନଙ୍କ ଛମାଣ ଆଠଗୁଣ୍ଠରେ 'ଅସୁର ଦୀଘୀ'ର ବର୍ଣ୍ଣନା ମଧ୍ୟ ଏ କ୍ଷେତ୍ରରେ ତୁଳନାତ୍ମକ ଭାବରେ ଆଲୋଚନା କରାଯାଇ ପାରେ । ଠାକୁରାଣୀ ବାଘ ଉପରେ ଚଢି ରାତିରେ ବିଜେ ହୋଇଥିବା କଥା ଖିମା ମା' ଭଣ୍ଡାରୁଣୀ ଯେପରି ଭାବରେ ବର୍ଣ୍ଣନା କରିଛି ଏ କ୍ଷେତ୍ରରେ ନନାଙ୍କର ପୋଖରୀ ବର୍ଣ୍ଣନା କିମ୍ବଦନ୍ତୀକୁ ମଧ୍ୟ ସେହିପରି ଦୃଷ୍ଟିରୁ ବିଚାରକୁ ନିଆଯାଇ ପାରେ । "ନନାଙ୍କଠାରୁ ଶୁଣିଛୁ ଯେ ସେ ପୋଖରୀଟା । 'ଦେବାଳୟ ।' ଅର୍ଥାତ୍ ସେଥିରେ କୌଣସି ଦେବତାଙ୍କ ଆଶ୍ରୟ—ଏପରିକି ଖୋଦ୍ ଠାକୁରାଣୀଙ୍କ ବାହାନ ଆଠହାତିଆ ଗୋମୁହାଁ କୁମ୍ଭୀର ମୁଣ୍ଡରେ ଥୋପାଏ ରଙ୍ଗ ଟହ ଟହ ସିନ୍ଦୂର ଥିବା ଆମର ବଡ଼ ବଡ଼ରିକ ଦେଖିଥିବାର କେତେଥର ପ୍ରମାଣିତ ହୋଇଛି ।" (୧୩) ସେ ପୋଖରୀର

୧୨—'ବାଇମହାନ୍ତି ପାଞ୍ଜି' (ଉତ୍କଳ ସାହିତ୍ୟ ଷଷ୍ଠଭାଗ ପୃ-୪୪)
୧୩—'ନନାଙ୍କ ବସ୍ତାନି' (ଉତ୍କଳ ସାହିତ୍ୟ ୨୦ଶ ଭାଗ ୨ୟ ସଂଖ୍ୟା ପୃ-୧୯)

ମହିମା କହିଲେ ନସରେ । 'ଗରିବ ଗୁରୁବାଙ୍କ ଝିଅ ପୁଅ ବାହାହେଲେ ସେ ପୋଖରୀ କୂଳକୁ ଯାଇ ଗଙ୍ଗା ମାତାଙ୍କୁ ମାଜଣା କଲେ ପୋଖରୀ ମଝିରୁ ଗୋଟିଏ ଡ଼ାଲାରେ ଆବଶ୍ୟକ ଆୟୁ ଅଳଙ୍କାରତକ ଭସିଉଠି କୂଳ ଆଡ଼କୁ ଚାଲି ଆସୁଥିଲା ଓ ଗୃହସ୍ଥ ସେତକ ଆଣି ଆପଣା କାମିତ୍ତ ଚଳାଇ ସାରି ଫେରି ଡାଲାରେ ସେ ଅଳଙ୍କାର ଯାକ ପୂରାଇ ଗଙ୍ଗାମାତାଙ୍କୁ ମାଜଣାକରି ସେ ପୋଖରୀ କୂଳରେ ଭସାଇ ଦେଉଥିଲା ଯେ ଡାଲାଟି ଭାସ ଭାସି ଯାଇ ପୋଖରୀ ମଝିରେ ଟୁବୁ କାନ ବୁଡ଼ି ଯାଉଥିଲା ।' (୧୪) ଏ ପୋଖରୀକୁ ଅଚ୍ଯୁତାନନ୍ଦ ଦାସ କୁଅଡ଼େ 'ରତ୍ନଯୋଡ଼' ବୋଲି ଆଖ୍ୟା ଦେଇଥିଲେ । ଏ ପ୍ରସଙ୍ଗରେ ଲେଖକ କାଳସୀ ପ୍ରଥାକୁ ମଧ୍ଯ ଏଥିରେ ଆଲୋଚନା କରିଛନ୍ତି । ବାକେଇ ଆଚାର୍ଯ୍ୟଙ୍କ ଗୋସେଇଁ ମାଆଙ୍କର ଶ୍ରେଣୀ ପ୍ରକୃତ ହେତୁ ଆଜ ପୋଖରୀରୁ ତାହା ଉଠିଲା ନାହିଁ । ପୋଖରୀ ବର୍ଣ୍ଣନାରେ ଲେଖକ ଲୋକଗଳ୍ପ ଦ୍ଵାରା ପ୍ରଭାବିତ ହୋଇଥିବା ପରି ମନେ-ହୁଏ । ଏହି ପରିଚ୍ଛେଦରେ ଲୋକାଲବୋର୍ଡ଼ ଓ ଡ଼ିଷ୍ଟ୍ରିକ୍ଟବୋର୍ଡ଼ରେ ସଭ୍ୟ ନିର୍ବାଚିତ ହେବାକୁ ତତ୍କାଳୀନ ରାଜନୀତିକ ପରିବେଶକୁ ଲକ୍ଷ୍ୟରଖି ନନା କପଟ ବାଭିନ୍ନ ନିର୍ଦ୍ଦେଶ ଉଲ୍ଲେଖ କରିଯାଇଛନ୍ତି ସେ ସବୁର ବର୍ଣ୍ଣନା ଲେଖକ କରିଛନ୍ତି । ସଭ୍ୟ ହେବାର ଆଦବ କାଇଦା ଏବଂ ଲାଭକ୍ଷତି ସମ୍ବନ୍ଧରେ ଲେଖକ କଠୋର ସମାଲୋଚନା କରିଛନ୍ତି । ସେ ସମୟରେ କପଟ ପ୍ରାର୍ଥୀମାନେ ଲାଭଖୋର ମନୋବୃତ୍ତି ନେଇ କୌଣସି ଉପାୟରେ ନିର୍ବାଚିତ ହେବାକୁ ଯତ୍‌ପରୋନାସ୍ତି ଚେଷ୍ଟା କରୁଥିଲେ ତାହାର ବିଦ୍ରୂପାତ୍ମକ ସମାଲୋଚନା କରିଛନ୍ତି । ନନା ପ୍ରାର୍ଥୀମାନଙ୍କୁ ୧୩ଟି ନିୟମ କାନୁନ ଏଥିରେ ପ୍ରଦାନ କରିଛନ୍ତି । ଆଜି କାଲିକାର ନିର୍ବାଚନ ପରିସ୍ଥିତିକୁ ଲକ୍ଷ୍ୟ ରଖି ତୁଳନାତ୍ମକ ଭାବରେ ଆଲୋଚନା କଲେ ଜଣାଯାଏ ସେ କାଳର ପ୍ରାର୍ଥୀମାନଙ୍କର କ୍ରିୟା ପ୍ରତିକ୍ରିୟା ସହିତ ଏବକାର ପ୍ରାର୍ଥୀମାନଙ୍କ କ୍ରିୟା ପ୍ରତିକ୍ରିୟାରେ କୌଣସି ତଫାତ୍ ନାହିଁ । ଲେଖକଙ୍କର ଦୂରଦୃଷ୍ଟିର ପରିଚୟ ଏଥିରୁ ମିଳିଥାଏ । 'ବାଇ ମହାନ୍ତି ପାଞ୍ଜି'ରେ ମଧ୍ୟ ଲେଖକ ପ୍ରଥମ ବଡ଼ାରେ ମାନ୍ୟ ଗଣ୍ୟ ହେବାର ଉପାୟ ନିର୍ଦ୍ଧାରଣ କରି ଅନୁରୂପ ଭାବରେ ଉଲ୍ଲେଖ କରିଛନ୍ତି । 'ବାହାରେ ସୁଖ୍ୟାତି ଓ ଖୋଷାମଦକୁ

୧୪—ନନାଙ୍କ ବୃତ୍ତାନ୍ତ (ଉତ୍କଳ ସାହିତ୍ୟ ୨୦ଶ ଭାଗ ୨ୟ ସଂଖ୍ୟା ପୃ-୯୧)

ଘଣ୍ଟା କରିବ, ଅସଲ ଭିତରର କଥା କେହି ନ ଜାଣନ୍ତୁ ।' (୧୫) ପ୍ରାର୍ଥୀମାନଙ୍କର ସ୍ୱାର୍ଥ ପ୍ରଣୋଦିତ ନମ୍ରତାକୁ ଲେଖକ ନିର୍ମମ ଭାବରେ ବ୍ୟଙ୍ଗୋକ୍ତି ପ୍ରକାଶ କରିଛନ୍ତି । ପ୍ରାର୍ଥୀମାନଙ୍କର ସର୍ବପ୍ରଧାନ ବୋଲି ଓ ବୁଲି ସମ୍ବନ୍ଧରେ ନନା ଲେଖିଛନ୍ତି ଯେ 'ମୋର ଏ କାର୍ଯ୍ୟରେ ପଶିବାର ଆଦୌ ଇଚ୍ଛା ନଥିଲେ ହେଁ, କେବଳ ବନ୍ଧୁମାନଙ୍କ ସନିର୍ବନ୍ଧ ଅନୁରୋଧ ଏଡ଼ିନପାରି ପ୍ରାର୍ଥୀଙ୍କ ରଙ୍ଗକ୍ଷେତ୍ରରେ ଛିଡ଼ାହେବା ନିମନ୍ତେ ମୁଁ ସ୍ୱୀକୃତ ହୋଇଅଛି ।' (୧୬) ଏ କ୍ଷେତ୍ରରେ ଲେଖକ ନିର୍ବାଚନାକାଂକ୍ଷୀ ପ୍ରାର୍ଥୀଙ୍କୁ କଠୋର ସମାଲୋଚନା କରିଛନ୍ତି । ଏହି ସମାଲୋଚନା ବ୍ୟକ୍ତିଗତ ଅସୂୟାଭାବ ପ୍ରକାଶ ନ କରି କଳାତ୍ମକ ସୌନ୍ଦର୍ଯ୍ୟଭାବ ପ୍ରକାଶ କରେ । କୁଳବୃଦ୍ଧ ମଧୁସୂଦନ ଦାସଙ୍କ ଉକ୍ତିପ୍ରତି ଏହା ପରୋକ୍ଷ ସମାଲୋଚନା ଭଳି ମନେ ହୁଏ । ପ୍ରାର୍ଥୀ ଯଥାଶକ୍ତି ନିଜର ଗୁଣକୁ ପ୍ରକାର୍ତ୍ତନ କରାଇବା ପାଇଁ କେତେ ଗୁଡ଼ିଏ ସମ୍ବାଦପତ୍ରର ସଂପାଦକ ଓ ଲେଖକଙ୍କୁ ହାତରେ ରଖିବା ଉଚିତ । ପ୍ରାର୍ଥୀ ଓକିଲ ହୋଇଥିଲେ ମକଦ୍ଦମାରେ ନିଜର ବିଜୟ ଉଦ୍‌ଘୋଷଣ କରାଇବା, ମହାଜନ ହୋଇଥିଲେ ଖାତକଙ୍କୁ ସୁଧ ଛାଡ଼ିବା, ଜମିଦାର ହୋଇଥିଲେ ପ୍ରଜାନୁରଂଜକ ହୋଇଥିବା, ଦୋକାନଦାର ହୋଇଥିଲେ ବଜାରର ଭାଉ ଅପେକ୍ଷା ଶସ୍ତାରେ ଜିନିଷ ଦେଉଥିବା ଇତ୍ୟାଦି ଗୁଣ ସର୍ବସାଧାରଣରେ ପ୍ରକାଶିତ ହେବା ଉଚିତ । ନିଜେ ଆକଣ୍ଠ ଭୋଜନ କରି ବାହାରକୁ କିନ୍ତୁ କିଛି ନଖାଇଥିବାର ଅଭିନୟ କରିବାକୁ ହେବ । କେତେକ 'ପାର୍ଶ୍ୱଚର, ପାର୍ଶ୍ୱକର, ପାର୍ଶ୍ୱଧର' ଲୋକଙ୍କୁ ଯୋଗାଡ଼କରି ନିଜର ଯଶ ଏବଂ ଗୁଣ କୀର୍ତ୍ତନ କରାଇବା ବାଞ୍ଛନୀୟ । କେତେକ ମୁଖିଆ ଲୋକଙ୍କୁ ଠିକଣାକରି ତାଙ୍କର ନାମଟା ଦାଣ୍ଡରେ ବିକି ଆପଣା କାମ ହାସଲ କରିବା ଗୁଣ ପ୍ରାର୍ଥୀମାନଙ୍କର ଥିବା ବିଧେୟ । ନିଜକୁ ଅନ୍ୟ ନିକଟରେ 'ନିଶ୍ଚଳ, ନିଷ୍ପାଦୁକା, ନିଷ୍କୁର୍ତ୍ତୀ, ନିଷ୍‌ଖିଅର ରଖି ଦେଖାଇବା ଉଚିତ । ପ୍ରତିଦ୍ୱନ୍ଦ୍ୱୀମାନଙ୍କର ଯଥାସମ୍ଭବ ନିନ୍ଦା କରାଇ ପ୍ରତ୍ୟକ୍ଷରେ କିନ୍ତୁ ପ୍ରତିଦ୍ୱନ୍ଦ୍ୱୀଙ୍କୁ ଅଚଳାଚଳ ଭକ୍ତି ଏବଂ ସମ୍ମାନ ଦେଖାଇବା ପ୍ରାର୍ଥୀଙ୍କର ମଧ୍ୟ ଅନ୍ୟତମ ଗୁଣ ହେବା ଉଚିତ । ମହାପ୍ରସାଦ,

୧୫—'ବାଇ ମହାନ୍ତି ପାଞ୍ଜି' (ପ୍ରଥମ ବିଡ଼ା ପୃ-୭)
୧୬—'ନନାଙ୍କ ବସ୍ତାନି' (ଉତ୍କଳ ସାହିତ୍ୟ ୨୦ଶ ଭାଗ ୨ୟ ପୃ-୧୦୨)

ଲୋକନାଥଙ୍କ ଧଣ୍ଡା, ନିର୍ମାଲ୍ୟ କୋଥଳି ଧରି ପ୍ରାର୍ଥୀ ଘରେ ଘରେ ମଧ୍ୟ ବୁଲି ଆସିବା ନିଶପଦ, ପିଲାଦିନରୁ ଏଯାଏ ପ୍ରାର୍ଥୀଙ୍କର ସମସ୍ତ ଅତିମାନୁଷିକ, ଅମାନୁଷିକ କାର୍ଯ୍ୟାବଳୀକୁ ଛପାଇ ଲୋକମାନଙ୍କୁ ବଣ୍ଟାଯିବାର ବ୍ୟବସ୍ଥା କରିବା, 'ନିର୍ବାଚନ ଦିନ ଗଣ୍ଡକେତେ ଭଡ଼ାଗାଡ଼ି, ଖାଦ୍ୟାଖାଦ୍ୟ, ପେୟାପେୟ, ଲେହ୍ୟାଲେହ୍ୟ' ଯୋଗାଡ଼ କରିରଖିବା ଆଦି ଗୁଣ ପ୍ରାର୍ଥୀମାନଙ୍କର ଥିବା ଉଚିତ । ନନା ଏହିଭଳି ଭାବରେ ପ୍ରାର୍ଥୀମାନଙ୍କ ପାଇଁ ବିଭିନ୍ନ ଉପଦେଶମାନ ପ୍ରଦାନ କରି ଯାଇଛନ୍ତି । ଏହାଦ୍ୱାରା ସେ ନିର୍ବାଚନାକାଂକ୍ଷୀ ପ୍ରାର୍ଥୀମାନଙ୍କ ପ୍ରତି କଠୋର ବିଦ୍ରୂପ ପ୍ରକାଶ କରିଛନ୍ତି । ରାଜନୀତି କ୍ଷେତ୍ରରେ ଏହିପରି ମନୋଭାବ ସର୍ବଥା ନିନ୍ଦନୀୟ ଏବଂ ଘୃଣ୍ୟ । ଲେଖକ ଏହାକୁ ସିଧାସଳଖ ନକହି ପ୍ରକାରାନ୍ତରେ ରମ୍ୟରଚନା ମାଧ୍ୟମରେ ଏକାନ୍ତ ସତ୍ୟ କଥାକୁ ପ୍ରକାଶ କରିଛନ୍ତି ।

'ଉତ୍କଳ ସାହିତ୍ୟ'ର ୨୦ଶ ଭାଗ ୪ର୍ଥ ସଂଖ୍ୟାରେ ଲେଖକ ନନାଙ୍କ ବସ୍ତାନିର ବର୍ଣ୍ଣନା କରିବାକୁ ଯାଇ ପୁରୀଧାମ କଥା ଉଲ୍ଲେଖ କରିଛନ୍ତି । କଟକରୁ ପୁରୀକୁ ଯିବା ଏବଂ ସେଠାରେ ତିନିବର୍ଷ ରହି ଯେଉଁ ଅନୁଭୂତି ଲାଭକଲେ ତାହାକୁ ସେ 'ମାଦଳା ପାଞ୍ଜିରୁ ବିଡ଼ାଏ' ଶୀର୍ଷକ ଲେଖାରେ ପ୍ରକାଶ କରିବେ ବୋଲି ଠିକ୍ କରିଥିଲେ । ତାଙ୍କର ପୁତ୍ର ନନାଙ୍କ ବସ୍ତାନିର ପୀଠିକା ସମ୍ବନ୍ଧରେ ଆକ୍ଷେପୋକ୍ତି କରନ୍ତେ ଉତ୍କଳ ସାହିତ୍ୟର ୨୦ଶ ଭାଗ ୫ମ ସଂଖ୍ୟାରେ ସେ ପୁଣି ବସ୍ତାନିର ବର୍ଣ୍ଣନା ଆରମ୍ଭ କଲେ । ୨୦ଶ ଭାଗ ୬ଷ୍ଠ ସଂଖ୍ୟାରେ 'ପୀଠିକା ମଏ ଫିରସ୍ତ' ଶୀର୍ଷକ ଲେଖାରେ ନନାଙ୍କଦ୍ୱାରା ଲିଖିତ ଏବଂ ସଂଗୃହିତ କେତେକ ସଂସ୍କୃତ ଶ୍ଳୋକର ଆଲୋଚନା କରିଛନ୍ତି । ଏହି ସଂସ୍କୃତ ଶ୍ଳୋକର ଓଡ଼ିଆ ପଦ୍ୟାନୁବାଦ ମଧ୍ୟ ନନା କରିଥିବାର ସଂକେତ ଦେଇଛନ୍ତି । ଏହି ଶ୍ଳୋକ ଗୁଡ଼ିକ "କେଉଁଠାପୁରି, କେଉଁଠା ଦରଖଣ୍ଡିଆ, କେଉଁଠା ମଟିଗଡ଼ଆ, କେଉଁଠା ନେଉଳ ଖଣ୍ଡିଆ, କେଉଁଠା ଗ୍ରହଣ ଖଣ୍ଡିଆ," (୧୭) ତଥାପି ଏହି ଶ୍ଳୋକ ଗୁଡ଼ିକର ଉପାଦେୟତା ସମ୍ବନ୍ଧରେ ଲେଖକ ଉଲ୍ଲେଖ କରିଛନ୍ତି । ଏହିପରି ଭାବରେ 'ନନାଙ୍କ ବସ୍ତାନି' ବହୁ ଖଣ୍ଡିତ କଥାରେ ପରିପୂର୍ଣ୍ଣ ।

୧୭—ନନାଙ୍କ ବସ୍ତାନି ଉତ୍କଳ ସାହିତ୍ୟ ୨୦ଶ ଭାଗ ସଂଖ୍ୟା ପୃ-୩୦୬

ସଂଗଠିତହୀନ କଥାବସ୍ତୁ ଦ୍ୱାରା ଏହା ରଚିତ । ଏଥିରେ ମରହଟ୍ଟି ଆ ଲୋକମାନଙ୍କ ପ୍ରତି ଲେଖକଙ୍କର ମନୋଭାବ କଠୋର ନୁହେଁ । ବରଂ ସେମାନଙ୍କର ଲୋକଚରିତ୍ର ଅନୁଧାନ କରିବାର କ୍ଷମତା ସମ୍ବନ୍ଧରେ ଲେଖକ ଏଥିରେ ସୂଚନା ପ୍ରଦାନ କରିଛନ୍ତି । ଲୋକେ ଆଧୁନିକ ଶିକ୍ଷିତ ହୋଇଗଲେ ମଧ୍ୟ ଯଦି ଲୋକଚରିତ୍ର ଅନୁଧ୍ୟାନ କରିବାର କ୍ଷମତା ନଥାଏ ତେବେ ସେ ପାଠର ମୂଲ୍ୟ କିଛି ନାହିଁ । 'ଏଥିପାଇଁ ଏ ସଂସାରରେ ଖାଲି ପୋଥି ପାଠୁଆଙ୍କ ଆଦର ବା ଉନ୍ନତି ନଦାରଦ କହିଲେ ଚଳେ । ଯେଉଁ ଲୋକ 'ପାଠ' ସଙ୍ଗେ ଯେତିକ 'ସାଠ' ମିଶାଇ ଦୁନିଆଁରେ ଚଳବଚଳ ହୁଏ, ତାହାର ସେତିକ ଉନ୍ନତି ଓ ସେ ସଂସାରର ଧକ୍କା ସେତିକ ସମ୍ଭାଳିବାକୁ ସମର୍ଥ ହୁଏ ।' (୧୮) ନିର୍ବାଚନ ସଂକ୍ରାନ୍ତରେ ନିନା ଯେଉଁ 'ସାଠ'ର ଉଦାହରଣ ଦେଇଛନ୍ତି ତାହା ଏଠାରେ ତାଙ୍କର ଏକାନ୍ତ ଅନୁଭୂତି ସିଦ୍ଧ ବୋଲି ମନେ ହୁଏ । ଏହା ସହିତ ପାଠର କିଛି ମୂଲ୍ୟ ନାହିଁ ।

**ନିନାଙ୍କ ବିସ୍ତାରର ଶୈଳୀ ଓ ଭାଷା**—ବ୍ୟକ୍ତିନିଷ୍ଠ ସମାଜ ପ୍ରସଙ୍ଗ ସଂପର୍କିତ ସରସରମ୍ୟରଚନାର ସଫଳ ପ୍ରୟୋଗ କରି ଶ୍ରୀ ପ୍ରହରାଜ ଓଡ଼ିଆ ସାହିତ୍ୟରେ ନୂତନ ଦିଗଦର୍ଶନ ପ୍ରଦାନ କଲେ । ଅବଶ୍ୟ ଫକୀର ମୋହନ ସେନାପତି ଏ ଦିଗରେ ପ୍ରାଥମିକ ଉଦ୍ୟମ କରିଥିଲେ । କିନ୍ତୁ ସମସାମୟିକ ସାମାଜିକ ପରିବେଶରେ ନିଜକୁ ଅବିଚ୍ଛେଦ୍ୟ ମନେକରି, ନିଜକୁ ପ୍ରତ୍ୟେକ ଚରିତ୍ରର ଅନ୍ତରାଳରେ ପ୍ରଚ୍ଛନ୍ନ ରଖି ଆତ୍ମନିଷ୍ଠ ଶାଣିତ ବ୍ୟଙ୍ଗୋକ୍ତି ପ୍ରକାଶ କରିବାରେ ଶ୍ରୀ ପ୍ରହରାଜ ହେଉଛନ୍ତି ସଫଳ ସ୍ରଷ୍ଟା । ସାମାଜିକ ବିଦ୍ରୂପାତ୍ମକ ରଚନାକୁ ରସିକାତ୍ମକ ଭାବରେ ପ୍ରକାଶ କରି ଏକ ଲଘୁ ଆନନ୍ଦୋଚ୍ଛଳ ପରିବେଶ ସୃଷ୍ଟିକରିବା ଏବଂ ଏହାର ମାଧ୍ୟମରେ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବାହିଁ ଶ୍ରୀ ପ୍ରହରାଜଙ୍କ ବ୍ୟକ୍ତିନିଷ୍ଠ ରମ୍ୟରଚନାର ଏକାନ୍ତ ବୈଶିଷ୍ଟ୍ୟ । ତାଙ୍କର ରମ୍ୟରଚନା ଗୁଡ଼ିକ ବ୍ୟକ୍ତିନିଷ୍ଠ ଭାବନା ସମ୍ବଳିତ ହୋଇଥିବାରୁ ବହୁ ସମୟରେ ବିଷୟ ବସ୍ତୁରେ ସଂଗତି ରହି ନାହିଁ । 'ମୁଖ୍ୟତଃ ବ୍ୟକ୍ତିନିଷ୍ଠ

---

୧୮—ଆମଘରର ହାଲଚାଲ (ଉତ୍କଳ ସାହିତ୍ୟ ୨୧ଶ ଭାଗ ୧ମ ସଂଖ୍ୟା ପୃ-୨୧)

ଭାବନା ସମ୍ବଳିତ ଏବଂ ସାମାଜିକ ଅନ୍ୟାୟ ଅନାଚାର ବିରୋଧରେ ସଂଗ୍ରାମ ତାଙ୍କର ଲକ୍ଷ୍ୟ ଥିବାରୁ ତାଙ୍କ ରଚନାରେ ଅନେକ ସମୟରେ ବିଷୟବସ୍ତୁର ସଂଗତି ଓ ପ୍ରକାଶର ସଂଯମ ରହେ ନାହିଁ; କିନ୍ତୁ ଏହାହିଁ ପ୍ରହରାଜଙ୍କ ରଚନା ରୀତିର ଅନନ୍ୟତାର ପରିଚାୟକ ।' (୧୯) ଊନବିଂଶ ଶତକର ଆମେରିକାନ ଲେଖକ ଅଲିଭର ୱେଣ୍ଡେଲ ହୋମସ୍ଙ୍କ ରମ୍ୟରଚନାର ଶୈଳୀ ଏବଂ ଚିନ୍ତାଧାରା ସହିତ ଶ୍ରୀ ପ୍ରହରାଜଙ୍କ ଶୈଳୀ ଓ ଚିନ୍ତାର ସମାନତା ବହୁକ୍ଷେତ୍ରରେ ଲକ୍ଷ୍ୟ କରାଯାଇଥାଏ । ୱେଣ୍ଡେଲ ହୋମସ ଯେପରି ତାଙ୍କର ବିଭିନ୍ନ ରମ୍ୟରଚନାରେ କଥୋପକଥନ ରୀତିକୁ ପ୍ରୟୋଗ କରି ଲଘୁ ହାସ୍ୟୋଦ୍ଦୀପକ ପରିବେଶ ସୃଷ୍ଟି କରିଛନ୍ତି ଶ୍ରୀ ପ୍ରହରାଜ ମଧ୍ୟ ଅନୁରୂପ ଭାବରେ ତାଙ୍କର ରମ୍ୟରଚନା ଗୁଡ଼ିକୁ ସରସ କରି ପାରିଛନ୍ତି । 'ନନାଙ୍କ ବସ୍ତାନି' ଏହିଭଳି କଥୋପକଥନ ଭଙ୍ଗୀରେ ବର୍ଣ୍ଣିତ । ଏହା ବ୍ୟକ୍ତିନିଷ୍ଠ ଭାବନା ସମ୍ବଳିତ ସଂଗତିବିହୀନ ସାମାଜିକ ବିକ୍ଷିପ୍ତ ଚିନ୍ତାର ପରିପ୍ରକାଶ ଅଟେ । ମାନବିକ ପ୍ରକୃତିକୁ ବର୍ଣ୍ଣନା କରିବାହିଁ ତାଙ୍କ ରମ୍ୟରଚନାର ଏକାନ୍ତ ଲକ୍ଷ୍ୟ । ସେଥିପାଇଁ ସେ ନିଜକୁ ଏକାନ୍ତ ମାଧ୍ୟମରୂପେ ଗ୍ରହଣ କରିଛନ୍ତି । ନିଜ ସମ୍ବନ୍ଧରେ ନିଜେହିଁ ସାର୍ଥକ ବିଚାରକ ଏବଂ ରୂପକାର । ତେଣୁ ସେ ଲେଖିଛନ୍ତି 'ମୋ ନିଜର 'ସ୍ୱରୂପ' ମତେ ଯାହାଜଣା, ସଂସାରର ଅତି ଅଳ୍ପଲୋକ ତାହାର ସାକ୍ଷାତକାର ଲାଭ କରିଅଛନ୍ତି । ସେ ସ୍ୱରୂପଟା କାଚଘଟାଟୋପ ଭିତରେ ପୂରାଇ କଳାପରଦା ଦେଇ ପଦା ହାଓ୍ୱା ଚିହ୍ନିରେ ଯେପରି ନ ଲଗେ, ସେହିପରି ଅତି ଯତ୍ନରେ ତାକୁ ମୁଁ ଦିନରାତି ଘୋଡ଼ାଇ ରଖିଥାଏ ।' (୨୦) ଏହି ହେତୁରୁ ବୋଧହୁଏ ଶ୍ରୀ ପ୍ରହରାଜ ନିଜକୁ ପ୍ରୋଟାଗନିଷ୍ଟ ଭାବରେ ବିବେଚନା କରି ସାମାଜିକ ଦୋଷ ଦୁର୍ବଳତାକୁ ଦେଖାଇବାକୁ ଚେଷ୍ଟା କରିଛନ୍ତି ।

---

୧୯—"ଗଦ୍ୟଶିଳ୍ପୀ ଗୋପାଳ ଚନ୍ଦ୍ର ପ୍ରହରାଜ" (ଡକ୍ଟର ଶ୍ରୀ ନିବାସ ମିଶ୍ର ଝଙ୍କାର ୨୧ଶ ବର୍ଷ ୮ମ ସଂଖ୍ୟା ପୃ-୭୪୧)

୨୦—ଆମଘରର ହାଲଚାଲ (ଉତ୍କଳ ସାହିତ୍ୟ ୨୧ଶ ଭାଗ ୩ୟ ସଂଖ୍ୟା ପୃ-୧୫୨)

ଶ୍ରୀ ପ୍ରହରାଜ ଲୋକମୁଖର ଭାଷାକୁ ସାହିତ୍ୟରେ ରୂପାୟନ କରିବାର ପକ୍ଷପାତୀ ଥିଲେ । ବିଶୁଦ୍ଧ ଭାଷା ନାମରେ ବିକୃତ ସଂସ୍କୃତ ଶବ୍ଦ ସମ୍ଭାରକୁ ପ୍ରୟୋଗ କରି ସାହିତ୍ୟ ସୃଷ୍ଟି କରିବାର ସେ ପକ୍ଷପାତୀ ନୁହନ୍ତି । ତେଣୁ ତାଙ୍କର ପ୍ରତ୍ୟେକ ରମ୍ୟରଚନାରେ ସାଧାରଣ ଲୋକ ମୁଖର ଭାଷା ପ୍ରୟୋଗ ହୋଇଥିବାର ଦେଖିବାକୁ ମିଳେ । ସେ 'ଦୁଇଖଣ୍ଡ ଓଡ଼ିଆ ପୁସ୍ତକ' ଶୀର୍ଷକ ସମାଲୋଚନାରେ ଲେଖିଛନ୍ତି, 'ଯେତେଦୂର ପର୍ଯ୍ୟନ୍ତ ବିଶୁଦ୍ଧ ଘରୋଇ ଓଡ଼ିଆ ଭାଷା ବ୍ୟବହାର କରି ଆମ୍ଭମାନଙ୍କ ଭାବ ବ୍ୟକ୍ତ କରିବା ତେତିକ ଉତ୍ତମ । ଯେଉଁଠାରେ ଉପାୟନ୍ତର ନାହିଁ, କିମ୍ବା ନକଲେ ଶୋଭନୀୟ ହେବ ନାହିଁ, ସେଠାରେ ମାର୍ଜିତ, ଆମଦାନୀ ଓ Conventional (ଆଡ଼ମ୍ବର ଯୁକ୍ତ) ଭାଷା ବ୍ୟବହାର କରିବା ଯୁକ୍ତିସିଦ୍ଧ' । (୨୧) 'ବିଶୁଦ୍ଧ ଭାଷା' ଶୀର୍ଷକ ପ୍ରବନ୍ଧରେ ସେ ମଧ୍ୟ ଏହି ଯୁକ୍ତିକୁ ବଳବତ୍ତର କରି ବର୍ଣ୍ଣନା କରିଛନ୍ତି । ଶ୍ରୀ ଗୌର-ଚନ୍ଦ୍ର ଗଜପତି ନାରାୟଣ ଦେବ ପ୍ରଣୀତ 'ଧ୍ରୁବ' ନାଟକରେ ବ୍ୟବହୃତ ବିଶୁଦ୍ଧ ଘରୋଇ ଭାଷା ସମ୍ବନ୍ଧରେ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ଶ୍ରୀ ବିଶ୍ୱନାଥ କର ସମାଲୋଚନା କରି ଲେଖିଥିଲେ ଯେ ଏହା ପ୍ରାଦେଶିକତା ଦୋଷ ଦୁଷ୍ଟ ହୋଇ ପଡ଼ିଛି । ତେଣୁ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ଏହାର ଉତ୍ତର ଦେବାକୁ ଯାଇ ମାକ୍ସମୁଲାର ଏବଂ ହ୍ୱିଟ୍‌ନି ସାହେବଙ୍କ ଉକ୍ତି ଉଦ୍ଧାର କରି ବିଶୁଦ୍ଧ ଘରୋଇ ଭାଷା ପ୍ରୟୋଗ ସପକ୍ଷରେ ଯୁକ୍ତି ବାଢିଛନ୍ତି । (୨୨) ଶ୍ରୀ ପ୍ରହରାଜଙ୍କ ଲେଖାରୁ ଜଣାଯାଏ ଯେ ସେ ବିଶୁଦ୍ଧ ଘରୋଇ ଭାଷାର ସପକ୍ଷ ବାଦୀ । 'ନନାଙ୍କ ବସ୍ତାନି' ବିଶୁଦ୍ଧ ଘରୋଇ ଭାଷାରେ ରଚିତ ମାତ୍ର ସ୍ଥଳ ବିଶେଷରେ ସେ ତତ୍‌ସମ ଶବ୍ଦ ସମ୍ଭାର ପ୍ରୟୋଗ କରିଛନ୍ତି । ସେ ସ୍ୱଳ୍ପଭାଷୀ, ତେଣୁ ଅଳ୍ପ କଥାରେ ଜଟିଳ ସମସ୍ୟାକୁ ଉତ୍‌ଥାପନ କରନ୍ତି ଏହାହିଁ ତାଙ୍କର ଲେଖାର ବାହାଦୁରି, 'ଆପେ ନ ହସି ବା ନ କାନ୍ଦି ପରକୁ ହସାଇବା ବା କନ୍ଦେଇବା ଯିନା

---

୨୧—ଦୁଇଖଣ୍ଡ ଓଡ଼ିଆ ପୁସ୍ତକ (ଉତ୍କଳ ସାହିତ୍ୟ ୬ଷ୍ଠ ଭାଗ ୬ଷ୍ଠ ସଂଖ୍ୟା ପୃ ୧୬୧)

୨୨—ପ୍ରତିବାଦପତ୍ର ଶ୍ରୀ ଶ୍ୟାମ ସୁନ୍ଦର ରାଜଗୁରୁ (ଉତ୍କଳ ସାହିତ୍ୟ ୬ଷ୍ଠ ଭାଗ ୬ଷ୍ଠ ସଂଖ୍ୟା ପୃ ୧୩୫)

ବିହାଦୁରୀ, ଆପେ କାଢ଼ ପକାଇଲେ କି ହସି ପକାଇଲେ ସେ ସବୁ ଭଣ୍ଡାର । ଯାହାର ପଦେ କଥାରେ ପୃଥିବୀ ଓଲଟି ଯାଏ, ସେ ସମସ୍ତଙ୍କ ଅପେକ୍ଷା ଭାଗ୍ୟବାନ୍ ।' (୨୩) ଶ୍ରୀ ପ୍ରହରାଜ ଏହି ଉକ୍ତି ପ୍ରତି ଏକାନ୍ତ ଭାବରେ ବିଶ୍ୱସ୍ତ । ସେ ଯେଉଁଠି ହାସ୍ୟରସ ସୃଷ୍ଟି କରିଛନ୍ତି ତାହା ଏକାନ୍ତ ଶାଣିତ । 'ନନାଙ୍କ ବସ୍ତାନି'ର ସ୍ୱଳ୍ପ ପରିସର ମଧ୍ୟରେ ସେ ବହୁ ଜଟିଳ ସମସ୍ୟାକୁ ଲଘୁ ଆନନ୍ଦୋଚ୍ଛ୍ୱଳ ପରିବେଶ ମଧ୍ୟରେ ବର୍ଣ୍ଣନା କରିଛନ୍ତି । ଧର୍ମ, ଧର୍ମାନୁମୋଦିତ ରୀତି, ଚୈତନ୍ୟ, ନାମମାଳ, ରାଜନୀତି ପରିସ୍ଥିତି, ନିର୍ବାଚନ ପ୍ରଥା, ଅନ୍ଧ ବିଶ୍ୱାସ, କାଳସୀ ପ୍ରଥା, ଋକ୍ଷଣ ଶୀଳତାର ଦୁର୍ଗୁଣ ଓ ସୁଗୁଣ, ଭଜନ, ଚଉତିଶା, ଜଣାଣର ଉପକାରିତା, ସଂସ୍କୃତ ଶ୍ଳୋକର ବ୍ୟାଖ୍ୟା, ଇତ୍ୟାଦି ବିଭିନ୍ନ ବିଷୟର ସରସ ବର୍ଣ୍ଣନା 'ନନାଙ୍କ ବସ୍ତାନି' ରମ୍ୟ ରଚନାରେ ଦେଖିବାକୁ ମିଳେ । ଫକୀରମୋହନଙ୍କ ପରି ସେ ସ୍ଥଳ ବିଶେଷରେ କହିଛନ୍ତି ଯେ ଆମ୍ଭେମାନେ ଭାରି ତାକତରକରେ ଚଳିବା ଲୋକ, ଟିକିଏ ବେହିସାବ ହେବାର ଯୁ ନାହିଁ ।' (୨୩)

ଫକୀରମୋହନଙ୍କ ପରେ ଶ୍ରୀ ପ୍ରହରାଜ ବିଶୁଦ୍ଧ ଘରୋଇ ଓଡ଼ିଆ ଭାଷା ପ୍ରୟୋଗ କରିବାରେ ସଫଳତା ଅର୍ଜନ କରିଛନ୍ତି । 'ଯମଦୂତମାନେ···ସମୁଜନେଇ···ଋଗାଳଦେବେ', 'ଖୋଦ ଠାକୁରାଣୀଙ୍କ ବାହନ ଆଠହାତିଆ ଗୋମୁହାଁ କୁମ୍ଭୀର ମୁଣ୍ଡରେ ଥୋପାଏ ରଙ୍ଗ ଟହ ଟହ ସିନ୍ଦୂର ଥିବାର ଆମ ବଡ ବଡକେ' 'ଗଙ୍ଗାମାତାଙ୍କୁ ମାଜଣା କଲେ' 'ପୋଖରୀ ମଝିରେ ଟୁବ୍‌କିନା ବୁଡ଼ିଯାଉଥିଲି' 'ବିକେଇ ଆଗୁର୍ଜଙ୍କ ଗୋସେଇଁ ମାଁ', 'ଯୋଉ ମଝିରୁ ଯୋଡାଏ ମାଠିଆ ଭାସି ଉଠିଲାରୁ ଯାହେବ ଡ଼ରି ପଳାଇଗଲି' 'ପାଠକ ଅବଧାନମାନେ ଓ ସମ୍ପାଦକ ମଣିମା' 'ତେନ୍ତୁଳ ଚକଟା ବିଦାବିଦିଟାଏ ହୋଇ', 'କେଉଁଟା ପୁରୀ, କେଉଁଟା ଦରଖଣ୍ଡିଆ, କେଉଁଟା ମଝିଗଡ଼ିଆ, କେଉଁଟା ନେଉଳ ଖଣ୍ଡିଆ, କେଉଁଟା ଗ୍ରହଣ ଖଣ୍ଡିଆ, ଆଦି ପଂକ୍ତି ମାନଙ୍କରୁ ଲେଖକଙ୍କର ବିଶୁଦ୍ଧ ଘରୋଇ ଭାଷା ପ୍ରୟୋଗ କରିବାରେ ଦକ୍ଷତା ପ୍ରମାଣିତ ହୋଇଥାଏ ।

୨୩—ଦୁଇଖଣ୍ଡ ଓଡିଆ ପୁସ୍ତକ (ଉତ୍କଳ ସାହିତ୍ୟ ୬ଷ୍ଠ ଭାଗ ୬ଷ୍ଠ ସଂଖ୍ୟା ପୃ ୧୭୧)
୨୩—ବାଇମହାନ୍ତି ପାଞ୍ଜି (୨ୟ ସଂସ୍କରଣ ପୃ୬୮)

ଅଭିବ୍ୟକ୍ତ କରିବାରେ ବରଂ ଏହିଭଳି ଭାଷା ପ୍ରଧାନ ସହାୟକ ହୋଇଛି । ମୋଟ ଉପରେ 'ନନାଂକ ବସ୍ତାନି' କ୍ଷୁଦ୍ରାବୟବ ହେଲେହେଁ ଅନ୍ୟାନ୍ୟ ରମ୍ୟରଚନା ପରି ଏହା ମଧ୍ୟ ସ୍ୱକୀୟ ପ୍ରତିଭାରେ ଭାସ୍ୱର । ଏହାର ଅଳଙ୍କୁଲଗା ଅସିଆ ମସିହା ଦେହରେ କେତେ ଲୋକଙ୍କର କେତେ ଗୁମର କଥା ନିହିତ ହୋଇ ରହିଛି । ଲେଖକ ଏହି ଭଳି ରମ୍ୟରଚନା-ମାନ ରଚନା କରି ଉତ୍କଳ ସାହିତ୍ୟକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ସମସାମୟିକ ସମାଜକୁ ମାର୍ଜିତ କରାଇବାକୁ ପରୋକ୍ଷ ସଂକେତ ପ୍ରଦାନ କରିଛନ୍ତି । ଫକୀରମୋହନ ସେନାପତିଙ୍କ ଶୈଳୀଦ୍ୱାରା ସେ ପ୍ରଭାବିତ ହୋଇଥିବା ଏବଂ ସେନାପତିଙ୍କୁ ତାଙ୍କର ଆଦର୍ଶ ବୋଲି ଭାବିଥିବା କଥା ସେ ନିଜେ 'ଉତ୍କଳ ସାହିତ୍ୟ' ରେଉଲ୍ଲେଖ କରିଥିଲେହେଁ ନିଜସ୍ୱଶୈଳୀ ଓ ପ୍ରକାଶ ଭଙ୍ଗୀର ମୌଳିକତାଦ୍ୱାରା ଉତ୍କଳୀୟ ଗଦ୍ୟ ସାହିତ୍ୟରେ ଶ୍ରୀ ପ୍ରହରାଜ ଅନନ୍ୟ ସାଧାରଣ ପ୍ରତିଭା ଭାବରେ ଚିର ସ୍ୱୀକୃତ ହୋଇ ରହିବେ ।



# ଗଦ୍ୟଶିଳ୍ପୀ ପ୍ରହରାଜ

ଡକ୍ଟର **ଶ୍ରୀନିବାସ ମିଶ୍ର**

ରଚନାର ପରିମାଣ ଓ ସ୍ୱାତନ୍ତ୍ର୍ୟ ଦୃଷ୍ଟିରେ ଊନବିଂଶ ଶତାବ୍ଦୀର ଶେଷପାଦ ଓ ବିଂଶଶତାବ୍ଦୀର ଆଦ୍ୟଭାଗରେ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ସାଧନା ଓଡ଼ିଆ ଗଦ୍ୟ-ସାହିତ୍ୟ କ୍ଷେତ୍ରରେ ବିଶେଷ ଗୌରବରେ ମଣ୍ଡିତ । କାହାଣୀ ଓ ଲୋକଗଳ୍ପ ସଂଗ୍ରହ, ବ୍ୟକ୍ତିନିଷ୍ଠ ସରସ ରମ୍ୟରଚନା ସୃଷ୍ଟିରେ ପ୍ରହରାଜଙ୍କ କୃତିତ୍ୱ ଅସାମାନ୍ୟ । କେତେକ ଉତ୍କୃଷ୍ଟ ସମାଲୋଚନା ଓ ପ୍ରବନ୍ଧ ଲେଖକଭାବେ ସେ ନିଜ ରଚନା ବୈଚିତ୍ର୍ୟ ସମ୍ପାଦନ କରିଛନ୍ତି । 'ଉତ୍କଳ ସାହିତ୍ୟ' ପତ୍ରିକାସହ ପ୍ରହରାଜଙ୍କ ଲେଖନୀର ସମ୍ପର୍କ ଅବିଚ୍ଛିନ୍ନ । ଦୀର୍ଘକାଳ ଧରି ପ୍ରାୟ ପ୍ରତ୍ୟେକ ସଂଖ୍ୟାରେ ତାଙ୍କ ରଚନାର ପ୍ରକାଶ ଏହି ପତ୍ରିକାର ଉତ୍କର୍ଷବିଧାୟକ ।

**କାହାଣୀ ଓ ଲୋକଗଳ୍ପ ସଂଗ୍ରହ**—ଗୋପାଳଚନ୍ଦ୍ର ପ୍ରହରାଜଙ୍କ ସଂଗୃହୀତ କାହାଣୀ ଗୁଡ଼ିକ ଧାରାବାହିକ ଭାବେ ପ୍ରକାଶିତ ହେବା ପୂର୍ବରୁ ସେ 'ଉତ୍କଳ ଦେଶର କାହାଣୀ' ନାମକ ପ୍ରବନ୍ଧ ଲେଖିଥିଲେ (୧) । ଏ ପ୍ରବନ୍ଧରେ ପ୍ରସଙ୍ଗକ୍ରମେ ନୀତିଶିକ୍ଷା ନିମନ୍ତେ Aesop's Fables, ବାଳକ ବାଳିକାମାନଙ୍କ ଶିକ୍ଷା ଓ ଚିତ୍ତାକର୍ଷଣ ନିମନ୍ତେ Nursery Talesର ଉଲ୍ଲେଖସହ ବଙ୍ଗଦେଶ ପ୍ରଚଳିତ କାହାଣୀଗୁଡ଼ିକୁ ପ୍ରକାଶ କରିବା ଦିଗରେ ଲାଲବିହାରୀ ଦେଙ୍କ ଉଦ୍ୟମର ଉଲ୍ଲେଖ ଅଛି । ଏହି କାର୍ଯ୍ୟର ଉପାଦେୟତା ଦ୍ୱାରା ଉଦ୍‌ବୁଦ୍ଧ ହୋଇ ପ୍ରହରାଜ ଓଡ଼ିଶାରେ ସମଧରଣର

୧—ଉତ୍କଳ ସାହିତ୍ୟ, ଭାଗ ୩/ସଂଖ୍ୟା ୧୦

ଉଦ୍ୟମରେ ଗ୍ରନ୍ଥ ହୋଇଥିବା ଜଣାଯାଏ । ସୂଚିତ ପ୍ରବନ୍ଧରେ କାହାଣୀର ଉଦ୍‌ଭାବନ, ଏହାର କ୍ରମବିକାଶ, ସାରବସ୍ତୁ ପ୍ରସଙ୍ଗ ଆଲୋଚିତ । ପାଶ୍ଚାତ୍ୟ ଶିକ୍ଷ୍ୟା ଓ ସଭ୍ୟତା ବୃଦ୍ଧିରେ ଲୋକ କାହାଣୀ ଲୋପର ଆଶଙ୍କା ହେବାରୁ ଲୋକମୁଖରୁ ଏଗୁଡ଼ିକ ସଂଗ୍ରହପୂର୍ବକ ଲିପିବଦ୍ଧ କରିବାର ଆବଶ୍ୟକତା ସେ ଉପଲବ୍‌ଧି କରିଥିଲେ । ଆଲୋଚନାରେ ସଂଗ୍ରାହକଙ୍କ ପ୍ରଚେଷ୍ଟାର ସୂଚନା ମଧ୍ୟ ଦିଆଯାଇଛି । ଗୋପାଳଚନ୍ଦ୍ର ପ୍ରହରାଜ ଉତ୍କଳ କାହାଣୀ ଆଧୁନିକ ଉତ୍କଳ ସାହିତ୍ୟର ସର୍ବଜନବୋଧ ପ୍ରଥମ ଗଦ୍ୟ ପୁସ୍ତକ । ଆଧୁନିକ ଯୁଗର ଆଦ୍ୟରେ ଏହା ନାଗରିକ ଓ ଗ୍ରାମୀଣ ମନ ମିଳନର ପ୍ରଥମ ଓ ପ୍ରଧାନ ପୀଠ ଭୂମି (୨) । କାହାଣୀ ସଂଗ୍ରହର ଉପଯୋଗିତା ପ୍ରହରାଜଙ୍କ ଦ୍ୱାରା ସ୍ୱୀକୃତ । କାହାର କାହାର ମତରେ କ୍ଷୁଦ୍ରବୁଦ୍ଧି ବାଳକ ବାଳିକାଙ୍କ ନିମନ୍ତେ କଳ୍ପିତ କାହାଣୀଗୁଡ଼ିକ ସାହିତ୍ୟର ଅଙ୍ଗ ହୋଇ ନପାରେ । ମାତ୍ର ଉତ୍ତର ସ୍ୱରୂପ ପ୍ରହରାଜ କହିଛନ୍ତି, "ଦେଶପ୍ରଚଳିତ କାହାଣୀମାନ ଦେଶବିଦେଶର ରୁଚିର ପରିମାପକ ଅଟେ ଏବଂ ଏହି ବାଳକଯୋଗ୍ୟ କାହାଣୀମାନ କେତେକ ଏକତ୍ରିତ କରି ସେମାନଙ୍କୁ ମନଯୋଗ ପୂର୍ବକ ପର୍ଯ୍ୟାଲୋଚନା କଲେ ଦେଶୀୟ ସାହିତ୍ୟର ଭଙ୍ଗୀ କେତେକ ଅଂଶରେ ପ୍ରକାଶିତ ହେବ, ଏଥିରେ ଆଉ ସନ୍ଦେହ କଣ ? ଦେଶୀୟ ସାହିତ୍ୟର ଉନ୍ନତି କରିବାକୁ ହେଲେ ପୁରାତନ ଓ ଅଧୁନାତନ ଆଗ୍ରହର ବ୍ୟବହାର, ରୁଚି, ମତି, କଳ୍ପନାଶକ୍ତିର ପରିକ୍ରମ ଜ୍ଞାତହେବା ସର୍ବତୋଭାବେ ଶ୍ରେୟସ୍କର" (୩) । ଅନ୍ୟତ୍ର ସେ ଘରୋଇ ଶବ୍ଦ, ଭାଷାସଂଗ୍ରହ ଓ ସଂରକ୍ଷଣ ଉପରେ ଗୁରୁତ୍ୱ ଦେଇଛନ୍ତି । ତାଙ୍କ କାହାଣୀ ଲେଖିବାର ପ୍ରଥମ ଉଦ୍ଦେଶ୍ୟ, ଉତ୍କଳର ନବାଣୋନ୍ମୁଖ କାହାଣୀ ଗୁଡ଼ିକ ଲିପିବଦ୍ଧ କରି ରଖିବା, ଦ୍ୱିତୀୟ ଉଦ୍ଦେଶ୍ୟ ତହିଁ ସଙ୍ଗେ ସଙ୍ଗେ ଘରୋଇ ଶବ୍ଦଗୁଡ଼ିକ ଯଥାଶକ୍ତି ଲିପିବଦ୍ଧ କରିବା (୪) । ଉତ୍କଳ କାହାଣୀ ପ୍ରଥମଭାଗର ସମାଲୋଚନା 'ଉତ୍କଳଦୀପିକା' ସମ୍ବାଦ ପତ୍ରରେ ପ୍ରକାଶିତ ହୋଇଥିଲା (୫) । 'ଉତ୍କଳ

୨—ଓଡ଼ିଆ ଲୋକଗୀତ ଓ କାହାଣୀ, ଡକ୍ଟର କୁଞ୍ଜ ବିହାରୀ ଦାଶ ପୃ-୩୫

୩—ଉତ୍କଳ କାହାଣୀ, ଭୂମିକା

୪—ଉତ୍କଳ ସାହିତ୍ୟ, ୮/୫ ପୃଷ୍ଠା-୧୬୮ (ବିଶୁଦ୍ଧଭାଷା ପ୍ରବନ୍ଧ)

୫—ଉତ୍କଳ ଦୀପିକା, ୨୧।୧୨।୧୯୦୧

କାହାଣୀ' ଓଡ଼ିଶାରେ ପ୍ରଥମ କାହାଣୀ ସଂଗ୍ରହ । ଆଲୋଚକ ଡକ୍ଟର ନଟବର ସାମନ୍ତରାୟ ପ୍ରହରାଜଙ୍କ ଉତ୍କଳକାହାଣୀ ପ୍ରଥମଭାଗର ପ୍ରକାଶକାଳ ୧୯୦୮ ଉଲ୍ଲେଖ କରିଛନ୍ତି (୬) । ତା' ହେଲେ ପ୍ରହରାଜଙ୍କ ପୁସ୍ତକ ଏ କ୍ଷେତ୍ରରେ ଆଦ୍ୟରଚନାର ଗୌରବ ହରାଇବ । ଜଣେ କରଣ ମହିଳାଙ୍କ ଦ୍ୱାରା ସଙ୍ଗୃହୀତ ଓ ରାସବାନନ୍ଦ ଦାସଙ୍କଦ୍ୱାରା ପ୍ରକାଶିତ 'କଥାଲହରୀ'ର ପ୍ରକାଶକାଳ ୧୯୦୧, ଏହାହିଁ ହେବ ପ୍ରଥମ ପୁସ୍ତକ; କିନ୍ତୁ 'କଥାଲହରୀ'ର ଭୂମିକାରେ ଶ୍ରୀ ମଧୁସୂଦନ ରାଓ ଗୋପାଳଚନ୍ଦ୍ର ପ୍ରହରାଜଙ୍କ କ୍ଷୁଦ୍ରପୁସ୍ତକ 'ଉତ୍କଳକାହାଣୀ'ର ଉଲେଖ କରିଛନ୍ତି । 'ଉତ୍କଳ ଦୀପିକା'ର ସମାଲୋଚନା ପ୍ରସଙ୍ଗରେ ପ୍ରହରାଜଙ୍କ କାହାଣୀ ସଂଗ୍ରହର ଭାଷା ଅଭିନନ୍ଦିତ ହୋଇ ନାହିଁ । 'ପୁସ୍ତକର ଭାଷା ସରଳ ଏବଂ ହାଟବାଟର ଲୋକମାନେ ସହଜରେ ପଢ଼ି ବୁଝିପାରିବାର କୌଣସି କଷ୍ଟନାହିଁ । ମାତ୍ର ଲେଖକ ଭାଷାକୁ ସମସ୍ତ ବାଳକଙ୍କର ସହଜବୋଧ୍ୟ କରିବାକୁ ଯାଇ ପୁସ୍ତକର ଭାଷାର ଆକାର ଗୁଡ଼ ଗ୍ରାମ୍ୟ ଲୋକଙ୍କ ପ୍ରଚଳିତ କଥାଭାଷାର ଭାଷା ପ୍ରଚାର କରି ଅଛନ୍ତି, ତାହା ଆମ୍ଭମାନଙ୍କୁ ଭଲ ଲାଗିଲା ନାହିଁ ।' ପ୍ରହରାଜ ଏହି ଅଭିଯୋଗର ଉତ୍ତର 'ଅଶୁଦ୍ଧ ଭାଷା' ଶୀର୍ଷକ ପ୍ରବନ୍ଧରେ ଦେଇ ଥିଲେ । ପ୍ରବନ୍ଧଟି 'ଉତ୍କଳ-ସାହିତ୍ୟ ସମାଜ'ର ଦ୍ୱିତୀୟ ବର୍ଷର ପ୍ରଥମ ଅଧିବେଶନରେ ପଠିତ ହୋଇଥିଲା । ମାକ୍ସମୁଲର, ହ୍ୱିଟନି, ସେଇସ୍ ପ୍ରଭୃତି ଭାଷାତତ୍ତ୍ୱବିଦ୍ ପଣ୍ଡିତମାନଙ୍କ ମନ୍ତବ୍ୟ ପାଠକରି ଉଦ୍ଧାରି ଭାଷା ସମ୍ପର୍କରେ ତାଙ୍କ ଧାରଣା ଦୃଢ଼ୀଭୂତ, ଏହା ପ୍ରବନ୍ଧରେ ସ୍ୱୀକୃତ ହୋଇଅଛି ।

ପ୍ରହରାଜଙ୍କ କେତେକ କାହାଣୀ ବଙ୍ଗଳାର ଜନୈକ ଖ୍ୟାତନାମା ସାହିତ୍ୟ ସେବକ ଶ୍ରୀରାମେନ୍ଦ୍ରଚନ୍ଦ୍ର ରାୟ ବଙ୍ଗୀୟ ଗୃହପ୍ରଚଳିତ ଭାଷାରେ ଭାଷାନ୍ତରିତ କରି ବଙ୍ଗଳାର 'ସାହିତ୍ୟ' ପତ୍ରିକାରେ ପ୍ରକାଶ କରିଥିଲେ । ଚୁଁଚୁଡାର ଏଡୁକେଶନ ଗେଜେଟ୍ ମଧ୍ୟ ସେହି କାହାଣୀଗୁଡ଼ିକ ତଦ୍ରୂପ ଭାଷାରେ ପ୍ରକାଶ କରିଥିଲେ । ଏହା ଲେଖକଙ୍କ ପ୍ରତି କିଛି କମ୍ ସମ୍ମାନର କଥା ନୁହେଁ । ବଙ୍ଗଭାଷାରେ ସେ କାଳରେ ଲୋକମୁଖରୁ

୬—ଓଡ଼ିଆ ସାହିତ୍ୟର ଇତିହାସ, ପୃ-୫୬୩

ଗଳ୍ପସଂଗ୍ରହ କରି ସାହିତ୍ୟ ସମ୍ପତ୍ତି ଭରିବା ନିମନ୍ତେ ବିଶେଷ ଉଦ୍ୟମ ହୋଇଥିବା ଜଣାଯାଏ ନାହିଁ । ଏ କ୍ଷେତ୍ରରେ ପ୍ରହରାଜଙ୍କ ଉଦ୍ୟମର ଏକ ସ୍ୱତନ୍ତ୍ର ସାର୍ଥକତା ଅଛି ।

**ସାହିତ୍ୟ ସମାଲୋଚନା**— 'ଦୁଇଖଣ୍ଡି ଓଡ଼ିଆ ପୁସ୍ତକ', 'ବିଶୁଦ୍ଧ ଭାଷା', 'ଉତ୍କଳ ସାହିତ୍ୟର ଆଧୁନିକ ଗତି', 'ଆମ ଘରର ହାଲଚାଲ' ପର୍ଯ୍ୟାୟ ଲେଖା ମଧ୍ୟରେ 'ସ୍ୱର୍ଗୀୟ ଫକୀରମୋହନ' ଲେଖକଙ୍କ ସାହିତ୍ୟାଲୋଚନା ମୂଳକ ରଚନା । 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ 'ଦୁଇ ଖଣ୍ଡି ଓଡ଼ିଆ ପୁସ୍ତକ'ରେ ଫକୀରମୋହନଙ୍କ 'ଛ'ମାଣ ଅଠଗୁଣ୍ଠ' ଓ ରାମଶଙ୍କର ରାୟଙ୍କର 'ଯୁଗଧର୍ମ' ପୁସ୍ତକ ସମାଲୋଚିତ । ଆଧୁନିକ ଉତ୍କଳ ସାହିତ୍ୟରେ ନବଯୁଗଭିତ୍ତିର ଦୃଢ଼ତା ସମ୍ପାଦକ ପୁସ୍ତକ ଦୁଇଟିର ବିଷୟବସ୍ତୁ, ଚରିତ୍ର ଚିତ୍ରଣ, ଭାଷା ବ୍ୟବହାର ପ୍ରସଙ୍ଗ ପ୍ରହରାଜ ବିଚାର କରିଛନ୍ତି । ରାମଚନ୍ଦ୍ର ମଙ୍ଗରାଜ ଓ ମହନ୍ତ ଉଦ୍ଧବ ଦାସଙ୍କ ଅର୍ଥଲୋଲୁପତା, ଇନ୍ଦ୍ରିୟାସକ୍ତି, ରାକ୍ଷସୀ ଲୀଳାର ଅଭିନୟଜନିତ ବିଷମୟ ପରିଣାମ, ଧର୍ମର ଜୟ ଓ ପାପର ପରାଜୟ ପ୍ରଭୃତି ଦିଗରୁ ଉଭୟ ପୁସ୍ତକର ଭାବଗତ ଐକ୍ୟ ପ୍ରତିପାଦିତ । ଉଚ୍ଚସ୍ଥାନ ପ୍ରଚଳିତ ମାର୍ଜିତ ଭାଷା ସ୍ଥାନରେ ବିଶୁଦ୍ଧ ଘରୋଇ ଭାଷା ବ୍ୟବହାର ଦ୍ୱାରା ଭାବ ଅଭିବ୍ୟକ୍ତି ଉପରେ ପ୍ରହରାଜ ଏ ଆଲୋଚନାରେ ଗୁରୁତ୍ୱ ଦେଇଛନ୍ତି ।

ଚରିତ୍ରଚିତ୍ରଣ ବିଷୟରେ ଉଭୟ ଲେଖକଙ୍କ କୃତିତ୍ୱ ସାଙ୍ଗକୁ ମନୋଗତ ଭାବ ପ୍ରକାଶରେ ସଂଯମର ଅଭାବ, ସ୍ଥଳବିଶେଷରେ ଚରିତ୍ରଚିତ୍ରଣ ଓ ଭାବ ପରିସ୍ଫୁଟନରେ ଛ'ମାଣ ଆଠଗୁଣ୍ଠରେ ବାହୁଲ୍ୟ ଦୋଷ ପ୍ରଦର୍ଶିତ । ସମାଲୋଚନାଟି କେବଳ ପୁସ୍ତକଦ୍ୱୟର ଦୋଷ ଗୁଣର ଆଲୋଚନା ନୁହେଁ, ଆଲୋଚକଙ୍କ ରୁଚି ଓ ଆଦର୍ଶ ସ୍ୱକୀୟ ରୀତିରେ ପ୍ରକାଶିତ ହୋଇ ଏହାକୁ ଚିତ୍ତାକର୍ଷକ କରିଅଛି । 'ବିଶୁଦ୍ଧ ଭାଷା' ଶୀର୍ଷକ ଆଲୋଚନାରେ ଲେଖକଙ୍କ ଏହି ମତ ଅଧିକ ସ୍ପଷ୍ଟରୂପେ ପ୍ରକାଶିତ । ଲେଖକଙ୍କ ପଦ୍ୟ ଓ କାହାଣୀ ସଂଗ୍ରହରେ ତୁମେ, ଆମେ, ରାଇଜ, ରଜା, ତଚେ, ମଚେ, ହଉଚି, କମିତି, ଇମିତି ଶବ୍ଦର ପ୍ରୟୋଗ ହେତୁ ରୁଚିକନ ସ୍ଥାନୀୟ ଲୋକମାନେ ଆକ୍ଷେପ କରୁଥିଲେ । ଏ ଧରଣର

ଆକ୍ଷେପ ମଧ୍ୟ 'ଦୀପିକା'ର ସଂପାଦକ 'ଉତ୍କଳକାହାଣୀ'ର ସମାଲୋଚନା ଅବସରରେ କରିଥିବା ସୂଚିତ ହୋଇଅଛି । ଲେଖକଙ୍କ ଦୃଷ୍ଟିରେ ଇଂରେଜି ଭାଷା ଅଶୁଦ୍ଧ ବା ଦୂଷଣୀୟ ନୁହେଁ । ଇଂରେଜି ଭାଷା ଓ ଇତର ଜନ ବ୍ୟବହୃତ ଭାଷା ମଧ୍ୟରେ ଢେର ପାର୍ଥକ୍ୟ ଅଛି । ଅଭିଧାନରେ ଓ ଇଂରେଜି ଶବ୍ଦ ଯେତେ ଲିପିବଦ୍ଧ ହୋଇ ରହେ, ସାହିତ୍ୟ ଓ ଭାଷା ବିଜ୍ଞାନର ସେତିକି ମଙ୍ଗଳ । ଯାହା ପ୍ରଚଳିତ ତାହା ଶୁଦ୍ଧ, ସାହିତ୍ୟ ବିଜ୍ଞାନର ଏହା ଏକ ପ୍ରଧାନ ନିୟମ । ଏ ପ୍ରସଙ୍ଗରେ ଅନ୍ୟତ୍ର ପ୍ରକାଶିତ ପ୍ରହରାଜଙ୍କ ମନ୍ତବ୍ୟ ଅତ୍ୟନ୍ତ ଉପାଦେୟ । 'ଯେତେଦୂର ପର୍ଯ୍ୟନ୍ତ ବିଶୁଦ୍ଧ ଇଂରେଜି ଓଡ଼ିଆ ଭାଷା ବ୍ୟବହାର କରି ଆମ୍ଭମାନଙ୍କ ଭାବ ବ୍ୟକ୍ତ କରିବା ସେତିକି ଉତ୍ତମ । ଯେଉଁଠାରେ ଉପାୟାନ୍ତର ନାହିଁ, କିମ୍ବା ନ କଲେ ଶୋଭନୀୟ ହେବ ନାହିଁ, ସେଠାରେ ମାର୍ଜିତ, ଆମଦାନି ଓ Conventional (ଆଡ଼ମ୍ବର ଯୁକ୍ତ) ଭାଷା ବ୍ୟବହାର କରିବା ଯୁକ୍ତିସିଦ୍ଧ' ।

ଭାଷା ଓ ଶବ୍ଦ-ରାଜ୍ୟରେ ପ୍ରବେଶ କରିଥିବା ସ୍ଥାନୀୟ ବିଶେଷତ୍ୱ ଗୁଡ଼ିକୁ ଲିପିବଦ୍ଧ କରି ରଖିବା ଉଚିତ । ଏ ଦିଗରେ ଶ୍ୟାମସୁନ୍ଦର ନନ୍ଦ, ମୃତ୍ୟୁଞ୍ଜୟ ରଥ ଓ ଆର୍ତ୍ତତ୍ରାଣ ଶତପଥୀଙ୍କ ଉଦ୍ୟମ ତାଙ୍କ ଦ୍ୱାରା ପ୍ରଶଂସିତ । ପ୍ରହରାଜଙ୍କ ପ୍ରବନ୍ଧ ଓଡ଼ିଆ ଭାଷା-ଆଲୋଚନା ଓ ବିଶ୍ଳେଷଣର ଏକ ଐତିହାସିକ କାଳର ପ୍ରାରମ୍ଭରେ ଲିଖିତ ହୋଇଥିବାରୁ ଏହାର ଯଥେଷ୍ଟ ଗୁରୁତ୍ୱ ଅଛି । ପରେ ପରେ ଗୋପୀନାଥ ନନ୍ଦ ଲୋକପ୍ରଚଳିତ ଶବ୍ଦ-ଗୁଡ଼ିକର ବୈଜ୍ଞାନିକ ପରୀକ୍ଷାରେ ପ୍ରବୃତ୍ତ ହୋଇଥିଲେ । 'ଉତ୍କଳ ସାହିତ୍ୟର ଆଧୁନିକ ଗତି' ରଚନାରେ ଜାତୀୟ ସଭ୍ୟତାର ଗତିପରିମାପକଭାବେ ଆଧୁନିକ ସାହିତ୍ୟ, ଆଧୁନିକ ଓଡ଼ିଆ ସାହିତ୍ୟରେ ସାଧନା, ସଂଯମ ଓ ଉତ୍ସାହର ଅଭାବ, ବିଭିନ୍ନ କ୍ଷେତ୍ରରେ କୃତବିଦ୍ୟ ଓଡ଼ିଆ ଲେଖକଙ୍କ ସୂଚନା ପ୍ରଦତ୍ତ । 'ଆମ ଘରର ହାଲଚାଲ' ପର୍ଯ୍ୟାୟ ମଧ୍ୟରେ ଲିଖିତ 'ଉତ୍କଳ ସାହିତ୍ୟ'ର ଫକୀରମୋହନ ସଂଖ୍ୟାରେ ପ୍ରକାଶିତ 'ସ୍ୱର୍ଗୀୟ ଫକୀରମୋହନ' ଶୀର୍ଷକ ଆଲୋଚନା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଆଧୁନିକ ଉତ୍କଳ ସାହିତ୍ୟର ସମକାଳୀନ ଗଦ୍ୟଶିଳ୍ପୀ ମଧୁସୂଦନଙ୍କ ସହ ଫକୀର-ମୋହନଙ୍କ ତୁଳନା, ଫକୀରମୋହନଙ୍କ ଗଦ୍ୟ ଭାଷାର ମହତ୍ତ୍ୱ, ପ୍ରହରାଜଙ୍କ

ଭାଷା ଉପରେ ଫକୀରମୋହନଙ୍କ ବ୍ୟାପକ ପ୍ରଭାବ ପ୍ରସଙ୍ଗ ଆଲୋଚିତ । ପ୍ରହରାଜଂକ ଆଲୋଚନାର ଆଭିମୁଖ୍ୟ ଜାଣିବା ନିମନ୍ତେ ଏଠାରେ ଉକ୍ତ ସମାଲୋଚନାରୁ କିଛି ଅଂଶ ଉଦ୍ଧୃତ ହେଉଅଛି । 'ଫକୀରମୋହନ ଉତ୍କଳରେ ଗଦ୍ୟକୁ ଯେଉଁ ଭାଷା ଦେଇ ଯାଇଅଛନ୍ତି, ସେ ଭାଷା ଇତପୂର୍ବେ ସାହିତ୍ୟ କ୍ଷେତ୍ରରେ ପ୍ରଚଳିତ ନ ଥିଲି ବୋଲି କହିଲେ ଚଳେ । କି ଭାଷାର ଗ୍ରାମ୍ୟ ମାଧୁରୀ, କି ସମାଜ ଚିତ୍ର ଚିତ୍ରଣ, କି ମାନବ ପ୍ରକୃତି ବର୍ଣ୍ଣନ, କି ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନ, ସବୁଥିରେ 'ଛ'ମାଣ ଆଠଗୁଣ୍ଠ' ଉତ୍କଳ ସାହିତ୍ୟର ଗଦ୍ୟ ବିଭାଗରେ ଗୋଟିଏ ନବଯୁଗର ସୂତ୍ରପାତ କରିଥିଲି । ଖାଣ୍ଟି ଓଡ଼ିଆ ଭାଷା ଫକୀରମୋହନଙ୍କ ଲେଖାର ପ୍ରତିଛତ୍ରରେ ପୂର୍ଣ୍ଣ' (୭) । ପ୍ରହରାଜଙ୍କ ଏ ପ୍ରଶଂସାସୂଚକ ମନ୍ତବ୍ୟ ଅତିଶୟୋକ୍ତି ନୁହେଁ ।

**ଜୀବନୀ ଓ ପ୍ରବନ୍ଧ**—'ମହାତ୍ମା ଚନ୍ଦ୍ରଶେଖର' ଶୀର୍ଷକ ଦୁଇଟି ପ୍ରବନ୍ଧରେ ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖରଙ୍କ ଜୀବନବୈଶିଷ୍ଟ୍ୟ ଓ ସିଦ୍ଧାନ୍ତ ଦର୍ପଣର ପରିଚୟ ପ୍ରଦତ୍ତ । ପଠାଣି ସାମନ୍ତଙ୍କ ଜୀବନର ମହତ୍ତ୍ୱ ଓ ସାଧନା ପ୍ରତି ଲେଖକଙ୍କ ଶ୍ରଦ୍ଧା ରଚନା ଦ୍ୱୟରେ ପ୍ରକାଶିତ । ଐତିହାସିକ ରମେଶଚନ୍ଦ୍ର ଦତ୍ତଙ୍କର 'ପୁରାତନ ଭାରତ' ଗ୍ରନ୍ଥର ସ୍ଥଳ-ବିଶେଷର ଭାବ ଅବଲମ୍ବନରେ 'ପ୍ରାଚୀନ ଭାରତର ଆର୍ଯ୍ୟର ବ୍ୟବହାର' ପ୍ରବନ୍ଧ ଲିଖିତ । ଆର୍ଯ୍ୟମାନଙ୍କ ଆଦିମ ବାସସ୍ଥାନ, ବିବାହପ୍ରଥା, ଜାତିଭେଦ, ବିଦ୍ୟାଧ୍ୟୟନ, ଧନସମ୍ପତ୍ତି, ଖାଦ୍ୟ ସାମାଜିକ ଅନୁଷ୍ଠାନ ପ୍ରଭୃତି ସମ୍ପର୍କରେ ପ୍ରାୟ ଅଢ଼େଇ ହଜାର ବର୍ଷ ତଳର ଘଟଣାବଳୀ ବର୍ଣ୍ଣିତ । ରଚନାଟି ବେଶ୍ ତଥ୍ୟପୂର୍ଣ୍ଣ । 'ହିନ୍ଦୁ ସମାଜର ଆଧୁନିକ ଗତି' ରଚନାଟି କଟକ ସାରସ୍ୱତ ସମିତିର ତୃତୀୟ ବାର୍ଷିକ ଅଧିବେଶନରେ ପଠିତ ହୋଇ-ଥିଲି । ହିନ୍ଦୁ ଧର୍ମ ଓ ହିନ୍ଦୁ ସମାଜ ଏହି ଆଲୋଚନାର ଆଧାର । ଉଭୟର ମୂଳଭିତ୍ତି ବେଦ । ବୈଦିକ ଉପନିଷଦ, ସଂହିତା, ବୌଦ୍ଧ,-ପୁରାଣ, ମୁସଲମାନ ଓ ଆଧୁନିକ ଏହି କ୍ରମରେ ଯୁଗବିଭାଗପୂର୍ବକ ହିନ୍ଦୁ ସମାଜର ବିକାଶ ନିରୂପିତ । ଲେଖକଙ୍କ ଦୃଷ୍ଟିରେ ହିନ୍ଦୁ ସମାଜ ରକ୍ଷଣ-

୭—ଉତ୍କଳ ସାହିତ୍ୟ, ୭୨/୪ (ଫକୀରମୋହନ ସଂଖ୍ୟା) ପୃ-୧୭୧

ଶୀଳ ହୁଅନ୍ତି । ଏହାର ବର୍ଦ୍ଧମାନ କାଳକ୍ରମେ ପରିବର୍ତ୍ତିତ ଓ ପରିବର୍ଦ୍ଧିତ । ଯୁଗରୁଚି କ୍ରମେ ହିନ୍ଦୁ ସମାଜର ଉପଯୁକ୍ତ ପରିବର୍ତ୍ତନକାମୀ ଲେଖକଙ୍କର କାମ୍ୟ । ଉଭୟ ପ୍ରବନ୍ଧ ଲେଖକଙ୍କ ଇତିହାସ ଓ ସଂସ୍କୃତି ଚେତନାର ପରିଚୟସୂଚକ । ହିନ୍ଦୁ ପୁନରଭ୍ୟୁତ୍‌ଥାନବାଦୀ ଭାବେ ଲେଖକଙ୍କ ଦୃଷ୍ଟିକୋଣ ପ୍ରବନ୍ଧଗୁଡ଼ିକରେ ସ୍ପଷ୍ଟ ପ୍ରକାଶିତ ।

**ରମ୍ୟରଚନାର ସୂଚନା** ଫକୀରମୋହନଙ୍କ ସରସ ରମ୍ୟ-ରଚନା 'ନନାଙ୍କ ପାଞ୍ଜି' ପ୍ରକାଶିତ ହେବା ପରେ ଓଡ଼ିଆ ସାହିତ୍ୟରେ ବ୍ୟକ୍ତିନିଷ୍ଠ ସମାଜପ୍ରସଙ୍ଗ ସମ୍ପର୍କିତ ରଚନାର ସୂତ୍ରପାତ ହୋଇଥିଲା । ଏ କ୍ଷେତ୍ରରେ ଫକୀରମୋହନଙ୍କ ପ୍ରାରମ୍ଭିକ ଉଦ୍ୟମର ପରିପୂର୍ଣ୍ଣ ଅଭିବ୍ୟକ୍ତି ଗୋପାଳଚନ୍ଦ୍ର ପ୍ରହରାଜଙ୍କ ରଚନାରେ ଦେଖିବାକୁ ମିଳେ । ଚିତ୍ତାକର୍ଷକ, ଆତ୍ମନିଷ୍ଠ ସରସ ରମ୍ୟରଚନା କ୍ଷେତ୍ରରେ ପ୍ରହରାଜ ଫକୀରମୋହନଙ୍କ ସୁଯୋଗ୍ୟ ଉତ୍ତର-ସାଧକ । ପୁଣି ଏ ଧରଣର ରଚନା 'ଉତ୍କଳ ସାହିତ୍ୟ' ପତ୍ରିକାରେ ଧାରାବାହିକଭାବେ ପଚିଶ ବର୍ଷ କାଳ ଲେଖି ସେ ଓଡ଼ିଆ ସାହିତ୍ୟର ଏକ ନବସୃଷ୍ଟ ବିଭାଗକୁ ପରିପୁଷ୍ଟ କରିଥିଲେ । ତାଙ୍କ 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା' 'ବାଇମହାନ୍ତି ପାଞ୍ଜି' ପୁସ୍ତକ ଆକାରରେ ପ୍ରକାଶିତ । 'ମିଆଁ ସାହେବଙ୍କ ରୋଜନାମଚ୍ଚ' 'ଦୁନିଆର ହାଲଚାଲ' 'ନନାଙ୍କ ବସ୍ତାନି' 'ଆମଘରର ହାଲଚାଲ' ୧୯୨୦ ମଧ୍ୟରେ ଲିଖିତ ହୋଇଥିଲା । ପରେ 'ବାଇନାମାଙ୍କ ବୁକ୍‌ଲୀ' ଓ 'ଦୁନିଆ ଖତ୍ତ ଏ' ମଧ୍ୟ ପ୍ରକାଶିତ । 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା' 'ବାଇମହାନ୍ତି ପାଞ୍ଜି' ଓ 'ମିଆଁ ସାହେବଙ୍କ ରୋଜନାମଚ୍ଚ' ଲେଖକ ଦୁର୍ମୁଖ ଶର୍ମା ଛଦ୍ମ ନାମରେ ଲେଖୁଥିଲେ । ପରବର୍ତ୍ତୀ ରଚନାଗୁଡ଼ିକ ଲେଖକଙ୍କ ପ୍ରକୃତ ନାମରେ ପ୍ରକାଶିତ । ଏହି ରଚନା ଗୁଡ଼ିକରେ ସମସାମୟିକ ସମାଜ ଜୀବନର ବିବିଧ ପ୍ରସଙ୍ଗ ଓ ସମସ୍ୟାବଳୀର ବିଶ୍ଳେଷଣ ନିହିତ ।

**ଭାଗବତ ଟୁଙ୍ଗୀରେ ସନ୍ଧ୍ୟା**—'ଭାଗବତ ଟୁଙ୍ଗୀରେ ସଂଧ୍ୟା' ପ୍ରହରାଜଙ୍କ ପ୍ରଥମ ରମ୍ୟରଚନା (୮) । ଭାଗବତ ଟୁଙ୍ଗୀ ଉତ୍କଳୀୟ ପଲ୍ଲୀର ହୃତପିଣ୍ଡ । ଏହାକୁ କେନ୍ଦ୍ର କରି ଗ୍ରାମର ସମୂହ ଜୀବନର ପ୍ରକାଶ

---

୮—ଉତ୍କଳ ସାହିତ୍ୟ, ୪/୭-୮ରୁ ୫/୧୦ ପର୍ଯ୍ୟନ୍ତ ଦଶଟି ସଂଖ୍ୟାରେ ପ୍ରକାଶିତ

ଓ ବିକାଶ । ଭାଗବତ ଟୁଙ୍ଗୀରେ ସଂଧ୍ୟା ସମୟରେ ଗ୍ରାମ ଲୋକମାନେ ମିଳିତ ହୋଇ ବିଭିନ୍ନ ସମସ୍ୟା ଆଲୋଚନା କରନ୍ତି । ଏହି ଭାଗବତ ଟୁଙ୍ଗୀକୁ ଆଧାର କରି ପ୍ରହରାଜ ଦଶଟି ସଂଧ୍ୟାର ପରିକଳ୍ପନା କରିଛନ୍ତି । ଲେଖକଙ୍କ ଛଦ୍ମନାମ ଦୁର୍ମୁଖ ଶର୍ମା ପ୍ରସଙ୍ଗରେ 'ଭାଗବତ ଟୁଙ୍ଗୀରେ ସଂଧ୍ୟା'ରେ ଏକ ବାଖ୍ୟା ରହିଛି । ଠାଏ ସଂଧ୍ୟା ପ୍ରସଙ୍ଗରେ ସେ ଉଲ୍ଲେଖ କରିଛନ୍ତି 'ଶ୍ରୀ ଦୁର୍ମୁଖ ଶର୍ମା ଏଇଟି ମୋର ଶ୍ରଦ୍ଧା ନାମ । ପିଲାଦିନେ ସ୍ଥାନ ଅସ୍ଥାନ ନ ବୁଝି ବୃଥା ଅନେକ ବାକ୍ୟବ୍ୟୟ କରୁଥିଲି ଓ ଅତ୍ୟନ୍ତ କଳହପ୍ରିୟ ଥିଲି ବୋଲି ଏ ନାମକରଣ—କିନ୍ତୁ ମୋର ଜନ୍ମପତ୍ରିକା ନାମ ଗୁଣନିଧି । ଏ ସ୍ୱୀକାରୋକ୍ତି ମଧ୍ୟରେ ପ୍ରହରାଜଙ୍କ ରଚନାର ଆଭିମୁଖ୍ୟ କେତେକ ପରିମାଣରେ ପ୍ରକାଶିତ । ଲେଖକ ସାମାଜିକ ଜୀବନର ଦୋଷ ଦୁର୍ବଳତା ସମାଲୋଚନା ଅବସରରେ ଅତ୍ୟନ୍ତ ନିର୍ମମ ଓ ଏ ସମାଲୋଚନାର ପରିସର ଅତ୍ୟନ୍ତ ବ୍ୟାପକ, ମୁଖ୍ୟତଃ ବ୍ୟକ୍ତିନିଷ୍ଠ ଭାବନା ସମ୍ବଳିତ ଅନ୍ୟାୟ ଅନାଚାର ବିରୋଧରେ ସଂଗ୍ରାମ ତାଙ୍କର ଲକ୍ଷ୍ୟ ଥିବାରୁ ତାଙ୍କ ରଚନାରେ ଅନେକ ସମୟରେ ବିଷୟବସ୍ତୁର ସଙ୍ଗତି ଓ ପ୍ରକାଶର ସଂଯମ ହୁଏ ନାହିଁ; କିନ୍ତୁ ଏହା ହିଁ ପ୍ରହରାଜଂକ ରଚନା ରୀତିର ଅନନ୍ୟ ତାର ପରିଚୟକ । ସେ ନିଜେ ସଂଧ୍ୟାର ବିଜ୍ଞାପନରେ ଲେଖିଛନ୍ତି, 'ଅର୍ଦ୍ଧ ପ୍ରସ୍ଫୁଟିତ ବା ଅପ୍ରସ୍ଫୁଟିତ ଭାବମାନ ପ୍ରାପ୍ତ ହୋଇ ଯେଉଁମାନେ କଳ୍ପନା ସାହାଯ ରେ ସୁପରିସ୍ଫୁଟ ବା ଉଚ୍ଚତର ଭାବମାନଙ୍କରେ ଆରୋହଣ କରନ୍ତି, ସେମାନେ ସୁଖୀ । ପ୍ରଚ୍ଛନ୍ନ ଭାବ ଓ ଉପମାମାନ ହୃଦୟଙ୍ଗମ କରିବାକୁ ଚେଷ୍ଟା କଲେ ବୁଦ୍ଧିବୃତ୍ତି ପରିମାର୍ଜିତ ଓ ଉନ୍ନତ ହୁଏ ।' ଲେଖକଙ୍କ ଶାଣିତ ବିଦ୍ରୂପର ପ୍ରକୃତ ମର୍ମୋପଲବ୍ଧି ନିମନ୍ତେ ଏହା ଇଙ୍ଗିତ ତୁଲ୍ୟ ।

**ପ୍ରହରାଜ ଓ ଅଲିଭର ଓେ୍ୱଣ୍ଡେଲ ହୋମସ**—ଗୋପାଳ ଚନ୍ଦ୍ର ପ୍ରହରାଜ ରମ୍ୟ ରଚନା ସୃଷ୍ଟିରେ ଅଲିଭର ଓେ୍ୱଣ୍ଡେଲ ହୋମସ୍‌ଙ୍କ ଦ୍ୱାରା ପ୍ରଭାବିତ ହେବା ନିଜେ ସ୍ୱୀକାର କରିଛନ୍ତି । ଶର୍ମା ପାଠ୍ୟାବସ୍ଥାରେ ଆମେରିକା ଲେଖକ ମହାମତି ଓେ୍ୱଣ୍ଡେଲ ହୋମସ୍‌ଙ୍କୁ ଦିନାକେତେ ଗୁରୁ କରି ପାଇଥିଲେ । ସନ୍ଧ୍ୟାର ଛଟା ସେହି ଓସ୍ତାଦ ଘରେ ବିକୃତ ଓ

ବିଭଙ୍ଗ ଅନୁସରଣ ମାତ୍ର । ଅଲିଭର ଓ୍ବେଣ୍ଡେଲ ହୋମସ୍ (୧୮୦୯—୧୮୯୪) ଆମେରିକାର ଜଣେ ପ୍ରସିଦ୍ଧ ଲେଖକ ଓ ବିଚକ୍ଷଣ ପ୍ରତିଭାଶାଳୀ ବ୍ୟକ୍ତି । ବୈଜ୍ଞାନିକ, ଚିକିତ୍ସକ, କବି, ଔପନ୍ୟାସିକ, ପ୍ରବନ୍ଧକାର, ଜୀବନୀଲେଖକ, ସମାଲୋଚକ ଓ ଅଧ୍ୟାପକ ଭାବେ ସେ ପ୍ରସିଦ୍ଧି ଲାଭ କରିଥିଲେ । ବୈଜ୍ଞାନିକ ବସ୍ତୁବାଦ ସାଙ୍ଗକୁ କବିସୁଲଭ କଳ୍ପନାର ଐକତାନିକ ସମନ୍ୱୟ ତାଙ୍କଠାରେ ଘଟିଥିଲା । ସେ ଅତି ରକ୍ଷଣଶୀଳ ଥିଲେ ସୁଦ୍ଧା ତାଙ୍କଠାରେ ବୈଜ୍ଞାନିକ ହେତୁବାଦ କାର୍ଯ୍ୟ କରୁଥିଲା । ସ୍ୱାଧୀନଚିନ୍ତା ଓ ଯୁକ୍ତିବାଦର ସେ ଥିଲେ ସମର୍ଥକ । ଅସମ୍ବଦ୍ଧ, ଅନିୟମିତ ପ୍ରବନ୍ଧ ରଚନାରେ ତାଙ୍କ କୃତିତ୍ୱ ପ୍ରକାଶିତ ହୋଇଥିଲା । ତାଙ୍କର Autocrat of the Breakfast Table (୧୮୫୮) The Professor of the Breakfast Table (୧୮୬୦) The Poet at the Breakfast Table (୧୮୭୨), Over the tea cups (୧୮୯୧) ପ୍ରକାଶିତ ହୋଇଥିଲା । କଥୋପକଥନ ରୀତିର ପ୍ରାଧାନ୍ୟ, ଏକ ଲଘୁ ଆନନ୍ଦୋଚ୍ଛଳ ପରିବେଶ, ବାକ୍ୟାଂଶ ବ୍ୟବହାରରେ ଶକ୍ତିମତ୍ତା ମଧ୍ୟରେ ହୋମସ୍‌ଙ୍କ ସ୍ୱକୀୟ ଶୈଳୀ ପରିସ୍ଫୁଟ । ତାଙ୍କ ରଚନାରେ ବର୍ଣ୍ଣନାତ୍ମକ ରୀତି ଆଚରିତ । କଥାବସ୍ତୁର ବୈଚିତ୍ର୍ୟ ଓ ବିବିଧତା ମଧ୍ୟରେ ସେ ନିଜ ବକ୍ତବ୍ୟ ପ୍ରକାଶ କରି ନିଜକୁ ଭାରମୁକ୍ତ କରିଥିବା ସ୍ୱୀକାର କରିଛନ୍ତି । ଭାବପ୍ରବଣତା ସାଙ୍ଗକୁ ବ୍ୟଙ୍ଗ, ଦୁଃଖ ସାଙ୍ଗକୁ ପରିହାସ ତାଙ୍କ ରଚନାରେ ପ୍ରକାଶିତ । ସେ ଥିଲେ ଜଣେ ରସିକ କୌତୁକପ୍ରିୟ ବ୍ୟକ୍ତି (୯) । ହୋମସ୍‌ଙ୍କ ବ୍ୟକ୍ତିତ୍ୱ ଓ ରଚନାବୈଶିଷ୍ଟ୍ୟ ପ୍ରସଙ୍ଗ ଆଲୋଚନା କଲାବେଳେ ପ୍ରହରାଜଙ୍କ ସହ ତାଙ୍କର ବିସ୍ମୟକର ସାମଞ୍ଜସ୍ୟ ଲକ୍ଷ୍ୟ କରାଯାଏ । ହୋମସ୍ ପ୍ରଥମେ ଆଇନ୍ ବିଦ୍ୟା ଅଧ୍ୟୟନ କରୁଥିଲେ । ପରେ ଚିକିତ୍ସା ବିଦ୍ୟାପ୍ରତି ଆକୃଷ୍ଟ ହେଲେ । ପ୍ରହରାଜ ଥିଲେ ଜଣେ ଆଇନଜ୍ଞ, କବି, ପ୍ରବନ୍ଧଲେଖକ । ରସିକତାପୂର୍ଣ୍ଣ ସାମାଜିକ ବିଦ୍ରୂପାତ୍ମକ ବ୍ୟକ୍ତିନିଷ୍ଠ ରଚନାରେ ତାଙ୍କ କୃତିତ୍ୱ ଅସାମାନ୍ୟ ଥିଲା । ରକ୍ଷଣଶୀଳତା ଓ ଆଧୁନିକତା ମଧ୍ୟରେ ସମନ୍ୱୟ ବିଧାନର ସେ ଥିଲେ ପକ୍ଷପାତୀ ।

---

୯—Readers' Encyclopaedia of American literature. (P. 476–478).

ଯଥାର୍ଥରେ ଏକ ନବଯୁଗର ଅରୁଣୋଦୟ କାଳରେ ପଣ୍ଡିତ, ମାଷ୍ଟର, ମହାଜନ, ଜମିଦାର, ପାଗଳ ମଣ୍ଡ୍ରାମ ପ୍ରଭୃତି ଚରିତ୍ରମାନଙ୍କ ଆଳାପ ଆଲୋଚନା ମଧ୍ୟଦେଇ ଲେଖକ ଦେଶର ଶିକ୍ଷା, ସାହିତ୍ୟ, ସମାଜସମ୍ପର୍କରେ ରସିକତାପୂର୍ଣ୍ଣ ଆଲୋଚନା କରିଛନ୍ତି । କାବ୍ୟ, ବ୍ୟାକରଣ, ନାଟକ, କର୍ମକାଣ୍ଡରେ ପ୍ରବେଶ ଥିବା ରକ୍ଷଣଶୀଳ ପଣ୍ଡିତ ମହାଶୟଙ୍କର ଓଡ଼ିଆ ଭାଷାକୁ ସଂସ୍କୃତରେ ପରିଣତ କରିବାର ସଚର୍କ ଉଦ୍ୟମ, ମାଇନର ଫେଲ ଓଡ଼ିଆ ଭାଷାପ୍ରତି ବଜାଙ୍ଗୀପୂ ଘୃଣା ପୋଷଣ ପୂର୍ବକ ଇଂରାଜୀ ଶବ୍ଦଗୁଡ଼ିକ ସାହାଯ୍ୟରେ ଓଡ଼ିଆ ଭାଷାର ଭାବବ୍ୟକ୍ତ କରି ନିଜ ପାଣ୍ଡିତ୍ୟ ପ୍ରଦର୍ଶନ ଇଚ୍ଛୁକ ମାଷ୍ଟର ମହାଶୟ—ଉଭୟ ଚରିତ୍ର ସମଗ୍ର ରଚନା ମଧ୍ୟରେ ଯେପରି ପରିହାସର ପାତ୍ର ହୋଇଛନ୍ତି ତହିଁରୁ ପ୍ରହରାଜଙ୍କର ଭାଷାରୀତିର ଆଦର୍ଶ ସ୍ପଷ୍ଟହୁଏ । ବାତୁଳ ମଣ୍ଡ୍ରାମ ଚରିତ୍ର ମଧ୍ୟରେ ଲେଖକ ସମାଜର ସ୍ୱାଭାବିକ ନିତ୍ୟ ପ୍ରତ୍ୟକ୍ଷ ଚିତ୍ର ପରିବେଷଣ କରିଛନ୍ତି । ମଣ୍ଡ୍ରାମ ଚରିତ୍ରର ପରିକଳ୍ପନା ପ୍ରସଙ୍ଗରେ ହୋମସ୍‌ଙ୍କର ଏକ ରଚନାଂଶ ଉଦ୍ଧୃତ ହୋଇପାରେ । ସେ ଲେଖିଛନ୍ତି— 'Inbanty is often logic of an a accurate mind over-tasked.' ପ୍ରହରାଜ ଏହାକୁ ସୁନ୍ଦର ଭାବେ ଭାଷାନ୍ତର କରି ଲେଖିଛନ୍ତି, 'ଅଧିକାଂଶ ବାତୁଳ କବିଙ୍କ ଉପାଦାନରେ ଗଠିତ । ମଣ୍ଡ୍ରାମ ଏ ଧରଣର ଏକ ବାତୁଳ । ତା ଜୀବନ ସାର୍ଥକ' (୧୦) । 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା'ରେ ଲେଖକଙ୍କର ଚିନ୍ତାରାଶି ବିକ୍ଷିପ୍ତ । ଭାବର ଏକମୁଖିତା ବା ସଂହତିବୋଧ ଖୋଜିଲେ ପାଠକ ନିରାଶ ହେବେ ।

✓**ବାଇମାହାନ୍ତି ପାଞ୍ଜି**—ସନ୍ଧ୍ୟାର ସମାପ୍ତିରେ ଲିଖିତ ହେଲା ବାଇମାହାନ୍ତି ପାଞ୍ଜି (୧୧) । ଏହାର ନାମକରଣରେ ଫକୀର ମୋହନଙ୍କ ପରିକଳ୍ପନାର ସ୍ପଷ୍ଟ ପ୍ରଭାବ ନିହିତ । ଫକୀରମୋହନ 'ନନାଙ୍କ ପାଞ୍ଜି'ରେ ଲେଖିଛନ୍ତି, 'ମୋ ନନା ବାଇମାହାନ୍ତି ମୁକୁନ୍ଦ ଦେବଙ୍କ ଅଢ଼େଇ ଅଙ୍କରେ ସ୍ୱର୍ଗକୁ ଯିବାବେଳେ ତାହାଙ୍କ ମହାମୂଲ୍ୟ ପାଞ୍ଜିସବୁ

୧୦—ଭାଗବତ ଟୁଙ୍ଗୀରେ ସନ୍ଧ୍ୟା, ପୃ-୧୩୫

୧୧—ଉତ୍କଳ ସାହିତ୍ୟ ଭାଗ, ୫/୧୧-୧୨ ଭାଗ, ୭/୧୦ ପୁସ୍ତକ ୧୯୧୩ରେ ପ୍ରକାଶିତ

ହେବା କର ପାଇଥିଲେ । ସେଥିରୁ କେତେବଡ଼ା ପାଞ୍ଜି ମୋ ଭାଗରେ ପଡ଼ିଅଛି । ମୁଁ ତାକୁ ତର୍ଜମାକର ଆପଣଙ୍କୁ ଦେବି" (୧୨) । ବାଇମାହାନ୍ତି ପାଞ୍ଜିରେ ଲେଖକଙ୍କ ରଚନା-ସାଫଲ୍ୟର ସ୍ପଷ୍ଟରୂପ ଆଲୋଚକଙ୍କ ଦୃଷ୍ଟିରେ ଧରାପଡ଼େ । ବିଷୟବସ୍ତୁ ବିନ୍ୟାସରେ ଏକ ନିର୍ଦ୍ଦିଷ୍ଟ କ୍ରମ ଓ ଢଙ୍ଗରେ ସଂହତି ରକ୍ଷିତ ହୋଇ ରଚନା ସୌନ୍ଦର୍ଯ୍ୟ ସମ୍ପାଦିତ । ମଫସଲ ଓ ସହର ଜୀବନର ଚଳଣି ମଧ୍ୟରେ ପାର୍ଥକ୍ୟ, ସମାଜ, ଜାତିପ୍ରଥା, ନାରୀଶିକ୍ଷା, ସ୍ତ୍ରୀ-ସ୍ୱାଧୀନତା, ବିଧବାବିବାହ, ଆଧୁନିକ ସଭ୍ୟତା, ବ୍ରାହ୍ମଣ ଜାତିର ଅଧୋଗତି, ଓକିଲାତିପ୍ରଥାର ଦୁର୍ବଳତା, ଓକିଲମାନଙ୍କର ବ୍ୟବସାୟ-ଗର୍ହିତ ମାତ କୃତ୍ରିମତାର ନିନ୍ଦା ଲେଖକ ପାଞ୍ଜିର ବିଭିନ୍ନ ସ୍ଥାନରେ କରିଛନ୍ତି । ସାମାଜିକ ଜୀବନର ଦୁର୍ନୀତି ଉପରେ ତୀବ୍ର ଆଘାତ ସୃଷ୍ଟି କଲାବେଳେ ଲେଖକ ଅତ୍ୟନ୍ତ ସତର୍କ । 'ଆମ୍ଭେମାନେ ଘର ତାକତରକରେ ଚଳିବା ଲୋକ, ଟିକିଏ ବେ-ହିସାବ ହେବାର ଯୁ ନାହିଁ ।' ତଥାକଥିତ ଶିକ୍ଷିତ ସଭ୍ୟ ବାବୁମାନଙ୍କୁ ସାବଧାନ କରିଦେବାକୁ ଯାଇ ଲେଖକ କହନ୍ତି, 'ସେମାନଙ୍କ ସ୍ୱାଚ୍ଛନ୍ଦ୍ୟମୂଳରେ କେତେ ସ୍ୱାର୍ଥତ୍ୟାଗ, ଜୀବନନାଶ ଓ ସାଧନା ନିହିତ ଅଛି । ଗୋଟିଏ ସଭ୍ୟବାବୁ ସହସ୍ର ସହସ୍ର ମୂଲିଆଙ୍କ ଅର୍କ (Essence) (ପୃ-୪୨) । ଯୁଗସନ୍ଧିରେ ଦେଖାଦେଇଥିବା ଏକ ଦିଗରେ ରକ୍ଷଣଶୀଳତା ଓ ଅନ୍ୟଦିଗରେ ଆଧୁନିକପନ୍ଥୀ ମନୋଭାବ ମଧ୍ୟରେ ଆପାତ ବିରୋଧ ଲେଖକଙ୍କ ରସିକତାପୂର୍ଣ୍ଣ ଉକ୍ତି ମଧ୍ୟରେ ସୁନ୍ଦରଭାବେ ପ୍ରକାଶିତ । 'ଆଜକାଲି ନବ୍ୟ ସଭ୍ୟତା ଯେପରି ମାଘମାସ କୁହୁଡ଼ିଭଳି ଘର ଚଞ୍ଚଳ ମାଡ଼ିଆସୁଛି, ଏଥିରେ ଭୟ ହେଉଛି ଯେ ମରହଟ୍ଟା ଅମଳର କଥା ସବୁ ଏ ଅମଳରେ ବୁଡ଼ିଯିବ । ଆଜକାଲି ଶିକ୍ଷିତ ପିଲାମାନଙ୍କର ମରହଟିଆ ବୁଢ଼ାଙ୍କ ପ୍ରତି ଗୋଟାଏ ଭାରି ଘୃଣା ।" (ପୃ-୪୪) ନୂତନ ଶିକ୍ଷା ଓ ସଂସ୍କୃତିର ଆପାତ ମୋହ ଆଧୁନିକ ଯୁବକମାନଙ୍କ ଆଚରଣ ବ୍ୟବହାର ଓ ମନୋଭାବରେ ବହୁ ଶିଥିଳତା ଆଣି ଦେଇଥିଲା । ଫକୀରମୋହନଙ୍କ ବାବୁ ଚନ୍ଦ୍ରମଣି ପଟ୍ଟନାୟକ, 'ନବ୍ୟ ଜମିଦାର'ର ରାଜୀବଲୋଚନଙ୍କ ଚରିତ୍ର ସମକାଳୀନ ଦୁର୍ବଳତାର

୧୨—ଫକୀରମୋହନ ଗ୍ରନ୍ଥାବଳୀ, (୨ୟ ସଂସ୍କରଣ) ୨ୟ ଖଣ୍ଡ. ପୃ-୬୭୭

ସାର୍ଥକ ସାହିତ୍ୟକ ଅଭିବ୍ୟକ୍ତି । ପ୍ରହରାଜ ଏ ସମ୍ପର୍କରେ ନିଜ ସ୍ୱଭାବସୁଲଭ ରସିକତାପୂର୍ଣ୍ଣ ସଂସ୍କାରମୁଖୀ, ଶ୍ଳେଷଧର୍ମୀ ଲେଖାରେ ଲେଖିଛନ୍ତି, 'ଦେଶ ଯେତିକି ସଭ୍ୟ ହୁଏ, ମଦଦୋକାନ ସେତିକି ବେଶୀ-ହୁଏ । କଲିକତାର ଗଳି ଗଳି ମଦଦୋକାନ ଓ ଘର ଘର ମଦ୍ୟଭକ୍ତ । ଜଣେ ଲେଖକ କହିଅଛନ୍ତି, ଜାତିର ସାହିତ୍ୟ ଜାତିର ସଭ୍ୟତାର ପରିମାପକ, କିନ୍ତୁ ବାଇମାହାନ୍ତି ଅନୁଭବରୁ ସ୍ଥିର କରିଅଛନ୍ତି ଯେ ମଦଦୋକାନର ଉତ୍ତରୋତ୍ତର ଶ୍ରୀବୃଦ୍ଧି ଜାତିର ସଭ୍ୟତାର ପରିମାପକ (ପୃ-୫୭) । ବାଇମାହାନ୍ତି ପାଞ୍ଜି ବହୁ ଢଗଢ଼ମାଳରେ ପୂର୍ଣ୍ଣ । ଏ ସମ୍ପର୍କରେ ଟୋମସ୍‌ଙ୍କ ପ୍ରସଙ୍ଗ ସୂଚିତ ହୋଇପାରେ । ଟୋମସ୍ ଅସରନ୍ତି ହାସ୍ୟୋ-ଦ୍ଦୀପକ, ବିଦ୍ରୂପାତ୍ମକ ଗଦ୍ୟାଂଶ ବ୍ୟବହାର କରିବାରେ ନିପୁଣତା ଦେଖାଇ ଥିଲେ । Apology is only egotism wrong side out, Easy crying widows take new husbands soonest, Man has his will but woman has her way, Grave is a sure cure for hay fever when taken eight feet deep. ପ୍ରଭୃତି ଅଂଶ ଟୋମସ୍‌ଙ୍କ ଦ୍ୱାରା ବ୍ୟବହୃତ । ଏଥିରେ ମାନବିକ ପ୍ରକୃତି ଅଧ୍ୟୟନର ଗଭୀର ଦୃଷ୍ଟିଭଙ୍ଗୀ ସାଙ୍ଗକୁ ତା'ର ଦୁର୍ବଳତା ଉପରେ ତୀକ୍ଷ୍ଣ ଆଘାତ ଦିଆଯାଇଛି । ଢଗଢ଼ମାଳି ବ୍ୟବହାର ସମ୍ପର୍କରେ ପ୍ରହରାଜଙ୍କ ମନ୍ତବ୍ୟ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । "ଦେଶରେ ଢଗଢ଼ମାଳଗୁଡ଼ିକ ଯେଉଁମାନେ ଘୃଣାଚକ୍ଷୁରେ ଦେଖନ୍ତି ସେମାନଙ୍କୁ ଭଲ ପଚ୍ଚରିଲି, ଇତର ଲୋକଙ୍କ ମୁହଁରୁ ଶୁଣିଲେ ବୋଲି କଅଣ ଗୁଣକ୍ୟଙ୍କୁ ବରାବର ପାସୋର ପକାଇଲେ । ଢଗଢ଼ମାଳ ବହୁତ ବର୍ଷର ବହୁ ପୁରୁଷାନୁକ୍ରମେ ସଞ୍ଚିତ ମାନବ-ପ୍ରକୃତି ଉପରେ ଟୀକା । ଗୋଟିଏ ଢଗଭିତରେ ଖଣ୍ଡିଏ ଖଣ୍ଡିଏ ପୁସ୍ତକ ଲୁଚି ରହିଥାଏ, କେତେ ଗଭୀର ଉପଦେଶ ଗର୍ଣ୍ଣିରି ମଧ୍ୟରେ ଛପିଥାଏ, ସେ ଗୁଡ଼ିକ ନିଦେଶୀ ଢଗଗୁଡ଼ିକ ହାଡ଼ମଳିକର ବୁଢ଼ୀମାଆଠାରୁ ଶୁଣାଗଲା ବୋଲି ହସରେ ଉଡେଇ ଦେବା କେତେଜ ଅନ୍ୟାୟ ।" ଏ ଧରଣର ଢଗଢ଼ମାଳ ସାଙ୍ଗକୁ ପ୍ରହରାଜ ନିଜ ବିଦ୍ରୂପପୂର୍ଣ୍ଣ ରସିକତା ଯୁକ୍ତ ଉକ୍ତି ବହୁସ୍ଥଳରେ ପ୍ରକାଶ କରି ମାନବ ଚରିତ୍ରର ଦୁର୍ବଳତା ଉପରେ ଆଘାତ ସଞ୍ଚାର କରିଛନ୍ତି । 'ବାଇମାହାନ୍ତି ପାଞ୍ଜି'ରେ

ବିଷୟ ବସ୍ତୁର ସ୍ୱଚ୍ଛନ୍ଦ୍ୟାସ, ଭାଷାପ୍ରୟୋଗର ଦକ୍ଷତା ବ୍ୟକ୍ତିନିଷ୍ଠ ରଚନାର ସୌନ୍ଦର୍ଯ୍ୟ ବହୁ ପରିମାଣରେ ସଂରକ୍ଷିତ । ରଚନାର ସାମାଜିକ ଆବେଦନ ଅପୂର୍ବ ରସାନୁଭୂତିରେ ଅଭିବ୍ୟଞ୍ଜିତ ।

**ମିଆଁ ସାହେବଙ୍କ ରୋଜନାମଚା**—(୧୩) ଗୋପାଳଚନ୍ଦ୍ର ପ୍ରହରାଜ ଜଣେ ଆଇନଜୀବୀ । ଆଇନ ଅଧ୍ୟାୟର୍ଚ୍ଚା ଓ ଏହାର ବ୍ୟାବହାରିକ ପ୍ରୟୋଗ ଅବସରରେ ସେ ମୁସଲମାନ ସମାଜର ପ୍ରଥା ଓ ଚଳଣି ସହ ପରିଚିତ ହେବାର ସୁଯୋଗ ପାଇଥିଲେ । ଫଳତଃ 'ବାଇମାହାନ୍ତି ପାଞ୍ଜି' ଅନୁସରଣ କଲେ 'ମିଆଁ ସାହେବଙ୍କ ରୋଜନାମଚା'ରେ । ରୋଜନାମଚା ହେଉଛି ଦୈନିକ ଲିପି ବା ଡାଏରୀ । ଯଥାର୍ଥରେ ମୁସଲମାନ ସମାଜର ରୀତିନୀତି ଓ ସାମ୍ପ୍ରଦାୟିକ ଚଳଣିର ଅଭିଜ୍ଞତା ପ୍ରସୂତ ଏହି ରଚନା, ମୁସଲମାନ୍ ସମାଜର ବିବାହ ବିଧି, ବିବାହର ବାଧ୍ୟବାଧକତା, ବିବାହବନ୍ଧନଚ୍ଛେଦ, ସେମାନଙ୍କ ଉଇଲ ବା ଚରମପତ୍ର, ସମ୍ପତ୍ତି ବିଭାଜନପ୍ରଥା ପ୍ରଭୃତି ବିଷୟଗୁଡିକ ସମ୍ପର୍କରେ ଏଥିରେ ଚିତ୍ତାକର୍ଷକ ତଥ୍ୟ ରହିଛି । 'ରୋଜନାମଚା'ରେ ଲେଖକଙ୍କ ମୌଳିକତା ଅପେକ୍ଷା ସଂଗ୍ରହର ପରିମାଣ ଅଧିକ । ଅନୁଭୂତି ଅପେକ୍ଷା ଅଭିଜ୍ଞତାଦ୍ୱାରା ଏ ରଚନା ସମୃଦ୍ଧ । ଲେଖକ 'ରୋଜନାମଚା'ର ପ୍ରଥମ ଲେଖାର ସୂଚନା ଦେଇଛନ୍ତି, "ଆଗରୁ କହି ରଖିଲୁ 'ରୋଜନାମଚା'ରେ ପାଠକମାନେ ମୌଳିକତା ଖୋଜିବେ ନାହିଁ । ଖୋଜିଲେ ମଧ୍ୟ ପାଇବେ ନାହିଁ । ରୋଜନାମଚାର କଥା ଗୁଡ଼ିକ ଜଙ୍ଗଲରୁ କାଠବାଉଁଶ, ବୁଦାରୁ ବେତବାଡ, ପଛଆଡ଼ୁ ମାଟି ଏଗୁଡ଼ିକ ଆଣି ଧୋବା, ବଢ଼େଇ, ରାଜମୂଲିଆଙ୍କ ଦ୍ୱାରା ପ୍ରସ୍ତୁତ ଧୂଳିଆଘର । ପାଞ୍ଚଗାଁରୁ ପାଞ୍ଚ ଜିନିଷ ଗୋଟାଇ ଧୁଡ଼ିଆଟିଏ ବାନ୍ଧି ଏ ଗଣ୍ଠିଲି କିସ୍ କା ? ଉତ୍ତର ହାମ୍ରା ।" ଏ ରଚନାରେ ପାଞ୍ଜି ବା ସନ୍ଧ୍ୟାର ବ୍ୟଙ୍ଗ ବିଦ୍ରୂପ ନାହିଁ । ଲେଖକଙ୍କ ଅନୁସନ୍ଧିତ୍ସା ଓ ତଥ୍ୟ ଆହରଣ ସହଜ ଅନାଡ଼ମ୍ବର ରୀତି ମଧ୍ୟରେ ପ୍ରକାଶିତ । ସମ୍ପ୍ରଦାୟ ବିଶେଷର ପାରଂପରିକ ରୀତିନୀତି ଲିପିବଦ୍ଧ କରିବାର ଉପଯୋଗିତା ସାହିତ୍ୟ କ୍ଷେତ୍ରରେ ସାମାନ୍ୟ ବେପାର ନୁହେଁ ।

---

୧୩—ଉତ୍କଳ ସାହିତ୍ୟ, ୭/୧୧-୧୨ରେ ଆରମ୍ଭ ୮।୮ ସଂଖ୍ୟା ପର୍ଯ୍ୟନ୍ତ ଛପାଅଛି ରଚନା ।

**ଦୁନିଆର ହାଲଚାଲ**—ଦୀର୍ଘ ଦଶବର୍ଷ ଧରି 'ଦୁନିଆର ହାଲଚାଲ' ଧାରାବାହିକ ଭାବେ ପ୍ରକାଶିତ (୧୪)। ଏହି ରଚନା ସୃଷ୍ଟିରେ ଲେଖକଙ୍କ ପିତା ତାଙ୍କର ସହାୟକ ଥିଲେ। ପିତାଙ୍କ ଦେହାବସାନରେ ହାଲଚାଲ 'ନନାଙ୍କ ବସ୍ତାନି' ରୂପଧାରଣ କଲା। ଆଧୁନିକ ଆଦବକାଇଦା, ଆଧୁନିକ ସଭ୍ୟତା ବର୍ଜିତ ହେଲେ ମଧ୍ୟ ତାଙ୍କ ରକ୍ଷଣଶୀଳ ପିତାଙ୍କଠାରେ ଥିଲା ପୁରୁଣାକାଳିଆ ସରଳତା, ପ୍ରକୃତିବାଦିତା, ଧର୍ମନିଷ୍ଠା ଓ ବିପଦରେ ଧୈର୍ଯ୍ୟ। ତେଣୁ ଲେଖକ ଆଧୁନିକତାର **ପକ୍ଷପାତୀ** ଥିଲେ ସୁଦ୍ଧା ରକ୍ଷଣଶୀଳତା ବିରୋଧରେ ନିର୍ଭିକର ଭାବେ ସଂଗ୍ରାମ କରିବାର ଉଦଗ୍ର ଅଭିଳାଷ ବା ଅତ୍ୟୁତ୍ସାହ ପୋଷଣ କରୁ ନ ଥିଲେ। ନୀଳକଣ୍ଠ ଦାସ ମୁକୁର ପତ୍ରିକାରେ 'ନିଶ' ଓ 'ଉତ୍କଳ ସାହିତ୍ୟ' ପତ୍ରିକାରେ 'ସାମାଜିକ କୁସଂସ୍କାର' ଶୀର୍ଷକ ପ୍ରବନ୍ଧ ଲେଖି ଉଗ୍ର ସଂସ୍କାରପ୍ରବଣତାର ପରିଚୟ ଦେଉଥିଲା-ବେଳେ ସମନ୍ୱୟପନ୍ଥୀ ଭାବେ ପ୍ରହସନ ଲେଖୁଥିଲେ। 'ଭାଇ ଟିକିଏ ଥୟଧର, କାମ ବନ୍ଦ କରନା; କିନ୍ତୁ ଆଗପଛକୁ ଚାହିଁ ସମସ୍ତ କାର୍ଯ୍ୟ ଧୀର ଭାବରେ କର। ସମସ୍ତଙ୍କୁ ପଦେ କଅଁଳେଇ କଅଁଳେଇ କହିଲେ କାହାର କ୍ଷତି ନାହିଁ। ସମାଜକୁ ସାଙ୍ଗେ ସାଙ୍ଗେ ଟାଣିନେବାହିଁ ବାହାଦୁରି' 'ଦୁନିଆର ହାଲଚାଲ'ରେ ଲେଖକଙ୍କ ଦୃଷ୍ଟି ପ୍ରସାରିତ। ବିଷୟବସ୍ତୁର ବୈଚିତ୍ର୍ୟରେ ଏହା ସମୃଦ୍ଧ, ଲୋକଚରିତ୍ର ଅଧ୍ୟୟନର ବ୍ୟାପକତାରେ ଏହା ପରିପୁଷ୍ଟ। ଏହି ପର୍ଯ୍ୟାୟ ଲେଖା ଆରମ୍ଭ ପୂର୍ବରୁ ତାଙ୍କ ସୂଚନା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ। 'ଏଥିରେ ଆମ୍ଭେମାନେ ଚିର ବସନ୍ତ ଲୀଳାସ୍ଥିତ ରାଜପ୍ରାସାଦରୁ ଆରମ୍ଭ କରି ଚିର ଗ୍ରୀଷ୍ମଗୋଳାସ୍ଥିତ ପର୍ଣ୍ଣକୁଟୀର ପର୍ଯ୍ୟନ୍ତ, ମାଂସପିଣ୍ଡବନ୍ନିମ୍ନ ଗୋବରଗଣେଶଙ୍କଠାରୁ ଜରାଜୀର୍ଣ୍ଣ ଫକୀରଙ୍କ ପର୍ଯ୍ୟନ୍ତ, କୋଣାର୍କ ପଟାଳଠାରୁ ଖୁସ ବଗିଚା ପର୍ଯ୍ୟନ୍ତ, ଉଚ୍ଚତମ ବିଚାରାଳୟଠାରୁ ଗ୍ରାମ ଚୌକିଦାର ଘର ପର୍ଯ୍ୟନ୍ତ, ପ୍ରିଭିକାଉନସିଲଠାରୁ ଗ୍ରାମର ପଞ୍ଚାୟତ ସଭା ପର୍ଯ୍ୟନ୍ତ, ରାଜମାତ୍ରଠାରୁ ଅର୍ଥମାତ୍ର ପର୍ଯ୍ୟନ୍ତ, ପ୍ରଧାନମନ୍ତ୍ରୀଙ୍କଠାରୁ ରାମ ସାମନ୍ତ ପର୍ଯ୍ୟନ୍ତ, କୁପ୍ରଥାଠାରୁ ସୁପ୍ରଥା ପର୍ଯ୍ୟନ୍ତ, ବଲନାଚଠାରୁ କେଳାନାଚ ପର୍ଯ୍ୟନ୍ତ, ନ୍ୟାୟ ଦର୍ଶନଠାରୁ ରାମଲୀଳା ସୁଆଙ୍ଗ ପର୍ଯ୍ୟନ୍ତ କେତେକ ବିଷୟର ଆଲୋଚନା କରିବୁ।' ଲେଖକଙ୍କର ଅଭିଜ୍ଞତାର ପରିପକ୍ୱତା

---

୧୪—ଉତ୍କଳ ସାହିତ୍ୟ, (ଭାଗ ୯/୨ରୁ ୧୮/୮ ଦଶବର୍ଷକାଳ ପ୍ରକାଶିତ)

ସଙ୍ଗେ ସଙ୍ଗେ ସେ ଏ ଧରଣର ବ୍ୟଙ୍ଗ୍ୟମୂଳକ ରଚନାରେ ଅଧିକ ପ୍ରବୃତ୍ତ ହେଉଥିଲେ । ତାଙ୍କ ସଂସାର ଦର୍ଶନ ଓ ମାନବ ପ୍ରକୃତି ପର୍ଯ୍ୟବେକ୍ଷଣ ଅଧିକ ଗମ୍ଭୀର ହେଉଥିଲା । 'ସଂସାରଟାକୁ ନିରୀକ୍ଷଣ କରି ଯେତିକି ଦେଖୁଛି ସେତିକି ମୋର ପୂର୍ବ ଧାରଣା ଗୁଡ଼ିକ ଦୃଢ଼ତର ହେଉଅଛି । କେତେ କେତେ ଧାରଣା ଚୂନା ହୋଇ ଯାଉଅଛି ଓ ମନୁଷ୍ୟ ପ୍ରକୃତିର ଗୋଟାଏ ନୂତନ ଅଧ୍ୟାୟ ମୋର ଦୃଷ୍ଟିଗୋଚର ହେଉଅଛି । ଦୀର୍ଘ ଦଶବର୍ଷ କାଳର 'ଦୁନିଆର ହାଲଚାଲ' ମଧ୍ୟରେ ଲେଖକ ସମସାମୟିକ ବିଚାରପ୍ରଥା, ଶାସନକାର୍ଯ୍ୟ, ସ୍ୱାୟତ୍ତଶାସନ, ଶିକ୍ଷାନୀତି, ସାହିତ୍ୟ ପରିସ୍ଥିତି, ସମାଜ ସଂସ୍କାର ପ୍ରଭୃତି ବିଷୟ ବ୍ୟାପକ ପର୍ଯ୍ୟାଲୋଚନା କରିଛନ୍ତି । ଜାତୀୟ ଜୀବନର ବୃହତ୍ତର କ୍ଷେତ୍ରରେ ପରିଲକ୍ଷିତ ଦୋଷ ଦୁର୍ବଳତା ଉପରେ ଲେଖକ ଲେଖନୀ ସାହାଯ୍ୟରେ କଟାକ୍ଷପାତ କରି ସଂସ୍କାରପ୍ରୟାସୀ । ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପ୍ରସଙ୍ଗରେ ନେତାମାନଙ୍କ ସ୍ୱାର୍ଥ ଚିନ୍ତାର ନିନ୍ଦା କରି ଜାତିକୁ ସ୍ୱାର୍ଥସିଦ୍ଧିର ନିମିତ୍ତ ମାତ୍ର ନ କରିବା ନିମନ୍ତେ ସେମାନଙ୍କ ପ୍ରତି ସତର୍କବାଣୀ ଉଚ୍ଚାରିତ ।

ସ୍ଥଳବିଶେଷରେ ଲେଖକଙ୍କର ମନ୍ତବ୍ୟ ନମ୍ର, କେଉଁଠି ବା ଏହା ରୂଢ଼ ବ୍ୟଙ୍ଗାତ୍ମକ । ସରକାରଙ୍କ ବିଚାରନୀତିର ସମାଲୋଚନା ପ୍ରସଙ୍ଗରେ ସେ କହନ୍ତି, ଅଦାଲତରେ ପଇସା ଖେଳ ଲାଗିଛି । × × ଆଇନକାନୁନ ଓ ଅଦାଲତ ବଡ଼ଲୋକମାନଙ୍କ ନିମନ୍ତେ ହୋଇଅଛି । ଯେ ପଇସା ଖର୍ଚ୍ଚ ପାରିଲ, ତାହାରି ଜୟ । ଯାହାର କର୍ମର ଯୋର ନାହିଁ ସେ ମଲା ।' କିନ୍ତୁ ଶିକ୍ଷାନୀତିର ସମାଲୋଚନା ପ୍ରସଙ୍ଗରେ ଲେଖକଙ୍କର ବାକ୍ୟବାଣ ଅତ୍ୟନ୍ତ ଶାଣିତ, ମର୍ମଭେଦୀ । 'ବର୍ତ୍ତମାନ ଓଡ଼ିଶାରେ ପ୍ରାଥମିକ ଶିକ୍ଷା ବିଭାଗ ଆସୁରୀମାୟା ଓ ପୈଶାଚିକ ନରକଙ୍କାଳରେ ପରିପୂର୍ଣ୍ଣ ଏକଥା ଅତ୍ୟୁକ୍ତି ନୁହେଁ । × × ଶିକ୍ଷାବିଭାଗର ଦେବତାମାନଙ୍କ ଦେଉଳଗୁଡ଼ିକ ଶୋଧା-ହେବା ଆବଶ୍ୟକ । ତାହା ନ କରି ଗଭର୍ଣ୍ଣମେଣ୍ଟ ଖାଲି ଅର୍ଥବ୍ୟୟ କରି ଗୁନ୍ଦିଆ ଟାଣୁଥିବେ ସତ୍ୟ; କିନ୍ତୁ ରେମେଣି ଚଢ଼େଇଙ୍କ ଦାଉରୁ ଭୋଗଯାକ ବିବାକ ମାରିହେଉଥିବ ।' ଦୁନିଆର ହାଲଚାଲ ଲେଖିଲାବେଳେ ଦୁନିଆ ସମ୍ପର୍କରେ ପ୍ରହରାଜଙ୍କ ଅଭିଜ୍ଞତା ସମୃଦ୍ଧ ମନ୍ତବ୍ୟ କୌତୂହଳପ୍ରଦ, ଶିକ୍ଷଣୀୟ । 'ଦୁନିଆଟା ଭାରି ଅଖାଞ୍ଜିଆ । ବେଳେ ବେଳେ ଦୁନିଆରେ ପଣି ଅନେକ

ପ୍ରକାର ମାଡ଼ ମସ୍ଥାଳବାକୁ ହୁଏ । ସେ ମାଡ଼ରେ କେତେ ଲୋକଙ୍କର ଦାନ୍ତ ଦରଜ ହୁଏ, କେତେ ଲୋକଙ୍କ ଦାନ୍ତ ଦରଜ ଗ୍ରୁଣ୍ଡେ, କେତେଲୋକ କେବଳ ଅଭ୍ୟାସ ଦୃଷ୍ଟିରୁ ସେ ମାଡ଼ ଖାଇବାକୁ ଭଲ ପାʼନ୍ତି । ସଂସାରର ଏହି ମାଡ଼ଟା ବାରମାସିଆ । ଏହି ମାଡ଼ର ଗାଳ କାଟି ମାମଲା ଫଏସଲା କରିବା ଲାଗି କେତେ କେତେ ଯୋଗୀ ଋଷି ମୁନି ମୁଣ୍ଡାଏ ମୁଣ୍ଡାଏ ଖଡ଼ି ଘସି ଗୋଟାଳ କରି ଫଳାଇ ଅଛନ୍ତି । ପ୍ରହରାଜଙ୍କ ରଚନାରୀତି ଓ ପଦ୍ୟଶୈଳୀର ଆଭିମୁଖ୍ୟ ଜାଣିବା ନିମନ୍ତେ ନିମ୍ନଦୃଷ୍ଟାନ୍ତ ଅତ୍ୟନ୍ତ ଉପାଦେୟ ।

"ମୋ ଭଳିଆ ଅଧାଉଜୁଆ ଲେଖକମାନେ ପାଗ ବାନ୍ଧି ବାନ୍ଧି କଟେଇ ବରଖାସ୍ତ । ଅସଲ କଥା କହିବା ପୂର୍ବରୁ ଅବତାରଣା ଓ ଆଳାପନା କରୁ କରୁ ଆମ ମାଲମସଲାରୁ ଚଉଦପଣ ଖତମ ହୋଇ ସାରି-ଥାଏ, ଅସଲକଥା ବାହାରିଲା ବେଳକୁ ମନ ଓ ମୂନ ଶୁଖିଲା କାଠଭଳିଆ ନୀରସ ଓ ଦରଜଗମ ହୋଇ ଯାଇଥାଏ । ଆମ୍ଭମାନଙ୍କ ସଙ୍ଗେ ଆପଣଙ୍କୁ ଭାରତୀକଚରିକରେ ଚଳିବାକୁ ପଡ଼ିବ । କାରଣ ପାଠ ଡାକୁଛି କହି ତୁଣ୍ଡ ମେଣ୍ଢା ମୁଣ୍ଡ ।" ଏଠାରେ ଦୁଇଟି ବିଷୟ ସ୍ପଷ୍ଟ । ପ୍ରଥମତଃ ଲେଖକ ପ୍ରକୃତ ବକ୍ତବ୍ୟର ଦୀର୍ଘ ଭୂମିକା ଦିଅନ୍ତି । ଦ୍ୱିତୀୟରେ ଭୂମିକା ଶେଷରେ ପ୍ରକୃତ ବକ୍ତବ୍ୟ ଶାଣିତ ବିଦ୍ରୂପପୂର୍ଣ୍ଣ । ପ୍ରହରାଜଙ୍କ ପ୍ରକାଶଭଙ୍ଗୀ ଆମୋଦ-ଦାୟକ ରସିକତାପୂର୍ଣ୍ଣ, ମାତ୍ର ସେଥିରେ ବିଦ୍ରୂପର ତୀବ୍ରତା ନିହିତ । ଭାଷା ସରଳ ଓ ଚିତ୍ତାକର୍ଷକ, ସ୍ଥଳେ ସ୍ଥଳେ ରଚନାର ଭଙ୍ଗୀ ଲଘୁ ହେଲେ ହେଁ ସୁସ୍ଥ ଜାତୀୟଜୀବନ ଗଠନ ନିମନ୍ତେ ଏଥିରେ ନିହିତ ବ୍ୟଙ୍ଗାତ୍ମକ ସମା-ଲୋଚନା ଅନନ୍ୟ । କେଉଁଠି ଭାଷା ଲଘୁ, ହାସ୍ୟୋଚ୍ଛଳ, କେଉଁଠି ବା ଏହା ଗମ୍ଭୀର । ଏହି ଭାଷା ପ୍ରୟୋଗଗତ ସମ୍ପର୍କରେ ପ୍ରହରାଜ ସୂଚନା ଦେଇଛନ୍ତି, 'ଏଥି ପୂର୍ବେ ଦୁନିଆରେ ହାଲଚଲ 'ଟପକ ନବସିଆ' ଭାଷା ଓ ଢଙ୍ଗରେ ଚାଲୁଥିଲା, ମାତ୍ର ଗତ ସଂଖ୍ୟାରେ ସେପରି ଗ୍ରୁପ ଚକଣ ଭାଷା ନ ଥାଇ ମୁରବୀଧରଣିଆ ଅର୍ଥାତ ଗମ୍ଭୀର ଭାଷା ହୋଇଗଲା । ଜାତିର ନୈତିକ, ଆଧ୍ୟାତ୍ମିକ ଓ ସାମାଜିକ କ୍ଷେତ୍ରରେ ଉନ୍ନତିର ଅନ୍ତରାୟଗୁଡ଼ିକର ନିବାରଣହିଁ ପ୍ରହରାଜଙ୍କ ଅଭିପ୍ରାୟ । ସାମାଜିକ ପ୍ରସଙ୍ଗର ଆଲୋଚନା ଅବସରରେ ତାଙ୍କ ବିଶ୍ଳେଷଣ ପାଟବ, ତୀକ୍ଷ୍ଣ ବୁଦ୍ଧି ପ୍ରକାଶିତ । ଗାଳ୍ପର

ହୃଦୟାବେଗ ଓ ନିବିଡ଼ ମାନବିକ ସହାନୁଭୂତିର ସମନ୍ୱୟରେ ଏହି ଆଲୋଚନା ଗୁଡ଼ିକ ରସୋତ୍ତୀର୍ଣ୍ଣ । ପ୍ରହରାଜଙ୍କ ପରିହାସ ପ୍ରିୟତା, ପ୍ରଖର ବିଦ୍ରୂପ ଓ ଶ୍ଳେଷ ପ୍ରୟୋଗପାଟବ ହେତୁ ଏହି ରଚନାଗୁଡ଼ିକ ସ୍ୱକୀୟ ମହିମାମଣ୍ଡିତ ।

**କଳ୍ପିତ 'ଶ୍ରୀକ୍ଷେତ୍ରର ହାଲଚାଲ'**—ଲେଖକ କିଛିକାଳ ପୁରୀରେ ଅବସ୍ଥାନ କରିଥିଲେ । ଶ୍ରୀକ୍ଷେତ୍ରର ହାଲଚାଲ ଅର୍ଥାତ 'ମାଦଳା ପାଞ୍ଜିରୁ ବଢ଼ାଏ' ନାମରେ ପୁରୀର ବଡ଼ ଦେଉଳ, ବଡ଼ ଠାକୁର, ବଡ଼ ମଠ, ବଡ଼ ଲୋକ, ବଡ଼ରଜା, ବଡ଼ ଦଋଆ, ବଡ଼ ନାଟୁଆ, ବଡ଼ ନେତା, ବଡ଼ ପଣ୍ଡିତ ପ୍ରଭୃତି ପୁରୀର ସବୁ ବଡ଼ୁଆମାନଙ୍କର ସ୍ତୁତି, ଅସ୍ତୁତି, ନୀତି, ଅନୀତି, ସ୍ୱତକୀର୍ତ୍ତି, ସ୍ଥିତିଗତି ସମସ୍ତ କଲମ ବନ୍ଦ କରିବା ତାଙ୍କ ବାସନା ଥିଲା (୧୫) କିନ୍ତୁ ଶ୍ରୀକ୍ଷେତ୍ରର ହାଲଚାଲ କେଜାଣି କାହିଁକି ବନ୍ଦ ହୋଇ ତା ସ୍ଥାନରେ ପ୍ରକାଶିତ ହେଲା 'ଆମଘରର ହାଲଚାଲ ।'

**ଆମଘରର ହାଲଚାଲ**—ଉଲ୍ଲିଖିତ ରଚନା ସମ୍ବନ୍ଧରେ ଲେଖକଙ୍କ ସୂଚନା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । 'ମୁଁ ଅହର୍ନିଶ ସଂସାରର ସ୍ୱତନୀତି ଦେଖୁଛି । ଏ ଦୁନିଆରେ ମୋ ଆଖି ଆଗରେ ଶତଶତ ଶିକ୍ଷଣୀୟ ଘଟଣା ଦେଖିଛି । ନୀତି ଉପଦେଶପୂର୍ଣ୍ଣ ଶତଶତ ପୁସ୍ତକ ପାଠ କରୁଛି । × × ଶହ ଶହ ଲୋକଙ୍କୁ ପୋଥି ପାଠରୁ ସଦୁପଦେଶ ଦେଇ ମୋର ପାଣ୍ଡିତ୍ୟ ଦେଖାଉଛି । ତଥାପି ମୋ ନିଜର କାର୍ଯ୍ୟ କରିବା ବେଳ ଉପସ୍ଥିତ ହେଲାକ୍ଷଣି ଏସବୁ କେଉଁଆଡେ ପାଶୋରି ପକାଉଛି । କିମାଶ୍ଚର୍ଯ୍ୟମତଃ ପରଂ । ଏହି ଗୁଡ଼ିକ ମନକୁ ବୁଝାଇବା ପାଇଁ ମୋ ଅବୁଝାମନ ଅବାଟରୁ ବାଟକୁ ଆଣିବା ପାଇଁ 'ଆମ ଘରର ହାଲଚାଲ'ର କଳ୍ପନା ।' ସଂସାର ଶିକ୍ଷାର ସ୍ଥଳ । ସଂସାରର ବିଭିନ୍ନ କ୍ରିୟାକଳାପରୁ ଜୀବନ ଗଠନ ନିମନ୍ତେ ନୀତି ଗୃହୀତ ହୁଏ । ଆମ ଘରର ହାଲଚାଲ ଲେଖା ଉଦ୍ଦେଶ୍ୟ ଲୋକଚରିତ୍ର ସଂସ୍କାର । ନିଜର, ନିଜ ଘରର, ନିଜ ସମାଜର, ଜାତିର ଦୋଷଗୁଡ଼ିକ ସରଳଭାବରେ ଆଲୋଚନା କରିବା ପାଇଁ ଏହାର ପ୍ରସ୍ତାବନା; କିନ୍ତୁ ଏହି ଲୋକଚରିତ୍ର ସଂସ୍କାର କାର୍ଯ୍ୟରେ ଉପଦେଷ୍ଟା

---

୧୫—ଉତ୍କଳ ସାହିତ୍ୟ, ୨୦/୪ ପୃ-୧୯୩ ।

ହେବାର ସ୍ପର୍ଦ୍ଧା ଲେଖକଙ୍କର ନାହିଁ । ଏହି ପ୍ରସଙ୍ଗରେ ଆଲୋଚିତ ଦୋଷ ଗୁଣଗୁଡ଼ିକ ଲେଖକଙ୍କ ଅନୁଭବସିଦ୍ଧ ଏବଂ ସେଗୁଡ଼ିକ ସାଧାରଣରେ ପ୍ରକାଶ କରିବାଦ୍ୱାରା ସେ ଶିକ୍ଷକର ଉଚ୍ଚସ୍ଥାନ ଅଧିକାର କରିବାକୁ ପ୍ରୟାସୀ ନ ହୋଇ 'ଅନୁତପ୍ତ ଅପରାଧୀ'ର ସ୍ଥାନ ନତମସ୍ତକରେ ଗ୍ରହଣ କରିଛନ୍ତି । ମାନବ-ପ୍ରକୃତି ସହ ସମାଜର ସ୍ଥିତି ପର୍ଯ୍ୟବେକ୍ଷଣ ଓ ବିଶ୍ଳେଷଣରେ ପ୍ରହରାଜଙ୍କ ଦୃଷ୍ଟିଶକ୍ତି ଥିଲା ପ୍ରଖର । ଦେଶର ବିଚାରପ୍ରଥାର ଦୁର୍ବଳତା, ଓକିଲାତି ମୁକ୍ତାର ପେଶାରେ ଆତ୍ମପ୍ରତାରଣା, ଡିକିଶାଲରେ ଢେଙ୍କା-ନାଳର ଚିନ୍ତାପର ଦେଶର ରାଜନୀତିକ ସ୍ଥିତି ପର୍ଯ୍ୟାଲୋଚନା, ଶିକ୍ଷା ସମ୍ପର୍କୀୟ ବିଚାର ଅବଲମ୍ବନରେ 'ଆମଘରର ହାଲଚାଲ' ପ୍ରକାଶିତ । ଦେଶର ଶିକ୍ଷା ପ୍ରସାର, ନାରୀ ଶିକ୍ଷାର ପ୍ରବର୍ତ୍ତନ ନିମନ୍ତେ ବିଶ୍ୱନାଥ କରଙ୍କ ଭଳି ପ୍ରହରାଜ ଅତ୍ୟନ୍ତ ଆଗ୍ରହୀ ଥିଲେ । ଏ ସମ୍ପର୍କରେ ବଳିଷ୍ଠ ପ୍ରସ୍ତାବମାନ ତାଙ୍କ ରଚନାରେ ଉତ୍ଥାପିତ । ବିହାର ଓଡ଼ିଶା ବ୍ୟବସ୍ଥା-ପକ ସଭାରେ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷାର ପ୍ରବର୍ତ୍ତନ ପ୍ରସ୍ତାବ ଉଠିଲା ବେଳେ ଦଶହଜାର ଲୋକଙ୍କ ସ୍ୱାକ୍ଷର-ସମ୍ବଳିତ ଦରଖାସ୍ତସହ ଦରଭଙ୍ଗା ରାଜାଙ୍କର ନେତୃତ୍ୱରେ ଏହାର ବିରୋଧ କରାଯାଇ ଥିଲା ! ଦଶହଜାର ଲୋକ ଥିଲେ ରାଜାଙ୍କର ଖିଆଲ ମତ ପ୍ରକାଶର ନିମିତ୍ତ ମାତ୍ର ।

ଏ ଶ୍ରେଣୀର ଲୋକମାନଙ୍କ ସଂକୀର୍ଣ୍ଣ ଦୃଷ୍ଟି ଓ କ୍ଷୁଦ୍ରମନର ନିନ୍ଦା ବାଦ ଉତ୍କଳ ସାହିତ୍ୟ ପତ୍ରିକାର ସମ୍ପାଦକ କରିଥିଲେ । ଠିକ୍ ପର ସଂଖ୍ୟାରେ ପ୍ରହରାଜଙ୍କ ବିଦ୍ରୂପାତ୍ମକ ମନ୍ତବ୍ୟ ମଧ୍ୟ ଲକ୍ଷଣୀୟ । ଯେଉଁ ଦେଶର ପଦସ୍ଥ ଓ ଶିକ୍ଷିତ ସମାଜର ଏପରି ପ୍ରାର୍ଥନା ପତ୍ରରେ ସ୍ୱାକ୍ଷର କରିବା ଭଳି ସହସ୍ର ସହସ୍ର ଜୀବ ଅଛନ୍ତି, ସେ ଦେଶ ଅନ୍ୟାନ୍ୟ ସଭ୍ୟ ଦେଶ ସଙ୍ଗେ ସମକକ୍ଷ ହେବାକୁ ଅଛି ଆହୁରି ଢେର ଯୁଗରେ ବାପା ।' ସ୍ୱାୟତ୍ତ ଶାସନ, ମଣ୍ଟେଗୁଚେମସ ଫୋର୍ଡ଼ ଶାସନ ସଂସ୍କାର ସମ୍ପର୍କରେ ଆଲୋଚନା କରି ଲେଖକ ନିଜ ରାଜନୀତିକ ଚେତନାର ପରିଚୟ ଦେଇଛନ୍ତି । ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରେ ସାମାଜିକ ଓ ଆର୍ଥନୀତିକ କ୍ଷେତ୍ରରେ ପରିବର୍ତ୍ତନ, ଜନପଦର ବିନାଶ ଓ ନଗରର ବିକାଶ, ପରମୁଖାପେକ୍ଷିତାର ପ୍ରସାର, ଜାତ୍ୟାଭିମାନ ଛଳରେ ସ୍ୱାର୍ଥପରତା, ଦେବପୂଜା ନାମରେ ସାମାଜିକ ଛଳନା ପୃଥିବୀବ୍ୟାପୀ ମହାସମରର

ଦୃଢ଼ଯୋଗ ଓ ଶିକ୍ଷା; ଦେଶୀୟ ବସ୍ତୁମାନଙ୍କ ପ୍ରତି ଅନୁରାଗ ପ୍ରଭୃତି ସାଧାରଣ ଜନସମାଜର ସମସ୍ୟାଜଡ଼ିତ ପ୍ରସଙ୍ଗ ଆଲୋଚନା ମଧ୍ୟରେ ପ୍ରହରାଜଙ୍କ ସମାଜ ଚେତନା ମଧ୍ୟ ଅନୁରୂପ ପ୍ରକାଶିତ ।

**ପ୍ରହରାଜଙ୍କ ଗଦ୍ୟଶୈଳୀ**—ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପିଲାଦିନରେ (ପ୍ରାୟ ୧୮୮୦ ବେଳକୁ) ଓଡ଼ିଆ ଭାଷା ପ୍ରୟୋଗ ସାଳଙ୍କାର, ସାଡ଼ମ୍ବର ଓ ସୁ-ସଂସ୍କୃତ ହେଲେ ସାହିତ୍ୟିକ ଭାଷାର ଆଦର ପାଉଥିଲା । ଏହି ସମୟର ଭାଷାଦର୍ଶ ପ୍ରହରାଜ ଦୃଷ୍ଟାନ୍ତ ରୂପେ ଉଲ୍ଲେଖ କରିଛନ୍ତି । 'ନନା ହେ, ନନା ହେ ଶିକାଙ୍କ ଉପରେ ଘଣ୍ଟି ଅଭ୍ୟନ୍ତରରେ ଘିଚି ଅଛନ୍ତି ।' ପଣ୍ଡିତ ମୃତ୍ୟୁଞ୍ଜୟ ରଥ ସେ କାଳର ଶିକ୍ଷାଦାନ ପଦ୍ଧତି ଆଲୋଚନା ଅବସରରେ ଏକ ଚିତ୍ତାକର୍ଷକ ସୂଚନା ଦେଇଛନ୍ତି । 'କେତେବେଳେ ଏକ କୁକୁର କୌଣସି ସ୍ଥାନରେ ଖଣ୍ଡେ ବ୍ୟାଘ୍ର ଚର୍ମ ଦେଖି ନିକଟବର୍ତ୍ତୀ ହୋଇ ତାକୁ ଦନ୍ତରେ କାମୁଡ଼ିବାକୁ ଲାଗିଲା— ଏହି ଅଙ୍କର ଅର୍ଥ ଗୁରୁମାନେ ପିଠି ଭାଙ୍ଗି ଝୁଲି ଝୁଲି ନିମ୍ନୋକ୍ତ ପ୍ରକାରେ କହୁଥିଲେ — କୌଣସି ସମୟରେ ଏକସଂଖ୍ୟକ ଶ୍ୱାନ କେହି ସ୍ଥଳ-ବିଶେଷରେ ଏକଖଣ୍ଡ ଶାର୍ଦ୍ଦୂଳତ୍ୱକ୍ ଦର୍ଶନ କରି ସମୀପବର୍ତ୍ତୀ ହୋଇ ଚର୍ମ ବିଶେଷକୁ ଦର୍ଶନରେ ଦଂଶନ କରିବାକୁ ଲାଗିଲା (୧୬) । ଉଭୟ ଅଂଶରେ କୃତ୍ରିମତା ଓ ଆୟାସସହ ସଂସ୍କୃତମୁଖିନତାର ଲକ୍ଷଣ ପରିଦୃଷ୍ଟ । ଭକ୍ତକବି ମଧୁସୂଦନ ପ୍ରବନ୍ଧମାଳାରେ ଶବ୍ଦ ବିନ୍ୟାସ, ପଦ ଯୋଜନା, ବାକ୍ୟ ରଚନାରେ ବିଶୁଦ୍ଧ ସାହିତ୍ୟିକ ଭାଷା ପ୍ରୟୋଗ ଯୋଗେ ପାଠକଙ୍କ ହୃଦୟକନ୍ଦରରେ ଝଙ୍କାର ସୃଷ୍ଟି କଲେ । ଭାଷାର କୃତ୍ରିମତା ଓ ପ୍ରୟାସ ଶୀଳତାର ଉଲ୍ଲେଖ ସଂସ୍କାର ସାଧନ କଲେ ଫକୀରମୋହନ । ଫକୀର-ମୋହନଙ୍କ ଭାଷାଦର୍ଶର ପ୍ରଭାବ ନିଜ ଉପରେ ପଡ଼ିଥିବା ପ୍ରହରାଜ ସ୍ୱୀକାର କରିଛନ୍ତି । 'ଗଦ୍ୟରେ ମୁଁ ମୋ କ୍ଷୁଦ୍ରଶକ୍ତି ଅନୁସାରେ ତାଙ୍କର ଖାଣ୍ଟି, ସରଳ, ଘରୋଇ ଓଡ଼ିଆ ଭାଷାକୁ ଅନୁକରଣ କରିଥିଲି ଓ ସେ ଚେଷ୍ଟାରେ ମୁଁ କେତେଦୂର କୃତକାର୍ଯ୍ୟ ହୋଇଅଛି, ତାହାର ମୀମାଂସା ଉତ୍କଳୀୟ ପାଠକ ସାଧାରଣଙ୍କଠାରେ । ଫକୀରମୋହନ କେତେ ଥର ମୋର

୧୬—ଉତ୍କଳ ସାହିତ୍ୟ, ୨୨/୪ ସଂଖ୍ୟା ପୃ-୧୮୩-୮୪ (ସ୍ୱର୍ଗତ ଫକୀରମୋହନ ପ୍ରବନ୍ଧ) ।

ଖାଣ୍ଟି ଓଡ଼ିଆ ଲେଖା ଯୋଗୁ ମୋତେ ଧନ୍ୟବାଦ ଦେବାକୁ ଆସି 'ମୋ ଆଦର୍ଶ କିଏ' ଏ ପ୍ରଶ୍ନର ଉତ୍ତରରେ ମୋ ଲେଖା ଆପଣଙ୍କ ଲିଖନଭଙ୍ଗୀ ଓ ଭାଷାଛଟାର ବିକୃତ ଅନୁକରଣ ମାତ୍ର ଶୁଣି ପ୍ରେମରେ ଗଦଗଦ ହୋଇ ଥିବାର ମୁଁ ନିଜେ ଅନୁଭବ କରିଛି (୧୭) । ଭାଷା କ୍ଷେତ୍ରରେ ନିୟମାନୁଗତତା ପରିବର୍ତ୍ତେ ସ୍ୱାଛନ୍ଦ୍ୟ, ସ୍ୱାଧୀନତା ଓ ସ୍ୱାବଲମ୍ବନତା ପ୍ରହରାଜଙ୍କ ଗଦ୍ୟ ଶିଳ୍ପର ବୈଶିଷ୍ଟ୍ୟ । ଏହି ଅବାଧ ରଚନା କ୍ଷେତ୍ରରେ ଅନେକ ସ୍ଥଳରେ ହୁଏତ ବାକ୍ ସଂଯମ ନାହିଁ, ବ୍ୟଙ୍ଗର ସୂଚନାତ୍ମକ ପରିବର୍ତ୍ତେ ବର୍ଣ୍ଣନବାହୁଲ୍ୟ ପ୍ରକାଶିତ; ତଥାପି କଥିତ ଭାଷାକୁ ସାହିତ୍ୟିକ ଭାଷାର ସମ୍ମାନ, ସାମାନ୍ୟ ବିଷୟକୁ ସାହିତ୍ୟିକ ସୌନ୍ଦର୍ଯ୍ୟ ଓ ମର୍ଯ୍ୟାଦା ଦେବା, ହାସ୍ୟ ଓ ବିଦ୍ରୂପର ଅନ୍ତରାଳରେ ବ୍ୟକ୍ତି ଓ ଜାତିକୁ ଆତ୍ମସ୍ଥ ଓ ଆତ୍ମମର୍ଯ୍ୟାଦା ସମ୍ପନ୍ନ କରିବାରେ ପ୍ରହରାଜଙ୍କ କୃତିତ୍ୱ ଅସାମାନ୍ୟ ।

ଗୋପାଳଚନ୍ଦ୍ର ପ୍ରହରାଜ ସମାଜ ସଚେତନ ବ୍ୟକ୍ତିନିଷ୍ଠ ଶିଳ୍ପୀ । ତାଙ୍କ ଆତ୍ମସଚେତନ ବ୍ୟକ୍ତିତ୍ୱର ସୌରଭରେ ରମ୍ୟରଚନା ରସସିକ୍ତ । ଏକ ପକ୍ଷରେ ରକ୍ଷଣଶୀଳତାର ସମର୍ଥକ ଥିଲେ ସୁଦ୍ଧା ଆଧୁନିକତାର ଗୁଣ ଗ୍ରହଣରେ ସେ ଥିଲେ ଉନ୍ମୁଖ । ହୋମସ୍‌ଙ୍କ ପ୍ରସଙ୍ଗରେ କୁହାଯାଏ, ସେ ଥିଲେ ଜଣେ Brahmin of brahmns ଏବଂ ରକ୍ଷଣଶୀଳ । ତଥାପି Calvinism ପ୍ରତି ତାଙ୍କର ଥିଲା ଘୃଣା । ଗୋପାଳଚନ୍ଦ୍ର ପ୍ରହରାଜ ରକ୍ଷଣଶୀଳ ବ୍ରାହ୍ମଣ ଥିଲେ ସୁଦ୍ଧା ଚିନ୍ତାର ସ୍ୱାଧୀନତା, ବୁଦ୍ଧିବାଦ, ମାନସିକ ସ୍ୱାତନ୍ତ୍ର୍ୟ ସକଳର ଥିଲେ ସମର୍ଥକ । ବ୍ୟକ୍ତି, ଜାତି ଓ ଦେଶର ବିଭିନ୍ନ କ୍ଷେତ୍ରରେ ତ୍ରୁଟିବିଚ୍ୟୁତି ତାଙ୍କ ବ୍ୟଙ୍ଗାତ୍ମକ ଲେଖାମାନଙ୍କରେ ତୀବ୍ର ସମାଲୋଚନାର ଶରବ୍ୟ ହୋଇଥିଲା । ମଣିଷର କ୍ଷୁଦ୍ରତା, ପ୍ରକୃତିର ଛଦ୍ମତା, ଚିନ୍ତାର ସଂକୀର୍ଣ୍ଣତା ସକଳପ୍ରତି ଥିଲା ତାଙ୍କର ଘୃଣା । ବିଭିନ୍ନ ପର୍ଯ୍ୟାୟରେ ଲିଖିତ ରମ୍ୟରଚନାରେ ସ୍ଥଳେ ସ୍ଥଳେ ବିଷୟବସ୍ତୁର ପୁନରାବୃତ୍ତି, ସଂହତିବୋଧର ଅଭାବ ପରିଲକ୍ଷିତ ହେଉଥିଲେହେଁ ବର୍ଣ୍ଣନାର ଚମତ୍କାରିତା, ବିଷୟବସ୍ତୁ ଉପସ୍ଥାପନାରେ ଲେଖକଙ୍କ ମନସ୍ତ୍ୱ ଦୃଷ୍ଟିଭଙ୍ଗୀ, ରସିକତା ଓ କୌତୁକପ୍ରିୟତା, ଭାଷାର ସରଳତା, ଉଗ-

୧୭—ଉତ୍କଳ ସାହିତ୍ୟ ୨୨/୪ ସଂଖ୍ୟା ପୃ-୧୭୨ ।

ଉପମାର ପ୍ରୟୋଗରେ ନିପୁଣତା ହେତୁ ସମଗ୍ର ରଚନା ଏକ ବଳିଷ୍ଠ ସୌନ୍ଦର୍ଯ୍ୟାନୁଭୂତିରେ ରସାଣିତ । ଗମ୍ଭୀର ଭାଷ୍ୟବସ୍ତୁ ପ୍ରବନ୍ଧକଙ୍କ ଅନୁଭୂତିସିଦ୍ଧ ଆତ୍ମଗତ ଭାବରସ ସ୍ନିଗ୍ଧ ହୋଇ କଳ୍ପନାବନ୍ତ ଶିଳ୍ପସମ୍ମତ ସୃଷ୍ଟିକର୍ମରେ ପରିଣତ ହୋଇଅଛି । ପ୍ରବନ୍ଧକଙ୍କ ଏ ଧରଣର ସୃଷ୍ଟି ଓଡ଼ିଆ ସାହିତ୍ୟରେ ଏକକ । ପରବର୍ତ୍ତୀ କାଳରେ 'ଝଙ୍କାର' ପତ୍ରିକାରେ ପ୍ରକାଶିତ କୃଷ୍ଣପ୍ରସାଦ ବସୁଙ୍କ 'ଆଖଡ଼ା ଘରେ ବୈଠକ' ରଚନା ପର୍ଯ୍ୟାୟ ଉପରେ ଏହାର ପ୍ରଭାବ ନିରୂପିତ ହୋଇପାରେ ।





# ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ

ଡ଼ାକ୍ତର **ରାଧାଚରଣ ପଣ୍ଡା**
ବାଲୁଗାଁ

ପୁରୀରେ ଶ୍ରୀ ଜଗନ୍ନାଥଙ୍କୁ ପ୍ରତିଷ୍ଠା କରି ମାଳବ ରାଜା ଇନ୍ଦ୍ରଦ୍ୟୁମ୍ନ ଓ ଅର୍କ କ୍ଷେତ୍ରରେ ସୂର୍ଯ୍ୟମନ୍ଦିର ନିର୍ମାଣ କରାଇ ଲାଙ୍ଗୁଳା ନରସିଂହ ଦେବ ଯେପରି ଅକ୍ଷୟ କୀର୍ତ୍ତି ରଖିଯାଇଛନ୍ତି, ଠିକ୍ ସେହିପରି ଗୋପାଳଚନ୍ଦ୍ର ପ୍ରହରାଜ 'ପୂର୍ଣ୍ଣଚନ୍ଦ୍ର-ଓଡ଼ିଆ ଭାଷାକୋଷ' ଲେଖି ନିଜର କର୍ତ୍ତବ୍ୟ କରିବା ସଙ୍ଗେ ସଙ୍ଗେ, ସମଗ୍ର ଓଡ଼ିଶା, ଭାରତ ତଥା ପୃଥିବୀର ଅତି ପ୍ରସିଦ୍ଧ ସ୍ଥାନ ନରୱେ, ଫ୍ରାନ୍ସ, ଜର୍ମାନୀ, ପ୍ରଭୃତି ପାଶ୍ଚାତ୍ୟ ଦେଶରେ ଓଡ଼ିଶାର ଟେକ ରଖି ପାରିଛନ୍ତି । ଏହା କମ୍ ଗୌରବର ବିଷୟ ନୁହେଁ । ଓଡ଼ିଆ ଜାତି ବଞ୍ଚିଥିବା ପର୍ଯ୍ୟନ୍ତ ପ୍ରହରାଜଙ୍କର ଏ କୀର୍ତ୍ତି ନିଶ୍ଚୟପେ ବଞ୍ଚି ରହିବ ସନ୍ଦେହ ନାହିଁ ।

**ପ୍ରହରାଜଙ୍କ ଭାଷା**— ସେ ନିଜେ ଲେଖିଥିଲେ—"ଅନେକ ଦିନରୁ ମୁଁ ଏହି ଅଭାବ ଅନୁଭବ କରୁଥିଲି—ଓଡ଼ିଶାରେ ପୂର୍ଣ୍ଣାଙ୍ଗ ଅଭିଧାନ ନଥିବାରୁ ଅନେକ ସମୟରେ ଏକ ପ୍ରଦେଶବାସୀ ଓଡ଼ିଆ ଅନ୍ୟ ପ୍ରଦେଶବାସୀ ଓଡ଼ିଆଙ୍କ ମଧ୍ୟରେ ପ୍ରଚଳିତ ଶବ୍ଦମାନ ବୁଝି ପାରନ୍ତି ନାହିଁ ଏବଂ ପ୍ରାଚୀନ ଓଡ଼ିଆ ଗ୍ରନ୍ଥମାନଙ୍କରେ ଯେଉଁସବୁ ଶବ୍ଦ ପ୍ରଦତ୍ତ ହୋଇଅଛି ଏବଂ ବର୍ତ୍ତମାନ ସମୟରେ ଯେଉଁ ଶବ୍ଦମାନଙ୍କର ପ୍ରଚଳନ ନାହିଁ ସେ ଗୁଡ଼ିକର ପ୍ରକୃତ ଅର୍ଥ ଓଡ଼ିଆ ଭାଷାର ପଣ୍ଡିତମାନେ ସୁଦ୍ଧା

ବୁଝି ପାରିବା ଭଳି କୌଣସି ସୁଗମ ଅଭିଧାନ ଗ୍ରନ୍ଥ ନାହିଁ— ଏହି କାରଣରୁ ଏପରି ଏକ 'ଭାଷାକୋଷ' ଲେଖିବା ଦରକାର ଥିଲା ।

"× × ଆମ୍ଭେମାନେ ଘରେ ପ୍ରତ୍ୟହ ଯେଉଁ ସବୁ ଶବ୍ଦ ବ୍ୟବହାର କରୁ ସେ ସବୁ ଶବ୍ଦ ନିଜ ଗ୍ରନ୍ଥରେ ରଖିବା ଉଚିତ୍ । × × ମୁଁ ଚିରଦିନ ସରଳ, ଖାଣ୍ଟି ଓଡ଼ିଆ ଶବ୍ଦ ବ୍ୟବହାରର ପକ୍ଷପାତୀ, ମୋ ଭାଷାରେ ଅବୋଧ ସଂସ୍କୃତ ଶବ୍ଦ ମୁଁ ଯଥାଶକ୍ତି ବର୍ଜନ କରିଥାଏ । ଅବଶ୍ୟ ଭାବ ପ୍ରକାଶରେ ଖାଣ୍ଟି ଓଡ଼ିଆ ଶବ୍ଦର ଅଭାବ ଦେଖିଲେ ମୁଁ ଯଥା ସମ୍ଭବ ସରଳ ସଂସ୍କୃତ ଶବ୍ଦ ବ୍ୟବହାର କରେ, ମାତ୍ର ଇଚ୍ଛାକରି ଶବ୍ଦାଡ଼ମ୍ବରମୟ କରିବାକୁ ବା ରଚନାର ଗାମ୍ଭୀର୍ଯ୍ୟ ବାଗ୍‌ବହୁଳ କରିବାକୁ ସଂସ୍କୃତ ଶବ୍ଦ ପ୍ରୟୋଗ କରେ ନାହିଁ × × ।" ପୂର୍ବ ଅଧ୍ୟାୟ—"ଗ୍ରନ୍ଥାବଳୀ"ରେ ସ୍ପଷ୍ଟ ଲେଖାଯାଇଛି ଯେ ଗୋପାଳଚନ୍ଦ୍ର ଆରମ୍ଭରୁ ନିଜର ସବୁ ଲେଖା ଅତି ସରଳ, ଗ୍ରାମ୍ୟ ଭାଷାରେ ଲେଖୁଥିଲେ । ଆଗରୁ ତାଙ୍କର ଅନ୍ୟାନ୍ୟ ଗ୍ରନ୍ଥରେ ସେ ଏସବୁ ଲେଖା ଲେଖିଛନ୍ତି—ପୁଣି, 'ଢଗଢ଼ମାଳି' ଭଳି ଓଡ଼ିଆ ମୌଳିକ ପଦ ଗୁଡ଼ିକ ଯେତେବେଳେ ସଂଗ୍ରହ କରିଥିଲେ ସେ କାଳରୁ ସେ ଭାଷାକୋଷ ଭଳି ଏକ ବିରାଟ ଗ୍ରନ୍ଥର ମୂଳଦୁଆ ପକାଇଥିଲେ । ଏହି କାରଣରୁ ଭାଷାକୋଷ ଲେଖିବା ପାଇଁ ସେ ମନ ବଳାଇ ଥିଲେ । ଏହି କାର୍ଯ୍ୟରେ ସେ କାଳର କଟକ ଟ୍ରେନିଂ କଲେଜ ପ୍ରିନ୍‌ସପାଲ ହେଣ୍ଡରସନ୍‌ଙ୍କଠାରୁ ଉତ୍ସାହ ପାଇଥିଲେ ।

**'ଭାଷାକୋଷ' ଲେଖିବା କ୍ରମ**—୧୯୧୩—୧୪ ଗୋପାଳଚନ୍ଦ୍ର ପ୍ରିନ୍‌ସପାଲ ହେଣ୍ଡରସନ୍‌ଙ୍କଠାରୁ 'ଭାଷାକୋଷ' ଲେଖିବା ପାଇଁ ଉତ୍ସାହ ପାଇଥିଲେ । ସଙ୍ଗେ ସଙ୍ଗେ ସେ ଓଡ଼ିଶାର ବିଭିନ୍ନ ଜିଲ୍ଲା ଗସ୍ତକରି ବିଶେଷତଃ ଗଞ୍ଜାମ, ସମ୍ବଲପୁର, ସିଂହଭୂମ ଓ ଗଡ଼ଜାତ ରାଜ୍ୟ ଅଞ୍ଚଳରୁ ସ୍ଥାନୀୟ ପଦ ଗୁଡ଼ିକ ସଂଗ୍ରହ କରିଥିଲେ ।

୧୯୧୩ ଠାରୁ ୧୯୧୮ ପର୍ଯ୍ୟନ୍ତ ଏ ସବୁ ପଦସଂଗ୍ରହ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷାରେ ଲେଖାଯାଇଥିବା ସବୁ ପୁରାଣ, ନାଟକ,

କାବ୍ୟ, ଶ୍ରେଷ୍ଠ ବଡ଼ ବଡ଼ ସବୁ ପଢ଼ି ତହିଁରୁ ଆବଶ୍ୟକୀୟ ପଦସଂଗ୍ରହ କରିଥିଲେ ।

୧୯୧୬—୧୭—'ଅକ୍ଷର କ୍ରମ' ସଜା ହେଲା ।

୧୯୧୯— ବର୍ଣ୍ଣନା କ୍ରମରେ ଲେଖାହେଲା ।

୧୯୨୦—୨୭— ସାତବର୍ଷ ମଧ୍ୟରେ ସଂଗ୍ରହ କରିଥିବା ସବୁ ପଦଗୁଡ଼ିକର 'ପାଣ୍ଡୁଲିପି' ଲେଖା ଶେଷ ହେଲା ।

ସେହି ୧୯୨୭ ଖ୍ରୀଷ୍ଟାବ୍ଦର ଗଣ୍ଡାପୂର୍ଣ୍ଣିମା ଦିନ ପାଣ୍ଡୁଲିପି ଶେଷକରି ସେ ନିଜର ପ୍ରବନ୍ଧ—

**"ପନ୍ଦର ବର୍ଷର ତପସ୍ୟା ଅରଣ୍ୟ ରୋଦନରେ ଯିବ କି ?"** ବ୍ରହ୍ମପୁରରୁ ପ୍ରକାଶିତ 'ଦୈନିକ ଆଶା'ରେ ପ୍ରକାଶ କରିଥିଲେ । ଏହି ପ୍ରବନ୍ଧ ପଢ଼ି ମୁଁ ତାହାଙ୍କ ସହିତ ଚିଠି ଆଦାନ ପ୍ରଦାନ କରିଥିଲି । ସେ କଥା ପ୍ରଥମ ଅଧ୍ୟାୟରେ ବର୍ଣ୍ଣନା କରିଅଛି ।

୧୯୨୮, ୨୯, ୩୦ରେ ପାଣ୍ଡୁଲିପିର ସଫେଇ ଲେଖା ହୋଇ ପ୍ରଥମ ଖଣ୍ଡର ସଫେଇ ଲେଖା ଠିକ୍ କଲେ ।

୧୯୩୦ରେ ଏକ ନମୂନା ଗ୍ରନ୍ଥ ଲେଖା ହେଲା ପୁସ୍ତକ ଆକାରରେ ଛପାହେଲା । ଏଥିରେ ୧୮ ପୃଷ୍ଠାର ଗ୍ରନ୍ଥ ପରିଚୟ ଓ ଅର୍ଡ଼ର ଫରମ ପ୍ରସ୍ତୁତ ଥିଲା । ଏ ଛପା ପୁସ୍ତିକାଟିକୁ ଓଡ଼ିଶାର ତତ୍କାଳୀନ କମିସନର୍ ପେକ୍ ସାହେବ— ୟୁରୋପ, ଆମେରିକାର ପ୍ରସିଦ୍ଧ ସାହିତ୍ୟିକ ଅନୁଷ୍ଠାନ ଗୁଡ଼ିକୁ ନେଇଥିଲେ ।

**ଦୁଇଜଣ ବିଶିଷ୍ଟ ବ୍ୟକ୍ତିଙ୍କ କଲ୍ୟାଣ— (୧)** ଭାଷାକୋଷ ପାଣ୍ଡୁଲିପି ସଂଗ୍ରହ ଓ ପ୍ରେସ ପାଇଁ ସଫେଇ ଲେଖା ଆରମ୍ଭରେ ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ଓ ରାଜନୀତିଜ୍ଞ ଉତ୍କଳମଣି ଗୋପବନ୍ଧୁ ଦାଶ ଭାଷାକୋଷ ଆଶ୍ରମକୁ ଆସି ତାହାଙ୍କର ଆଶୀଷ ଢାଳି ଦେଇଥିଲେ ।

"ଯେଉଁଦିନ (ଗଣ୍ଡାପୂର୍ଣ୍ଣିମୀ) ମୋର ପାଣ୍ଡୁଲିପିର ଏକଓଡ଼ିଆ ଲେଖା ଶେଷ ହେଲା । ସେଦିନ ସ୍ୱର୍ଗତ ଗୋପବନ୍ଧୁ ଦାଶ ମୋ ଗୃହକୁ ଆସି ମୋତେ ସାଦର ସମ୍ଭାଷଣ କଲେ ଓ ତାଙ୍କ 'ସମାଜ'ରେ ଏ ଗ୍ରନ୍ଥର

ମୂଲ୍ୟବତ୍ତା ଓ ଉପାଦେୟତା ପ୍ରଶଂସା କରି ମୋତେ ବିଶେଷ ଉତ୍ସାହିତ କଲେ ।" ('ସମାଜ' ୨୭।୮।୧୯୨୭)

(୨) "ମହାତ୍ମା ଗାନ୍ଧି ୧୯୨୭ ସାଲରେ କଟକ ଆସିଥିବା ସମୟରେ ତାଙ୍କୁ ଏବଂ ତାଙ୍କ ସହଚର କାକା କାଲେଲକାରଙ୍କୁ ପାଣ୍ଡୁଲିପିର କେତେକ ଅଂଶ ପଢ଼ି ଶୁଣାଇ ଦିଆଯିବାରେ ସେମାନେ କେତେ ଗୁଡ଼ିଏ ସୂଚନା ଦେଇ ମୋତେ ଉତ୍ସାହିତ କରିଥିଲେ ।"

['ଭାଷାକୋଷ' ୧ମ ଖଣ୍ଡ ଏଜନ୍]

କେବଳ ଯେ ଗୋପବନ୍ଧୁ ଓ ଗାନ୍ଧିଜୀ ଆସି ଭାଷାକୋଷ ଦେଖି ଗୋପାଳ ପ୍ରହରାଜଙ୍କୁ ଉତ୍ସାହିତ କରିଥିଲେ ସେତିକି ନୁହେଁ ଭାଷାକୋଷ ପାଇଁ ପଦ ସଂଗ୍ରହ କରିବାଠାରୁ ୭ଖଣ୍ଡଯାକ ଗ୍ରନ୍ଥ ଛପା ଶେଷ ପର୍ଯ୍ୟନ୍ତ ସମଗ୍ର ଓଡ଼ିଶା ଓ ଗଡ଼ଜାତ ଅଞ୍ଚଳର ବହୁସଂଖ୍ୟକ ରାଜା, ମହାରାଜା, ସନ୍ଥ, ମହନ୍ତ, ଧନପତି ଓ ଅଧିକାଂଶ ଉଚ୍ଚ କାର୍ଯ୍ୟରେ ଥିବା ସାହେବ, କଲେକ୍ଟର୍, କମିସନର୍, ବିହାର ଓଡ଼ିଶା ଗଭର୍ଣ୍ଣର୍ ପ୍ରଭୃତି ମଧ୍ୟ ଆସି ଦେଖି ଉଚ୍ଚ ପ୍ରଶଂସା କରି ଯାଇଥିଲେ । ଏମାନଙ୍କର ପରିଚୟ ଭାଷା-କୋଷର 'ଅବତରଣିକା'ରେ ଉଲ୍ଲେଖ କରାଯାଇଛି । ଯେଉଁ ଦାନବୀର ରାଜା ମହାରାଜାମାନେ ଅକୁଣ୍ଠିତ ଚିତ୍ତରେ ଏବଂ ଅକାତରରେ ହଜାର ହଜାର ଟଙ୍କା ଏସବୁ ଗ୍ରନ୍ଥ ମୁଦ୍ରଣ ପାଇଁ ଦାନ କରିଥିଲେ ସେମାନଙ୍କର ନାମ, ଦାନର ପରିମାଣ ଓ ପ୍ରଶଂସା ମଧ୍ୟ ଏସବୁ ଗ୍ରନ୍ଥରେ ମିଳେ ।

**ନାମକରଣ**—ପାଣ୍ଡୁଲିପିର ପ୍ରଥମାବସ୍ଥାରେ କେବଳ ଦୁଇଖଣ୍ଡ ମାତ୍ର ହେବ ବୋଲି ଯେଉଁ ଅନୁମାନ କରାଯାଇଥିଲା ସେହି ଅନୁମାନ ଅନୁସାରେ ପୁସ୍ତକ ଛାପିବା ପାଇଁ ମୟୂରଭଞ୍ଜର ତତ୍କାଳୀନ ରାଜା ପ୍ରତାପଚନ୍ଦ୍ର ଭଞ୍ଜଦେବ ପ୍ରଥମ କିସ୍ତିରେ ଆଠ ହଜାର ଟଙ୍କା ଦେଇ ନିଜର ସ୍ୱର୍ଗତ ଭ୍ରାତା 'ପୂର୍ଣ୍ଣଚନ୍ଦ୍ର'ଙ୍କ ନାମାନୁସାରେ ଏ ଗ୍ରନ୍ଥର ନାମ ରଖିବାପାଇଁ ଅନୁରୋଧ କରିଥିବାରୁ ଏ ଗ୍ରନ୍ଥର ନାମ **'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ'** ରଖାଗଲା—ପରେ ଦୁଇଖଣ୍ଡ ବଦଳରେ ୭ଖଣ୍ଡ ହେବାର ଜଣାପଡ଼ିବାରୁ ଅଧିକା ଖରଚ ମେଣ୍ଟାଇବା ପାଇଁ ଆଉ ପାଞ୍ଚ ହଜାର ଟଙ୍କା ଦାନ ସେହି ମୟୂରଭଞ୍ଜଙ୍କଠାରୁ ମିଳିଥିଲା ।

**ପୁସ୍ତକ ପ୍ରକାଶର କ୍ରମ**—୧୯୩୧ ରେ 'ଭାଷାକୋଷ'ର ୧ମ ଖଣ୍ଡ ଛପା ହେଲା । ଏହାପରେ ଏହାର କ୍ରମ ନିମ୍ନରେ ଦିଆଗଲା :—

| ଖଣ୍ଡ ନଂ | ଭାରଖ ଖ୍ରୀଷ୍ଟାବ୍ଦ | ବିଷୟ | ପୃଷ୍ଠା | ଉତ୍ସର୍ଗ | ପୃଷ୍ଠପୋଷକ | ଭୂମିକା ପୃଷ୍ଠା |
|---|---|---|---|---|---|---|
| ୧ | ୧୯୩୧ ସେପ୍ଟେମ୍ବର | ସ୍ୱରବର୍ଣ୍ଣ | ୧୧୯୩ | ସର ଯୋନ ହବାକ | ସର ଷ୍ଟିଫେନସନ୍ ବି.ଓ. ଗଭର୍ଣ୍ଣର | ୨୩ |
| ୨ | ୧୯୩୨ ଅଗଷ୍ଟ | ୬ ବ୍ୟଞ୍ଜନବର୍ଣ୍ଣ କ ନ | ୧୨୬୮ | ପେକ୍ ସାହେବ | ସର ସିଫ୍ଟନ ବି.ଓ. ଗଭର୍ଣ୍ଣର | ୧୯ |
| ୩ | ୧୯୩୩ ମେ | ୧୨ ବ୍ୟଞ୍ଜନବର୍ଣ୍ଣ ଛ-ଥ | ୧୧୬୨ | ବୌଦରାଜା | ବୌଦରାଜା | ୨୩ |
| ୪ | ୧୯୩୪ ଜୁନ୍ | ୪ ବ୍ୟଞ୍ଜନବର୍ଣ୍ଣ ଦ-ପ | ୧୫୬୨ | ବିକ୍ରମଦେବ ଜୟପୁର | ଗିବସନ୍ ଗଡ଼ଜାତ ଏଜେଣ୍ଟ | ୩୧ |
| ୫ | ୧୯୩୬ ମାର୍ଚ୍ଚ | ୪ ବ୍ୟଞ୍ଜନ ବର୍ଣ୍ଣ ଫ-ମ | ୧୪୪୬ | ପାରଲା ମହାରାଜା | ବିକ୍ରମଦେବ | ୨୩ |
| ୬ | ୧୯୩୭ ଜୁନ | ୬ ବ୍ୟଞ୍ଜନବର୍ଣ୍ଣ ଯ-ଶ | ୧୨୬୨ | ପାଟଣା ମହାରାଜା | ପାଟଣା ମହାରାଜା | ୫୧ |
| ୭ | ୧୯୪୦ ସେପ୍ଟେମ୍ବର | ୨ ବ୍ୟଞ୍ଜନବର୍ଣ୍ଣ ଷ-ହ | ୧୩୪୫ | ଲର୍ଡ ଲିନଲିଥଗୋ (ବଡ଼ଲାଟ) | ବଡ଼ଲାଟ ସ୍ତ୍ରୀ | ୮୦ |
| ମୋଟ ୭ଖଣ୍ଡ | ୧୯୩୧ ୧୯୪୦ | ୧୩ ସ୍ୱରବର୍ଣ୍ଣ ୩୪ ବ୍ୟଞ୍ଜନବର୍ଣ୍ଣ | ୯୨୪୮ | | | ୨୫୦ |

**ଅଭିଧାନର ବିଶେଷତ୍ୱ**—ଅନ୍ୟ ସାଧାରଣ ଗ୍ରନ୍ଥ ଓ ଅଭିଧାନ ଅପେକ୍ଷା ଏଥିରେ ଗ୍ରନ୍ଥକାର କେବଳ ଅତି ସରଳ ଓ ଖାଣ୍ଟି ଓଡ଼ିଆ ଶବ୍ଦ ବ୍ୟବହାର କରିବା ଦେଖାଯାଏ । ଅଭିଧାନ ପାଇଁ ସଂଗୃହୀତ ପ୍ରତ୍ୟେକ ଶବ୍ଦର ବ୍ୟୁତ୍ପତ୍ତି, ଉତ୍ପତ୍ତି ଓ ଅନ୍ୟ ଭାଷା ସହିତ ସମ୍ବନ୍ଧ ପ୍ରଭୃତି ମଧ୍ୟ ସଂଗ୍ରହ କରିଛନ୍ତି । ପରେ ପରେ ଓଡ଼ିଆ ଭାଷାକୁ ଇଂରାଜୀ ଶିକ୍ଷିତ ମାନେ ଯେପରି ସ୍ପଷ୍ଟ ବୁଝି ପାରିବେ ସେହି ଲକ୍ଷ୍ୟରେ ପ୍ରତ୍ୟେକ 'ଓଡ଼ିଆ' ପଦ ତଳେ ଇଂରାଜୀ ଉଚ୍ଚାରଣ ଓ ଅର୍ଥ ଦିଆଯାଇଛି । ଏହାବାଦ, ବଙ୍ଗଳା ଓ ହିନ୍ଦୀ ପାଠକମାନେ ଯେପରି ଓଡ଼ିଆ ଭାଷାକୁ ଶିକ୍ଷା କରି ପାରନ୍ତି, ସେହି ଉଦ୍ଦେଶ୍ୟରେ କେତେକ ଓଡ଼ିଆ ପଦର ପ୍ରତିପଦ ବଙ୍ଗଳା ଓ ହିନ୍ଦୀରେ ମଧ୍ୟ ଲେଖାଯାଇଛି । ଦକ୍ଷିଣ ଓଡ଼ିଶା ବିଚ୍ଛିନ୍ନ ଅଞ୍ଚଳର ଲୋକମାନେ ଅନେକ ଗୁଡ଼ିଏ ତେଲୁଗୁ ଶବ୍ଦ ବ୍ୟବହାର କରନ୍ତି । ଏଣୁ ତେଲୁଗୁ ପ୍ରତିଶବ୍ଦ ଦିଆଇଥିଲେ ଅଧିକ ସୁବିଧା ହୁଅନ୍ତା—କିନ୍ତୁ ଭାଷାକୋଷକାର ତେଲୁଗୁ ଭାଷା ଜାଣି ନ ଥିବାରୁ ସେ ଭାଷାର ସଦ୍‌ବ୍ୟବହାର କରି ପାରି ନାହାନ୍ତି ।

ଅଭିଧାନଟିକୁ ସର୍ବାଙ୍ଗସୁନ୍ଦର କରିବା ପାଇଁ ପ୍ରୟୋଜନାନୁସାରେ ଐତିହାସିକ, ପୌରାଣିକ, ଭୌଗୋଳିକ, ବୈଜ୍ଞାନିକ, ବୈଦ୍ୟକ, ଜ୍ୟୋତିଷିକ ଜନମାନଙ୍କ ସମ୍ବନ୍ଧରେ ଅବଶ୍ୟ ଜ୍ଞାତବ୍ୟ କେତେକ କଥା ଯଥାସ୍ଥାନରେ ଯୋଗ କରିଛନ୍ତି । ପଲ୍ଲୀର ଗଉଡ଼, ଭଣ୍ଡାରି, କମାର, ବଢ଼େଇ, ଚଷା, କେଉଟ, ତନ୍ତୀ ପ୍ରଭୃତି ବିଶିଷ୍ଟ ଜାତି ମଧ୍ୟରେ ବ୍ୟବହୃତ ଶତ ଶତ ଶବ୍ଦ ଓ ପରିଭାଷା ଏବଂ ଗ୍ରାମ୍ୟ ସ୍ତ୍ରୀମାନଙ୍କ ମଧ୍ୟରେ ପ୍ରଚଳିତ ଢଗଢ଼ମାଳି, ଶିଶୁଗୀତ, ଓ ପ୍ରବଚନ ଓ କାହାଣୀ ପ୍ରଭୃତିର ପ୍ରାୟ ପାଞ୍ଚ ହଜାର ଶବ୍ଦ ଯୋଗ କରାଯାଇଛି । ଏପରି ପ୍ରାକୃତିକ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳରୁ ଶବ୍ଦ ସଂଗ୍ରହ କରି ସେଗୁଡ଼ିକୁ ଯଥାସ୍ଥାନରେ ସଜାଇ ରଖିବା ପାଇଁ ତାହାଙ୍କୁ ଦୀର୍ଘ ୧୭ ବର୍ଷ (୧୯୧୩ଠାରୁ ୧୯୩୦) ଲାଗିଥିଲା ।

**ଗ୍ରନ୍ଥର ପ୍ରଶଂସା**—'ଭାଷାକୋଷ'ର ଏକ ୧୮ ପୃଷ୍ଠା ବିଶିଷ୍ଟ 'ନମୂନା ଗ୍ରନ୍ଥ' ଦେଶ ବିଦେଶକୁ ପଠାଯାଇଥିଲା । ଏହାର ପ୍ରାପ୍ତି-ସ୍ୱୀକାର କରି ଜର୍ମାନୀ ଦେଶର ଜଣେ ପଣ୍ଡିତ ନିମ୍ନ ପ୍ରଶଂସାପତ୍ର ପଠାଇଥିଲେ— 'ଲିପ୍‌ଜିଗ ନଗରୀରେ ପ୍ରକାଶିତ ଜର୍ମାନୀର ବୃହତ୍ତମ ବିଶ୍ୱକୋଷରେ ସ୍ଥାନ

ପାଇବା ପାଇଁ ଆମ୍ଭମାନେ ବର୍ତ୍ତମାନ 'ଓଡ଼ିଆ ଭାଷା ଓ ସାହିତ୍ୟ' ନାମକ ଗୋଟିଏ ପ୍ରବନ୍ଧ ଲେଖୁଅଛୁ । ଉକ୍ତ ପ୍ରବନ୍ଧ ନିମନ୍ତେ ଆପଣଙ୍କ ପ୍ରେରିତ ପୁସ୍ତକମାନଙ୍କରୁ ଆମ୍ଭେ ଆନନ୍ଦ ସହକାରେ ଗୁଡ଼ିଏ ତଥ୍ୟ ସଂଗ୍ରହ କରିଅଛୁଁ ଓ ଉକ୍ତ ପ୍ରବନ୍ଧର ଗ୍ରନ୍ଥସୂଚୀରେ ଆମ୍ଭେ ଉକ୍ତ ସଂଗ୍ରହ ପୁସ୍ତକ ଓ ଆପଣଙ୍କ 'ଭାଷାକୋଷ' ବିଷୟ ଉଲ୍ଲେଖ କରୁଅଛୁଁ ।'

['ଭାଷାକୋଷ' ୨ୟ ଖଣ୍ଡ 'ଅବତରଣିକା']

୨ । ବିଶ୍ୱକବି ରବୀନ୍ଦ୍ରନାଥ ୨୦।୭।୧୯୩୮ ତାରିଖରେ ଲେଖିଥିଲେ—'କ୍ରମ୍ୱବର୍ଦ୍ଧିତ ଗବେଷଣା ବିଭାଗର କର୍ମରେ ବିଶ୍ୱକୋଷାସକ ଅଭିଧାନ—'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ଅତିବ ଉପକାରୀ ଅଭିଜ୍ଞାନ ଗ୍ରନ୍ଥ ବୋଲି ଅନୁଭୂତ ହୋଇଅଛି । ଏଥିର ସଂଗ୍ରାହକ ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ଓ ତାଙ୍କ ସହକର୍ମୀଗଣ ସେମାନଙ୍କର ଏହି ଉତ୍କୃଷ୍ଟ କର୍ମ ପାଇଁ ଆମ୍ଭମାନଙ୍କର ଆନ୍ତରିକ ଧନ୍ୟବାଦର ପାତ୍ର ଅଟନ୍ତି ।'

(ରବୀନ୍ଦ୍ରନାଥ ଠାକୁର)

**ଗ୍ରନ୍ଥର କଳେବର ବୃଦ୍ଧି**—ଭାଷାକୋଷର କଳେବର ବୃଦ୍ଧି ହେବା ଆଶଙ୍କା କରି କେତେକ ବନ୍ଧୁ ଏହାର ଆକାର କମାଇ ଦେବା ପାଇଁ ବାରଂବାର ଅନୁରୋଧ କରିଥିଲେ । ଏହି ଅନୁରୋଧ କ୍ରମେ ସେ ଲେଖିଛନ୍ତି—"ମୁଁ ସଂଗ୍ରହ କରିଥିବା ଓ ପାଣ୍ଡୁଲିପିରେ ସ୍ଥାନ ଦେଇଥିବା କୌଣସି ଶବ୍ଦ ଉଠାଇ ଦେବାକୁ ମୋ ହାତ ଯାଉନାହିଁ । ବହୁ ସନ୍ତାନଙ୍କୁ ପୋଷିବା ପାଇଁ ଦୁଃଖ ଭୋଗ କରୁଥିବା କୌଣସି ମାତାଙ୍କୁ ଯେବେ ସନ୍ତାନ ପାଳନ ବ୍ୟୟ ଓ ଦୁଃଖ ଲାଘବାର୍ଥେ ସନ୍ତାନମାନଙ୍କ ମଧ୍ୟରୁ କେତେକଙ୍କୁ ତଡ଼ି ଦେବାକୁ ବା ଜୀବନରେ ମାରିଦେବାକୁ ଉପଦେଶ ଦିଆଯାଏ, ତାହା ହେଲେ ମାତା ସେ ଉପଦେଶ ପାଳନ କରି ପାରିବେଟି ? ନିଜ ଦେହରୁ ବିନ୍ଦୁ ବିନ୍ଦୁ ରକ୍ତ ବ୍ୟୟ କରି ଯାହାକୁ ଜନ୍ମ ଦେଇଛନ୍ତି, କେତେ ଦୁଃଖ ପାଇ, କେତେ ଉପନ୍ନାସ ସହି, କେତେ ଆନ୍ଦୋଳ ସଂଭାଳି ଯାହାକୁ ପାଳି ଆସିଅଛନ୍ତି, ତାଙ୍କ ମଧ୍ୟରୁ କେଉଁ ଜଣଙ୍କର ତଣ୍ଟି ଚିପି ଦେବାକୁ ମାତାଙ୍କର ହାତ ଯିବ ? ମାଆଙ୍କ ଚକ୍ଷୁରେ ତ ସବୁ ସନ୍ତାନ ସମାନ ଓ ଗଣ୍ଠି ଧନ; ଏପରି କ୍ଷେତ୍ରରେ ମାତାଙ୍କ ପକ୍ଷରେ ଯାହା ଉତ୍ତର

ଦେବା ସ୍ୱାଭାବିକ ମୁଁ ମୋ ବନ୍ଧୁ ମାନଙ୍କୁ ନିମ୍ନ ଲିଖିତ ରୂପେ ସେହିତା ଉତ୍ତର ଦେଉଅଛି :—

"କେତେ ଦୁଃଖ ପାଇ ଜୀବନର ଅନ୍ୟ ସମସ୍ତ ଆଶା, ସୁଖ, କଳ୍ପନା ଓ ଉପାର୍ଜନରେ ଜଳାଞ୍ଜଳି ଦେଇ, ୧୫ ବର୍ଷ କାଳ ଅତିପାତ କରି ଯେଉଁ ମାନଙ୍କୁ ପାଇଅଛି ଓ ଗଣ୍ଡି ଧନ କରି ସାଇତି ଅଛି, ମୁଁ ମରେଁ, ସରେଁ, ପଥର ଉକାର ହୁଏ, ଉପାସରହେ, ଦୁଃଖ ପାଏଁ; 'ସୂତାକାଟେ', "ଧାନକୁଟେ" ପଛକେ; ତାଙ୍କ ମଧ୍ୟରୁ କାହାରି ଟିକିଏ ଛପି ଦେବାକୁ ମୋ ହାତ ଯିବ ନାହିଁ। ତାଙ୍କ ଜୀବନରେ ମୋ ଜୀବନ, ତାଙ୍କ ମରଣରେ ମୋ ମରଣ।"

ଏହା ଲେଖିବା ସଙ୍ଗେ ସଙ୍ଗେ ସେ ଜିଜ୍ଞାସିଛନ୍ତି ଯେ ସେ କନ୍ଧ ଅଭାବ, ଅସୁବିଧାରୁ ଓଡ଼ିଶାର ସମଗ୍ର ପୁଟିପିଲ୍ଲୀ ଓ ଓଡ଼ିଶା ବାହାରର ପ୍ରଦେଶ ସବୁ ବୁଲି ସେ ଅଞ୍ଚଳରେ ଥିବା ଓଡ଼ିଆ ପଦ ଓ ତହିଁର ପ୍ରତିଶବ୍ଦ ପ୍ରଭୃତି ହଜାର ହଜାର ସଂଖ୍ୟକ ପଦ ସଂଗ୍ରହ ନକରିଥିବାରୁ ଦୁଃଖିତ ଓ ଆଶା କରିଥିଲେ ଯେ ଓଡ଼ିଶାର ଅନ୍ୟ ବୁଦ୍ଧିଆ ବ୍ୟକ୍ତି ତାଙ୍କ ଲେଖାର ସବୁ ଅଭାବ ଗୁଡ଼ିକ ପୂର୍ଣ୍ଣ କରି ପାରନ୍ତି।

**'ଭାଷାକୋଷ'ର କଥା**— 'ଭାଷାକୋଷ' ଭଳି ବିରାଟ ଗ୍ରନ୍ଥରେ ବହୁତ୍ରୁଟି, ଭ୍ରମ ଓ ପ୍ରମାଦ ରହିଥିବା କଥା ପ୍ରତ୍ୟେକ ଖଣ୍ଡର ଉପକ୍ରମଣିକାରେ ଗ୍ରନ୍ଥକାର ସ୍ୱୀକାର କରିଛନ୍ତି। ଠା'ରେ ଲେଖିଛନ୍ତି - "ମୋ ଭଳି ଶକ୍ତିହୀନ, ବଳହୀନ, ଜ୍ଞାନହୀନ ଜଣେ ବ୍ୟକ୍ତିର ଚେଷ୍ଟାରେ ସଂକଳିତ ଏ ବିରାଟ ଗ୍ରନ୍ଥରେ ଭ୍ରମ, ପ୍ରମାଦ, ତ୍ରୁଟି ରହିଅଛି। × ଈଶ୍ୱର କରନ୍ତୁ, ମୋ ଅପେକ୍ଷା ଶକ୍ତିଶାଳୀ, ଜ୍ଞାନୀ, ବଳଶାଳୀ, କର୍ମପ୍ରାଣ ଉତ୍କଳମାତାଙ୍କ କର୍ମୀ ସନ୍ତାନଙ୍କ ଚେଷ୍ଟାରେ ଏ ଗ୍ରନ୍ଥର 'ପରିଶିଷ୍ଟ' ଗ୍ରନ୍ଥ ପ୍ରକାଶିତ ହେବ।" ଏହି "ପରିଶିଷ୍ଟ ଗ୍ରନ୍ଥ" ପାଇଁ ସେ ହଜାର ହଜାର ପଦ ସଂଗ୍ରହ କରିଥିଲେ—କିନ୍ତୁ ତାହା ପୂର୍ଣ୍ଣ କରି ପ୍ରକାଶ କରିବା ପାଇଁ ସେ ଆଉ ବଞ୍ଚି ପାରିଲେ ନାହିଁ।

'ଭାଷାକୋଷ' ଲେଖାର ନିନ୍ଦା କରିବା ଭଳି ଯେଉଁ ଅଳ୍ପ କେତେ ଲୋକ ଥିଲେ ସେ ମାନଙ୍କ ମଧ୍ୟରୁ 'ନଆଁଖୁଣ୍ଟା' ମାସିକ ପତ୍ରିକାର

ସଂପାଦକ ଶ୍ରୀ ଗୋଦାବରୀଶ ମହାପାତ୍ର 'ଭାଷାକୋଷ'କୁ 'ପାଲକୋଷ' ନାମ ଦେଇ ଏଥିର ଭୁଲ ଭଟକା ଦେଖାଇବା ପାଇଁ ସେ କାଳର ସାହିତ୍ୟ ପତ୍ରିକା 'ସହକାର'ରେ ଧାରାବାହିକ ପ୍ରବନ୍ଧ ଛାପିଥିଲେ । ମାତ୍ର ଏଥିରେ ଲେଖାର ତ୍ରୁଟି ଓ ବ୍ୟକ୍ତିଗତ ସମାଲୋଚନା ବ୍ୟତୀତ ଅସଲ ସଂଗଠନ ମୂଳକ ଆଲୋଚନା କିମ୍ବା ଉପଦେଶ ମାର୍ଗ ନଥିଲା !

**ଲେଖାର ସମୟ ଓ ଖରଚ**—ତା ୧୧।୧୦।୩୭ରିଖ ଦିନର ଖଣ୍ଡିଏ ଚିଠିରେ ଗୋପାଳ ଚନ୍ଦ୍ର ପ୍ରହରାଜ ମୋ ପାଖକୁ ଲେଖିଥିଲେ:—

"× × × ବର୍ତ୍ତମାନ ମୋ ବୟସ ୭୨ ବର୍ଷ ୧୦ ମାସ କୋଡ଼ିଏ ଦିନ । × ଏଣେ 'ଭଷାକୋଷ' ୭ ସମୁଦ୍ର ପାରିହୋଇ ଆଉ ଗୋଟିଏ ସମୁଦ୍ର ପାରିହେବା ବୋଝ ମୁଣ୍ଡ ଉପରେ ଲଦା ହୋଇଛି । ବର୍ତ୍ତମାନ ପ୍ରତିଦିନ କୌଣସି ପ୍ରକାର ବ୍ୟାୟାମ ବା ହାଉଆଖିଆ ନକରି ୧୨ ଘଣ୍ଟାଠାରୁ ୧୫ ଘଣ୍ଟା ମାନସିକ ପରିଶ୍ରମ ଓ ଲେଖାପଢ଼ି (Brain work and clerical work) କରୁଛି । ଅଥଚ Dictionary ଆରମ୍ଭ କରିବା ଦିନଠାରୁ ଆଜକୁ ୨୪ ବର୍ଷ ହେବ ମୋର କୌଣସି Serious ବେମାରିରେ ଏକାଦିକ୍ରମେ ୩।୪ଦିନ ମୋର ପଡ଼ିବା ଘଟଣା ଘଟିନାହିଁ ।"

୧୯୩୧ରେ ଭାଷାକୋଷର ୧ମଖଣ୍ଡ ଏବଂ ୧୯୪୦ରେ ୭ମ ଖଣ୍ଡ ଛପା ହେଲା । କେବଳ ୭ମ ଖଣ୍ଡ ଛାପିବା ପୂର୍ବରୁ ଦୁଇବର୍ଷ ସମୟ ଗଡ଼ିଗଲା—ଅର୍ଥାଭାବ ଓ ଯୁଦ୍ଧଘନଘଟା ଯୋଗୁଁ । ମୋଟରେ ଏ ସାତ ଖଣ୍ଡ ଗ୍ରନ୍ଥଛାପିବା ପାଇଁ ଦୁଇଲକ୍ଷ ଟଙ୍କା ଖରଚ ହୋଇଥିଲା । ଏ ସବୁ ଟଙ୍କା ଦେଶର ବଦାନ୍ୟ ବ୍ୟକ୍ତି ଏବଂ ସରକାର ଦାନ କରିଥିଲେ । ୭ମ ଖଣ୍ଡଟି ଛାପିବା ପୂର୍ବରୁ ଗ୍ରନ୍ଥକାର ସିମଲା ଯାଇ ସେଠାରେ ଭାରତ ବଡ଼ଲାଟ ଲର୍ଡ଼ଲିନଲିଥଗୋ ଓ ତାହାଙ୍କ ସହଧର୍ମିଣୀଙ୍କ ଠାରୁ ଆର୍ଥିକ, ବାଚିକ ସାହାଯ୍ୟ ଲାଭ କରି କୃତକୃତ୍ୟ ହୋଇଥିଲେ । ଏ ସଂବାଦ ୭ମ ଖଣ୍ଡର ଇଂରାଜୀ 'ଅବତରଣିକା'ରେ ସ୍ପଷ୍ଟ ଲେଖି ଅଛନ୍ତି ।

**'ଭାଷାକୋଷର' ପରିଣତି**— 'ଓଡ଼ିଆ ଭାଷାକୋଷ' ପରି ବିରାଟ ଗ୍ରନ୍ଥକୁ ଭାରତର ସବୁ ବିଶ୍ୱବିଦ୍ୟାଳୟ ପୁସ୍ତକାଗାରରେ ସ୍ଥାନ

ଦିଆ ଯାଉଥିଲା- ଏବାଦ୍ ଏହା ବ୍ରହ୍ମଦେଶ, ଫ୍ରାନସ୍, ଜର୍ମାନୀ, ଇଟାଲୀ ଓ ନାରଓ୍ୱେରେ ମଧ୍ୟ ଆଦୃତ ହୋଇଥିଲା । ଶେଷ ଖଣ୍ଡ ଛପାର ଅଳ୍ପ କେତେ ବର୍ଷପରେ ଗୋପାଳ ଚନ୍ଦ୍ରଙ୍କର ଆକସ୍ମିକ ମୃତ୍ୟୁ ହେବାରୁ ଏତେ ବଡ଼ ଗ୍ରନ୍ଥର ରକ୍ଷଣାବେକ୍ଷଣ ଭାର କେଇ ନେଲେ ନାହିଁ । ଏଣୁ ଏହାର କେତେକ ସେଟ ବଜାରରେ ପଳପଳିବା ଭଳି ବିକି ହେଲା ଆଉ କେତୋଟି ବଣିଆଙ୍କ ଦୋକାନରେ 'ଠୁଙ୍ଗା' ଆକାରରେ ବିକି ହେଲା ।



# ସ୍ୱନାମଧନ୍ୟ ପ୍ରହରାଜ

**ଶ୍ରୀ ବାମଦେବ ମିଶ୍ର,** (ଅବସରପ୍ରାପ୍ତ ଏ. ଡ଼. ଏମ୍.)

ଆପଣ କ୍ରମେ ବିସ୍ମୃତି ଗର୍ଭରେ ଲୋପ ପାଉଚନ୍ତି । ଓଡ଼ିଶାରେ ପ୍ରହରାଜ ମହାଶୟଙ୍କୁ କିଏ ନ ଜାଣେ ? ଉତ୍କଳ ସାହିତ୍ୟାକାଶରେ ସେ ଥିଲେ ଗୋଟିଏ ଉଜ୍ଜ୍ୱଳ ଜ୍ୟୋତିଷ୍କ । ବଞ୍ଚି ରହିଥିଲେ ଆଜି ତାଙ୍କୁ ପାଖାପାଖି ୯୦ ବର୍ଷ ହୋଇଥାନ୍ତା । ସେ କେବେ ଜନ୍ମ ହୋଇଥିଲେ ମୋତେ ଜଣାନାହିଁ କିନ୍ତୁ ରେଭେନ୍‌ସା କଲେଜରୁ ସେ ୧୮୯୮ ସାଲରେ ବି. ଏ. ପାଶ କରିଥିଲେ । ସେଥିରୁ ତାଙ୍କର ବୟସ ଆନୁମାନିକ ନିର୍ଣ୍ଣୟ କଲି । ସେ ପ୍ରାୟ ୨୫ ବର୍ଷ ତଳେ ଇହଲୀଳା ସମ୍ବରଣ କରିଚନ୍ତି । ତାଙ୍କର ଜୀବଦ୍ଦଶାରେ ଉତ୍କଳ ସାହିତ୍ୟର ଉତ୍କର୍ଷ ସାଧନ ପାଇଁ ସେ ଯାହା କରି ଯାଇଚନ୍ତି ତାହା ଅବିସ୍ମରଣୀୟ ଏବଂ ତାଙ୍କ ନାମ ଅମରାକ୍ଷରରେ ଖୋଦିତ ହୋଇ ରହିବ । ସେ ଜଣେ କ୍ଷଣଜନ୍ମା ବ୍ୟକ୍ତିଥିଲେ । "Our crowded hour of glorious life is worth an age without a name"—ଏହିଉକ୍ତିଟି ତାଙ୍କ ପକ୍ଷରେ ସଂପୂର୍ଣ୍ଣ ଭାବରେ ପ୍ରଯୁଜ୍ୟ । ଦୀର୍ଘ ୨୫ ବର୍ଷ ପରେ ତାଙ୍କ ସ୍ମୃତିରକ୍ଷାର ଉଦ୍ୟମ ଚାଲିଚି । ଏହା ଅତ୍ୟନ୍ତ ଶ୍ଳାଘ୍ୟ ଏବଂ ଏଥି ନିମିତ୍ତ ମୁଁ ଉଦ୍ୟୋକ୍ତାମାନଙ୍କୁ ଅନ୍ତରର ଧନ୍ୟବାଦ ଅର୍ପଣ କରୁଅଛି । ମୋର ପ୍ରହରାଜଙ୍କ ବିଷୟରେ ଯାହା ଅନୁଭୂତି ଅଛି ତାହା ତାଙ୍କ ପାଖକୁ ୨୪ ଘଣ୍ଟା ମଧ୍ୟରେ ଲେଖି ପଠାଇବାକୁ ଅନୁରୋଧ କରିବା ପାଇଁ ପୂଜ୍ୟପୂଜା ସଂସଦର ସଭାପତି ଡକ୍ଟର କୁଞ୍ଜବିହାରୀ ଦାଶ ସସ୍ତ୍ରୀକ ବହୁ ଶ୍ରମ ସ୍ୱୀକାର କରି କଦର୍ଯ୍ୟ ପାଗରେ ମୋପାଖକୁ ଆସିଥିଲେ । ସୁତରାଂ ମୁଁ ପ୍ରହରାଜଙ୍କ ବିଷୟରେ ଯାହା କିଛି ଜାଣିଚି ସେଥିରୁ ସଂକ୍ଷେପରେ କିଛି ଲେଖିବାକୁ ସାହସ କଲି ।

ମୁଁ ଆଠମଲ୍ଲିକ ଦେୱାନ ଥିବା ସମୟରେ ପ୍ରହରାଜଙ୍କୁ ପରୋକ୍ଷ ଭାବରେ ଜାଣିଥିଲେ ମଧ୍ୟ ତାଙ୍କୁ ପ୍ରତ୍ୟକ୍ଷ ଭାବରେ 'ଭାଷାକୋଷ'ର ପୃଷ୍ଠପୋଷକ ଓ କର୍ମୀ ହିସାବରେ ଘନିଷ୍ଠ ଭାବରେ ଜାଣିବାର ସୁବିଧା ଲାଭ କଲି । କଲେଜରେ ପଢିବାବେଳେ ତାଙ୍କର ଲେଖନୀ ନିଃସୃତ ହାସ୍ୟୋଦ୍ଦୀପକ ଲେଖାଗୁଡ଼ି ଆସ୍ୱାଦିତ ହୋଇଥିଲି । ତାଙ୍କର 'ନନାଙ୍କ ବସ୍ତାନି', 'ବାଇମାହାନ୍ତି ପାଞ୍ଜି' ଏବଂ 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା' ପ୍ରଭୃତି ଅତି ଉଚ୍ଚକୋଟୀର ହାସ୍ୟ ରସାତ୍ମକ ରଚନା ।

ମୋର ପିତୃବ୍ୟ ସ୍ୱର୍ଗତ ରାମପ୍ରସନ୍ନ ମିଶ୍ର ଉତ୍କଳ ସାହିତ୍ୟାକାଶରେ ଆଜି ଜଣେ ଉଜ୍ଜ୍ୱଳ ଜ୍ୟୋତିଷ୍କ ଥିଲେ । ସେ ପ୍ରହରାଜଙ୍କର ସହପାଠୀ ଓ ଅନ୍ତରଙ୍ଗ ବନ୍ଧୁ ଥିଲେ । ମୋର ପରମାରାଧ୍ୟ ପିତୃଦେବଙ୍କ ସହିତ ପ୍ରହରାଜ ମହୋଦୟଙ୍କର ଆମ ଘରେ ସାଜପୁରରେ ଏବଂ କଟକରେ ବହୁ ସମୟ ସାହିତ୍ୟାଲାପରେ କଟିଛି । ସେ ମୋର ପିତାଙ୍କୁ ବିଶେଷ ସମ୍ମାନ କରୁଥିଲେ ।

ଗୋପାଳବାବୁଙ୍କ ପୂର୍ବରୁ ଓଡ଼ିଶାରେ ହାସ୍ୟରସାତ୍ମକ ଲେଖା ବିରଳ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର 'ସ୍ୱପ୍ନରେ ରାଜ-ଯୋଗ', 'କନ୍ୟା ଦେଖା ବାଇଗଣ ବଳା' ପ୍ରଭୃତି ଲେଖା ଅବିସ୍ମରଣୀୟ ।

ଗୋପାଳବାବୁ ଅତ୍ୟନ୍ତ ମିଷ୍ଟାଳାପୀ, ପରୋପକାରୀ, ଉଦ୍ୟମଶୀଳ, ନିରଳସ ଓ ସ୍ନେହୀ ବ୍ୟକ୍ତି ଥିଲେ । ସେ ଦିନରେ ୧୪ ଘଣ୍ଟା ପରିଶ୍ରମ କରି ପାରୁଥିଲେ । କେହି ତାଙ୍କ ପାଖକୁ କୌଣସି ବିଷୟରେ ସାହାଯ୍ୟ ପ୍ରାର୍ଥନା କରି ନିରାଶ ହୋଇ ଫେରି ଯିବାର ମୁଁ ଦେଖିନାହିଁ । ମୁଁ ଦେବାନ୍ ଥିବା ସମୟରେ ବିଦ୍ୟୋତ୍ସାହୀ ସ୍ୱର୍ଗତ ରାଜା କିଶୋରଚନ୍ଦ୍ର ଦେବଙ୍କ ଆର୍ଥିକ ସାହାଯ୍ୟରେ ଗୋପାଳବାବୁ ଅନେକ ଓଡ଼ିଆ କବିଙ୍କ ପାଣ୍ଡୁଲିପି ପ୍ରକାଶ କରିଚନ୍ତି । 'ରାଧାନାଥ ଜୀବନୀ', 'ଇନ୍ଦୁରେଖା', 'ଦଶକୁମାର ଚରିତ', 'ପଣ୍ଡିତ ସର୍ବସ୍ୱ' ପ୍ରଭୃତି ଉଲ୍ଲେଖଯୋଗ୍ୟ ।

'ଭାଷାକୋଷ' ସଙ୍କଳନ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କର୍ମୀ ଭାବରେ ମୁଁ ସହସ୍ରାଧିକ ଶବ୍ଦ ଅଭିଧାନକୁ ଯୋଗେଇଚି ଏବଂ ମୋର ଯତ୍କିଞ୍ଚିତ ସାହାଯ୍ୟ ପାଇଁ ସେ 'ଭାଷାକୋଷ'ର ପ୍ରତିଖଣ୍ଡରେ ମୋ ପ୍ରତି ତାଙ୍କର

ଅକୃତ୍ରିମ କୃତଜ୍ଞତା ଜ୍ଞାପନ କରିବାରେ ତ୍ରୁଟି କରିନାହାନ୍ତି । ଗୁଣ୍ଡିଚାମୂଷା ସେତୁବନ୍ଧ ବାନ୍ଧିବାରେ ତାର ଦେହ ଝାଡ଼ି ସେତୁରେ ବାଲି ପକାଇବା ଭଳି ମୁଁ 'ଭାଷାକୋଷ' ପ୍ରକାଶନ ଓ ବିକ୍ରୟ କରିବାରେ ଅନେକଙ୍କ ଦ୍ୱାରସ୍ଥ ହୋଇ ଓ ଶତାଧିକ ପତ୍ର ଓ ସୁପାରିସ୍ ଲେଖି ଯତ୍‌କିଞ୍ଚିତ ତାଙ୍କୁ ସାହାଯ୍ୟ କରିଥିବାରୁ ନିଜକୁ ଗୌରବାନ୍ୱିତ ମନେ କରୁଛି । ପ୍ରହରାଜ ମହୋଦୟ 'ଭାଷାକୋଷ' କାର୍ଯ୍ୟ ଚାଲିଥିବା ବେଳେ ମୋ ପାଖକୁ କେତେ ପତ୍ର ଯେ ଲେଖିଥିଲେ ତାର ଇୟତ୍ତା ନାହିଁ । ସେଥି ମଧ୍ୟରୁ ଶତାଧିକ ପତ୍ର ମୋ ପାଖରେ ଗଚ୍ଛିତ ଅଛି । ସବୁ ଚିଠି ନିଜ ହାତରେ ଲେଖିଛନ୍ତି । ଚିଠି ଗୁଡ଼ିକ କେତେବେଳେ ଓଡ଼ିଆରେ ଓ କେତେବେଳେ ଇଂରାଜୀରେ ଲେଖି-ଚନ୍ତି । ଏହି ପତ୍ରାବଳି ଏକ ଜାତୀୟ ସମ୍ପଦ । ମୁଁ ସେଗୁଡ଼ିକ ସଯତ୍ନରେ ଗୋଟିଏ ବହିରେ ବାନ୍ଧି କରି ରଖିଛି । ଅବସର ସମୟରେ ସେଗୁଡ଼ିକ ପଢିଲେ ଚିତ୍ତ ପ୍ରସାଦ ଲାଭ କରି ଥାଏଁ । ତଦାନୀନ୍ତନ ଓଡ଼ିଶା ବିଷୟରେ ବିଶେଷତଃ ଗଡ଼ଜାତ ବିଷୟରେ ପତ୍ରାବଳି ଅନେକ ଆଲୋକପାତ କରିବ । 'ଭାଷାକୋଷ' ପ୍ରଣୟନରେ ସେ ନିଷ୍ଠପ୍ର ୨୫ ବର୍ଷରୁ ଊର୍ଦ୍ଧ୍ୱ ସମୟ କଟାଇଚନ୍ତି । ଓକିଲାତି ବ୍ୟବସାୟରେ ବିଶେଷତଃ ସରକାରୀ ଓକିଲ ଭାବରେ ସେ ପ୍ରଚୁର ଅର୍ଥୋପାର୍ଜନ କରୁଥିଲେ । କିନ୍ତୁ ସମସ୍ତ ଐଶ୍ୱର୍ଯ୍ୟ ଲାଳସା ଓ ପ୍ରଲୋଭନ ତ୍ୟାଗ କରି ସେ ତାଙ୍କର ଶେଷ ସମୟ ବାଣୀ ଆରାଧନା ଏବଂ ସ୍ୱଦେଶ ସେବାରେ ଜୀବନ ଉତ୍ସର୍ଗ କରି 'ଭାଷାକୋଷ' ରୂପକ ଏକ ଜାତୀୟ ମନ୍ଦିର ନିର୍ମାଣ କରି ଦେଇଗଲେ କିନ୍ତୁ ଆମେ ତାଙ୍କର ଅଯୋଗ୍ୟ ଦାୟାଦ ସେହି ଅଭିଧାନର ସୁରକ୍ଷା ଏବଂ ବହୁଳ ପ୍ରଚାର ପାଇଁ କଣ କଲେ ? ସେଦିନ ବିଷୁବମେଳାରେ ସାହିତ୍ୟ ଏକାଡେମୀର ସେକ୍ରେଟେରୀଙ୍କଠାରୁ ଶୁଣି ବିସ୍ମିତ ହେଲି ଯେ 'ଭାଷାକୋଷ'ର ଗୋଟିଏ ସେଟ୍ ତିନି ହଜାର ଟଙ୍କା ଯାଚି ମଧ୍ୟ କିହି ପାଇଲେ ନାହିଁ । କି କ୍ଷୋଭର ବିଷୟ ! ପ୍ରହରାଜଙ୍କ ନାତି ଏବଂ ଅନ୍ୟାନ୍ୟ ବଂଶଧର ବୁଆଡ଼େ ବହି ଛପାଇବାର ଅନୁମତି ପାଇଁ ସାହିତ୍ୟ ଏକାଡେମୀକୁ ଲକ୍ଷେ ଟଙ୍କାରୁ ବେଶି ସଲାମି ମାଗୁଚନ୍ତି । ଗୋପାଳବାବୁ ଯେତେବେଳେ ତାଙ୍କର ଆଜନ୍ମ ସଞ୍ଚିତ ଉପାର୍ଜନ ଶେଷ କରି 'ଭାଷାକୋଷ'ର ପ୍ରାରମ୍ଭିକ କାର୍ଯ୍ୟ ଶେଷ କଲେ ସେ ତାଙ୍କର ସମ୍ପତ୍ତି ବେଙ୍କରେ ବନ୍ଧକ ରଖି 'ଭାଷାକୋଷ' କାର୍ଯ୍ୟରେ

ଅଗ୍ରସର ହେଲେ ଏବଂ ଯେତେବେଳେ ସଂପୂର୍ଣ୍ଣ ନିଃସ୍ୱ ହୋଇ ହତାଶ ହେଲେ ସେତେବେଳେ ଗଡ଼ଜାତ ରାଜନ୍ୟମଣ୍ଡଳୀ ତାଙ୍କୁ ଅଯାଚିତ ଦାନ କରିଥିଲେ । ଏହି ଦାନ ଶୌଣ୍ଡ ରାଜା ମହାରାଜାଙ୍କ ଭିତରେ ମୟୂରଭଞ୍ଜ, ପାଟଣା, ବଉଦ ଏବଂ ଆଠମଲ୍ଲିକଙ୍କ ଦାନ ବିଶେଷ ଉଲ୍ଲେଖଯୋଗ୍ୟ । 'ଭାଷାକୋଷ' ପ୍ରଣୟନ ପାଇଁ ସେ ଯେଉଁ ପଣ୍ଡିତମାନଙ୍କୁ ନିଯୁକ୍ତ କରିଥିଲେ ସେମାନଙ୍କୁ ପାରିଶ୍ରମିକ ଦେବାରେ ବର୍ଷ ବର୍ଷ ଧରି ବହୁ ସହସ୍ର ମୁଦ୍ରା ଖର୍ଚ୍ଚ ହୋଇଅଛି । ଉତ୍କଳ ସାହିତ୍ୟ ପ୍ରେସ 'ଭାଷାକୋଷ' ଛପାଇବାରେ ଅନେକ ବର୍ଷ ବ୍ୟାପୃତ ରହିଲା । ସ୍ୱର୍ଗତ ବିଶ୍ୱନାଥ କର ଓ ତାଙ୍କର ଦାୟାଦମାନଙ୍କର ଏ ଦିଗରେ ପ୍ରଯତ୍ନ ଅତ୍ୟନ୍ତ ପ୍ରଶଂସାର୍ହ । ଦ୍ୱିତୀୟ ମହାସମର ହେତୁ କାଗଜ ଦୁଷ୍ପ୍ରାପ୍ୟ ହୋଇଥାଏ । ଏସବୁ ବାଧାବିଘ୍ନ ଅତିକ୍ରମ କରି ପ୍ରହରାଜ ତାଙ୍କ କାମରେ 'ଶ୍ରେୟାଂସି ବହୁ ବିଘ୍ନାନ' କହି ଅଗ୍ରସର ହେଉଥାନ୍ତି । ଧନ୍ୟ ତାଙ୍କର ଉତ୍ସାହ ଏବଂ ବ୍ୟକ୍ତିଗତ ଚେଷ୍ଟା । ବିହାର ଓଡ଼ିଶାର ରାଜ୍ୟପାଳ Sifton ସାହେବ, D. P. I. Facus ଏବଂ ହାଇକୋର୍ଟର ପ୍ରଧାନ ବିଚାରପତି ସାର କୁର୍ଟନି ଟେରେଲ ପ୍ରହରାଜଙ୍କୁ ଅଭିଧାନ ଛପାଇବାରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ଓଡ଼ିଶା ରାଜ୍ୟପାଳ ହବାକ୍ ସାହେବ ପ୍ରହରାଜଙ୍କୁ Viceroy ଲିନ୍‌ଲିଥ୍‌ଗୋଙ୍କ ଦୃଷ୍ଟିକୁ ଆଣିଥିଲେ । ପ୍ରହରାଜ ମହୋଦୟ ବିହାର ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତିଙ୍କ ଆନୁକୂଲ୍ୟ ଲାଭ କରି ପାରିଥିଲେ । ସେ ମହୋଦୟ ତାଙ୍କର ଓଡ଼ିଶାକୁ ସର୍କିଟ କୋର୍ଟ କାର୍ଯ୍ୟରେ ଆସିଥିବା ବେଳେ 'ଭାଷା-କୋଷ' ଅଫିସ ପରିଦର୍ଶନ କରି ଏପରି ଅଭିଭୂତ ହୋଇଥିଲେ ଯେ ସେ ସ୍ୱତଃ ପ୍ରଣୋଦିତ ହୋଇ 'ଭାଷାକୋଷ'ର ଗୋଟିଏ ସେଟ୍ ସେ ଛୁଟି ନେଇ ବିଲାତ ଯାଉଥିଲା ବେଳେ ଭାରତ ସମ୍ରାଟଙ୍କୁ ବକିଂହାମ ରାଜ-ପ୍ରାସାଦରେ ଉପହାର ଦେଇ ତାଙ୍କର ପୃଷ୍ଠପୋଷକତା ଲାଭ କରିବାର ପ୍ରୟାସ କରିଥିଲେ । ବଡ଼ଲାଟ ସାହେବ ୧୯୩୭ ମୌସୁମୀ ସମୟରେ ଗୋପାଳବାବୁଙ୍କୁ ପୂର୍ବ ନିର୍ଦ୍ଧାରିତ ୫ ମିନିଟ୍ ସମୟ ସାକ୍ଷାତ ଦେବାକୁ ସ୍ଥିର କରି ଓଡ଼ିଆ ଭାଷା ଏବଂ 'ଭାଷାକୋଷ' ଦେଖି ଏପରି ମୁଗ୍ଧ ହୋଇ-ଥିଲେ ଯେ ୫ ମିନିଟ ସ୍ଥଳରେ ପ୍ରାୟ ଏକଘଣ୍ଟା ସମୟ ପ୍ରହରାଜଙ୍କ ସହିତ ଆଳାପ କରି ନିଜେ ଅର୍ଥ ସାହାଯ୍ୟ ଓ ଫଟୋ ଦେଇ 'ଭାଷାକୋଷ' ସପ୍ତମ

ଖଣ୍ଡ ତାଙ୍କୁ ଉତ୍ସର୍ଗ କରିବାକୁ ଅନୁରୋଧ କରିଥିଲେ । ସେ ସମ୍ବନ୍ଧରେ ୧୪।୮।୩୭ ତାରିଖରେ ଗୋପାଳବାବୁ ବଡ଼ଲାଟଙ୍କୁ ସାକ୍ଷାତ କରି ଯେଉଁ ପତ୍ର ଦେଇଥିଲେ । ତାହାର କେତେକାଂଶର ଅବିକଳ ନକଲ ପାଠକ-ବର୍ଗଙ୍କ କୌତୁହଳ ଚରିତାର୍ଥ ନିମିତ୍ତ ନିମ୍ନରେ ଉଦ୍ଧାର କଲି:—

Dear Babu Bamdeb, 14.8.1937

This is to let you know that I utilised my visit to Simla (to present the 1st Copy of Vol. 6 to its dedicatee, the Maharaja of Patna) by having an interview with H. E. the Viceroy.

H. E's reception far exceeded my fondest dreams. H. E was pleased to say "I shall deem myself honoured if you dedicate the 7th Volume to me." I presented the set of 6 Volumes to H. E. and invoked H. E's. kindness on the Oriya Nation. H. E. scanned the photos one by one in the 6th Volume and I went on describing the help my patrons have rendered to me.

X X X At parting H. E. said that he will send for me when he visits Cuttack next. At parting I laid my blessing hands on H.E. and invoked God's grace on him and tendered my loyalty to His Majesty, the King Emperor.

While shaking my hand H. E. asked, "well Rai Bahadur, I want you to have my photo for volume 7th. I said 'Certainly' and shall approach your Excellency through proper channels. H. E. said "No formality will be required. My Pr. Secy. will Communicate to you my formal permission and send you my photo.

Yours affly
Bhaina

ଅଳମତି ବିସ୍ତରେଣ ।

ପରିଶେଷରେ ମୁଁ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ପ୍ରହରାଜ ମହୋଦୟଙ୍କୁ ଜ୍ଞାପନ କରି ବିଦାୟ ନେଲି ।

—*—



# ମାମୁଁ ଥା'ନ୍ତି

## ଶ୍ରୀ ପ୍ରାଣକୃଷ୍ଣ ନନ୍ଦ

୧୯୧୩ ମସିହାରେ ମୁଁ ଅପର ପ୍ରାଇମେରୀ ପାସ୍ କରିଥାଏ। ସେତେବେଳେ ଚତୁର୍ଥ ଶ୍ରେଣୀ ଅପର ପ୍ରାଇମେରୀ ଥିଲା। ବଡ଼ ମାମୁଁ ଆମ ଘରକୁ ଆସିଥା'ନ୍ତି। ନନା ଅକସ୍ମାତ୍ ପ୍ରସ୍ତାବ ଦେଲେ ଏଠି ମୋର ପାଠ ହେଉନାହିଁ। ଭୁବନେଶ୍ୱରରୁ କଟକ ବା ଦୂର ସ୍ଥାନକୁ ଗଲେ ଚଗଲମି ଛାଡ଼ିଯିବ। ଗାଆଁର ସାଙ୍ଗମେଳ ଛାଡ଼ିଲେ ପାଠପଢ଼ାରେ ମନ ଲାଗିବ। ବଡ଼ମାମୁଁ (ସ୍ୱର୍ଗୀୟ ଗୋପାଳ ପ୍ରହରାଜଙ୍କ ସାନଭାଇ ସ୍ୱର୍ଗତ ନଟକୃଷ୍ଣ ପ୍ରହରାଜ) ତାଙ୍କ ଆଉ ପ୍ରସ୍ତାବକୁ ଚୂଡ଼ାନ୍ତ କଲେ, ମୋର ଆସି ମାମୁଁଙ୍କ ବସାରେ ରହି ପାଠ ପଢ଼ିବା ସ୍ଥିର ହେଲା।

କଟକରେ ପହଞ୍ଚିବାମାତ୍ରେ ବଡ଼ମାମୁଁ ମୋ ପାଇଁ ଦୋକାନରୁ ଧୋତି, କୁର୍ତ୍ତା କିଣି ଆଣିଲେ। ମୁଁ ନୂଆ ଧୋତି ପିନ୍ଧି ପ୍ରଥମେ ବଡ଼ମାମୁଁ (ଗୋପାଳ ପ୍ରହରାଜ)ଙ୍କୁ ନମସ୍କାର ଜଣାଇଲାବେଳେ ମୋ ଛାତିରେ ଅଜଣା ଭୟ ଭରି ରହିଥିଲା। ବିଶେଷତଃ ମଫସଲର ଛାତ୍ରମାନଙ୍କ ଭିତରେ ସାହସ ଓ ଚତୁରତା ବୋଲି ସେତେବେଳେ ବିଶେଷ ନଥିଲା। ପୁଣି ବଡ଼ମାମୁଁଙ୍କ ସହିତ ଅତୀତରେ କ୍ୱଚିତ୍ ସାକ୍ଷାତ ହୋଇଥିବାରୁ ତାଙ୍କପ୍ରତି ମନରୁ ପ୍ରଥମ ଆତଙ୍କ ଛୁଟି ନଥିଲା। ମାମୁଁ ମୋତେ ଡ଼ାକି ଆଦରରେ ଜଙ୍ଘରେ ବସାଇଲେ ଓ ପିଠି ଥାପୁଡ଼େଇ ଏଣୁତେଣୁ

ଢ଼'ଗ୍ରୁର କଥା ପଗ୍ଭରଲେ । ମାମୁଁଙ୍କ ପ୍ରତି ମୋର ଅହେତୁକ ଭୟ ସମେ ଛୁଟିଗଲା ।

ପିଲାବେଳେ ମୋ ଦେହରେ ଗୁଡ଼ାଏ କାଛୁ ହୋଇଥାଏ । ମାମୁଁ ମୋତେ ପାଖକୁ ଡ଼ାକି ନିମ୍ବପତ୍ର ଜଳ ପାଣିରେ କାଛୁକୁ ରଗଡ଼ି ଧୋଇ ଦିଅନ୍ତି ଓ ସେକାଳେ ମିଳୁଥିବା ମଲମ ନିଜ ହାତରେ ମାରି ଦିଅନ୍ତି । ମୋତେ କଷ୍ଟ ହେଲେବି ମୁଁ କାନ୍ଦି ପାରେନା । ସେ ଏଣୁତେଣୁ ମଜାକଥା କହି କଷ୍ଟର ମାତ୍ରାକୁ ଲଘବ କରେଇ ଦିଅନ୍ତି ।

ଦିନକର ମାମୁଁଙ୍କ ବସାରେ କ'ଣ ଭୋଜିର ଆୟୋଜନ ହୋଇଥିଲା । ଚୁଲାଘରେ ବହୁତ ରସଗୋଲା ତିଆରି ହୋଇ ହାଣ୍ଡିରେ ରହିଥିଲା । ମାମୁଁ ମୋତେ ଲୁଚି ଲୁଚି ଡ଼ାକି ମୋ ପାଟିରେ ଗୋଟିକ ପରେ ଗୋଟିଏ ତିନିଗୁଟି ରସଗୋଲା ପୂରେଇ ଦେଲେ । ପୁଣି କହିଲେ—"ଚୂପ୍ ଚୂପ୍ ଖାଇଦେ— କାହାକୁ କହିବୁନି ।" ମୁଁ ଅନେକଦିନ ଯାଏ ଏହାର ରହସ୍ୟ ବୁଝିପାରିନି ନାହିଁ । ଏଡ଼େ ବଡ଼ ନାମଜାଦା ମଣିଷ । ତାଙ୍କର ପୁଣି ଡ଼ର କାହାକୁ ?

ମାମୁଁ ସେତେବେଳେ କଟକରେ ନାମକରା ଓକିଲ । ପ୍ରଥମେ ମଧୁବାବୁଙ୍କ ସାଙ୍ଗରେ ସେ ପ୍ରାକ୍ଟିସ୍ କରୁଥିଲେ । ପରେ ନିଜ ବ୍ୟବସାୟ ନିଜେ ଚଳାଇଲେ । ଆମ ଅଜା ସ୍ୱର୍ଗତ ନରସିଂହ ପ୍ରହରାଜେ କିଛି ଟଙ୍କା ଦେ'ଣା ଯୋଗୁ କଟକର କୌଣସି ମାଡ଼ୁଆଳୀକୁ କଟକ ସହରର କିଛି ଜମି ଲେଖି ଦେଇଥିଲେ । ଏ ଲେଖା କେବଳ ଘରୋଇ ଭାବରେ ପରସ୍ପର ମଧ୍ୟରେ ହୋଇଥିଲା । ସରକାରୀ କଚେରୀରେ ରେଜେଷ୍ଟ୍ରି ହୋଇ ନଥିଲା । ମାଡ଼ୁଆଳୀ ସେ ଜାଗା ଲୋଭରେ ମାଡ଼ିବସିଲା । ଶେଷକୁ ବଡ଼ମାମୁଁ କେଶ୍ କଲେ । କୋର୍ଟରେ ହସ୍ତାକ୍ଷର ଅଜାଙ୍କର ବୋଲି ପ୍ରମାଣିତ ନ ହେଲେ ଡ଼ିକ୍ରୀ ମିଳିବ । ଶେଷରେ ହସ୍ତାକ୍ଷର ପରୀକ୍ଷା ପାଇଁ କୋର୍ଟ ନିର୍ଦ୍ଦେଶ ଦେଲେ । ଅଜା ବଡ଼ ଚିନ୍ତାରେ ପଡ଼ିଲେ । ଏଡ଼େବଡ଼ ଅସତ୍ୟ କଥାଟେ—ନିଜ ହସ୍ତାକ୍ଷରକୁ ସେ କପଟ ବା ଫାଙ୍କି ଦେବେ । ଅଜା ଖାଇବା ପିଇବାରୁ ବି ମନ ଛାଡ଼ିଲେ । ଗୋଟାଏ ଚିନ୍ତା ତାଙ୍କୁ ଘୋଟି ରହିଲା ।

ଦିନେ ଜଣେ ସନ୍ୟାସୀ ବାହୁଁ ଆସି ଅପ୍ରୃନକ ପହଞ୍ଚିଗଲେ । ଅନ୍ତଥି ଅଭ୍ୟାଗତ ଆସିଲେ ଅଜା ସେମାନଙ୍କୁ ଦେବତା ତୁଲ୍ୟ ମାନୁଥିଲେ ଓ ଅଭ୍ୟର୍ଥନା କରୁଥିଲେ । ଏପରିକି ପିଲାବେଳେ ବୋଉ ସାଙ୍ଗରେ ମାମୁଁଘରକୁ ଯାଇ ଦେଖିଛୁ ଯେ ଅଜା ଏକୁଟିଆ କେବେ ଖାଇ ବସନ୍ତି ନାହିଁ । ନିହାତି ଜଣେ ଅତିଥି ନ ବସିଲେ ତାଙ୍କୁ ଭାତ ରୁଚେ ନାହିଁ । ବେଳେ ବେଳେ ଏକାଧିକ ଅତିଥି ଜୁଟି ଯା'ନ୍ତି । ସେ ଦିନ ଅଜା ଖୁସି ତତ୍ପର ହୋଇ ଉଠନ୍ତି । ସନ୍ୟାସୀ ସେଦିନ ଅଜାଙ୍କ ସଙ୍ଗରେ ଖାଇ ବସିଲେ । ଏଇ ମକଦ୍ଦମା କଥା ପଡ଼ିଲା । ବିଭିନ୍ନ ସରକାରୀ ରେକର୍ଡ଼ ଓ କବଲାରୁ ଅଜାଙ୍କ ଦସ୍ତଖତ୍ ଅଂଶ କଟାହୋଇ ଏ ଲେଖାର ଦସ୍ତଖତ ସଙ୍ଗେ ମିଶାଯିବ । ତାକୁ ଗୋଟିକ ପରେ ଗୋଟିଏ ପଢ଼ି ଓ ଦେଖି କେଉଁଟି ତାଙ୍କର ଦସ୍ତଖତ୍ ଓ କେଉଁଟି ନୁହେଁ ତାହା କୋର୍ଟରେ କହିବାକୁ ହେବ । ଏ ବ୍ୟବସ୍ଥା ଅଜାଙ୍କ ମନରେ ଘୋର ଆଶଙ୍କା ଆଣିଥାଏ । କାରଣ ସବୁତ ନିଜ ଦସ୍ତଖତ୍ । ତା'ର ଭିତରୁ ପୁଣି ସେଇ ଦସ୍ତଖତ୍‌ଟିକୁ ଅଲଗା କରି ଚିହ୍ନି ନାହିଁ କରିଦେବା ଏତେ ସହଜ କଥା ନୁହେଁ ।

ସନ୍ୟାସୀ ଅଜାଙ୍କୁ କହିଲେ—"ଦେଖନ୍ତୁ, ଯେଉଁ ଦସ୍ତଖତ୍ କାଗଜଟି ହାତରେ ଧରିବାମାତ୍ରେ କାନରେ 'ନାହିଁ' ବୋଲି ଗୋଟିଏ ଶବ୍ଦ ହେବ ତାକୁହିଁ ନିଜ ଦସ୍ତଖତ୍ ନୁହେଁ ବୋଲି ମନା କରିଦେବେ । ଠିକ୍ ସେଇଆ ହେଲା । ଅଜା କେସ୍ ଜିଣିଲେ । ମାମୁଁଙ୍କ ଖାତିର ଖୁବ୍ ବଢିଗଲା ।

ମୁଁ କଟକ ପ୍ରାକ୍‌ଟିସିଂ ମିଡ଼ିଲ୍ ସ୍କୁଲରେ ନାମ ଲେଖାଇଥିଲି । ମୋ ସହିତ ସ୍ୱର୍ଗତ ଚନ୍ଦ୍ରମୋହନ ମହାରଣାଙ୍କ ପୁଅ ଲୋକନାଥ ପଢୁଥିଲେ । ଚନ୍ଦ୍ରମୋହନ ବାବୁ ଆମ ଜ୍ଞାନ ପରୀକ୍ଷା କରିବା ପାଇଁ 'ପରିପୂରକ ସମାସ'ର ଉଦାହରଣ ପଚାରିଲେ । ଉପର ଶ୍ରେଣୀର ପିଲା ମାନେ କହି ନ ପାରିବାରୁ ତଳଶ୍ରେଣୀ ପିଲାଙ୍କୁ ପଚରାଗଲା । ମୁଁ ତଳକ୍ଲାସରେ ପଢୁଥାଏ । ମୋର ଏ ଉଦାହରଣଟି ବେଶ ମନେଥାଏ । ଓଡ଼ିଆ ସାହିତ୍ୟରେ ମାତ୍ର ଗୋଟିଏ ଉଦାହରଣ – "କାନ୍ଦିଲେ ବଣିମୃଗ

ଜନନୀ ।" ମୁଁ କହି ଦେବାରୁ ଚନ୍ଦ୍ରମୋହନ ବାବୁ ମୋତେ ଆନନ୍ଦରେ କୁଣ୍ଢାଇ ପକାଇଲେ । ମାମୁଁଙ୍କୁ ବି ମୋ କୃତିତ୍ବ କଥା କହିଲେ । ମାମୁଁ ମୋତେ ତାରିଫ୍ କଲେ ଓ ମନଦେଇ ପାଠପଢ଼ିବାକୁ ପରାମର୍ଶ ଦେଲେ । ମୁଁ ମାଇନର୍ ବୃତ୍ତି ପାଇ ପରେ ସତ୍ୟବାଦୀ ସ୍କୁଲକୁ ଚାଲି ଆସିଲି ।

୧୯୨୭ ମସିହା କଥା ହେବ । ମହାତ୍ମାଗାନ୍ଧି କଟକ ଆସିଥିଲେ ଓ ମାମୁଁଙ୍କ ବସାରେ ତାଙ୍କର ରହଣୀ ପାଇଁ ଆୟୋଜନ ହୋଇଥିଲା । ମହାତ୍ମାଗାନ୍ଧିଙ୍କୁ ଦେଖିବା ପାଇଁ ଆମେ ତରୁଣମାନେ ସେତେବେଳେ ଭାରି ବ୍ୟଗ୍ର ହୋଇ ପଡ଼ିଥିଲୁ । ପୁଣି ଆମ ମାମୁଁ ଘରେ ସେ ରହିବେ । ଏ କମ୍ ଗୌରବର କଥା ନୁହେଁ । ଗାନ୍ଧି ଆସିଲେ, ବଡ଼ମାମୁଁ ମୋତେ ଚିହ୍ନା କରାଇ ଦେଇ ଗାନ୍ଧିଙ୍କୁ କହିଲେ—'ଏ ମୋ ଭଣଜା' । ଗାନ୍ଧି ମୋତେ ଆଦର କରି ଦି'ଚାରି କଥା ପଚାରିଥିଲେ । ସେ ସବୁ ଆଜି ମନେ ନାହିଁ । ତେବେ ମୋର ଯୁବକ ହୃଦୟକୁ ତାଙ୍କ ଦର୍ଶନ ଓ କଥା ସେତେବେଳେ ଖୁବ୍ ଉଦ୍‌ବୁଦ୍ଧ କରିଥିଲା । ସେତେବେଳେ ମାମୁଁ କାୟମନୋବାକ୍ୟରେ 'ଭାଷାକୋଷ' ଲେଖାରେ ମନଦେଇଥିଲେ । ମାମୁଁଙ୍କ ପ୍ରସ୍ତୁତି ଓ ସାଧନା ଦେଖି ମହାତ୍ମାଗାନ୍ଧି ବିସ୍ମୟ ପ୍ରକାଶ କରିଥିବା ମୋର ସ୍ପଷ୍ଟ ମନେ ଅଛି ।

ସତ୍ୟବାଦୀ ସ୍କୁଲରୁ ପାସ୍ କରି ରେଭେନ୍‌ସା କଲେଜକୁ ଆସିଲି । ସେତେବେଳେ 'ଅସହଯୋଗ ଆନ୍ଦୋଳନ' ଆରମ୍ଭ ହୋଇଗଲା । ବହୁତ୍ଛାତ୍ର ସ୍କୁଲ କଲେଜ ଛାଡ଼ିଲେ । ନନା (ସ୍ୱର୍ଗତ ଦୈତାରି ନନ୍ଦ-ସ୍କୁଲ୍ ବିଭାଗ ସବ୍-ଇନ୍‌ସପେକ୍ଟର) ଓ ମାମୁଁ କିନ୍ତୁ ମୋତେ ପାଠ ଛାଡ଼ି ସମସ୍ତଙ୍କ ସଙ୍ଗେ ମାତିବାକୁ ସୁଯୋଗ ଦେଲେ ନାହିଁ । ସୁଧାର ପିଲାଟି ପରି ମୋତେ ପାଠ ପଢ଼ିବାକୁ ହେଲା । ବଡ଼ ଚାକରି କରିବାର ଲୋଭ ମନ ଭିତରେ ରହିଥିଲା ।

କଲେଜରେ ପଢୁଥାଏ । ମୁଁ ହଷ୍ଟେଲରେ ରହିଲି । ସେତେବେଳେ ସବୁଜ ବନ୍ଧୁମାନେ କେହି କେହି ମୋର ସହପାଠୀ ଥିଲେ । ବିଶେଷତଃ କାଳନ୍ଦୀବାବୁଙ୍କ ସହିତ ମୋର ଅଧିକ ବନ୍ଧୁତା ହୋଇଥିଲା । ବାଲେ-

ଶ୍ବରର ହରିଶ୍ଚନ୍ଦ୍ର ବଡ଼ାଲ ମୋର ସହପାଠୀ ଓ ଅନ୍ୟତମ ବନ୍ଧୁ ଥିଲେ । ହଠାତ୍ ଦିନେ ଖବର ପାଇଲି କଟକ ରେଲୱେ ଲେଭଲ୍ କ୍ରସିଙ୍ଗ୍ ପାଖରେ ରେଲଗାଡ଼ି ଓ ମଟରର ଧକ୍କା ହୋଇଛି । ଅନେକ ଲୋକ ମରିଯାଇଛନ୍ତି । ଯାଇ ଦେଖିଲି ବେଳକୁ ଆକ୍ସିଡେଣ୍ଟ ହୋଇଥିବା ବସ୍‌ରେ ବଡ଼ମାମୁଁ । ତାଙ୍କ ଶରୀରର ରକ୍ତାକ୍ତ । ମୋତେ ଦେଖିବା ମାତ୍ରେ ତାଙ୍କର ଗୋଟାଏ ରୁଦ୍ଧ କୋହ ଫାଟି ପଡ଼ିଲା । ମୋତେ କୁଣ୍ଢାଇ ପକାଇ କାନ୍ଦି କାନ୍ଦି କହିଲେ 'ବଂଶ ଗଲା' । ସେଇ ବସ୍‌ରେ ବଡ଼ମାମୁଁ ଗ୍ରାମକୁ ଯାଉଥିଲେ । କେତେଜଣ ଲୋକ ଘଟଣା ସ୍ଥଳରେ ମରି ପଡ଼ିଥା'ନ୍ତି । ତାଙ୍କ ଉପରେ ଶରୀରର ଘୋଡ଼େଇ ଦିଆ ଯାଇଥାଏ । ମାମୁଁଙ୍କୁ ଡାକି ପୋଲିସ ଥାନାକୁ ଆଣିଲା । spot enquiry ହେଉଥାଏ । ମାମୁଁଙ୍କ ଲିଖିତ ମତାମତ ଲୋଡ଼ାଗଲା । ମାମୁଁ ଖୁବ୍ ବିଚଳିତ ହୋଇ ପଡ଼ିଥା'ନ୍ତି । ଅତି ଭାବ ପ୍ରବଣତାରେ ସେ ଇଂରାଜୀରେ ଯେଉଁ କେତେ ପଦ ଲେଖିଦେଲେ ତାହା ପଢି ଆମେମାନେ କାନ୍ଦି ପକାଇଲୁ । ସେ ଭାଷା ଗୋଟିଏ ଆକ୍ସିଡେଣ୍ଟର ବିବରଣୀ ନୁହେଁ—ବରଂ ଉଚ୍ଚକୋଟୀର କାବ୍ୟ କବିତା ପରି ମନେ ହେଉଥିଲା ।

ମାମୁଁଙ୍କ ଇଚ୍ଛାଥିଲା ମୁଁ ଓକିଲ ହୋଇଥା'ନ୍ତି । ତାଙ୍କର ସମସ୍ତ ପୁସ୍ତକ ଓ ଅଭିଜ୍ଞତା ସେ ମୋତେ ଦେଇଥାନ୍ତେ । କିନ୍ତୁ ମୋ ନନାଙ୍କ ଇଚ୍ଛା ଥିଲା ଭିନ୍ନ । ସରକାରୀ ଚାକିରୀର ମୋହ ସେତେବେଳେ ତଥାପି ତୁଟି ନଥିଲା । ମାମୁଁ ସ୍ୱାଧୀନ ବ୍ୟବସାୟ ଓକିଲାତି କରୁଥିଲେ । କିନ୍ତୁ ଭାଷାକୋଷ ଲେଖାରେ ମଗ୍ନ ହୋଇ ଲାଗି ରହିଲା ପରେ ସ୍ୱାଭାବିକ ଭାବରେ ଓକିଲାତି କାମରେ ବାଧା ଉପୁଜିଲା । ଭାଷାକୋଷ ଲେଖା ଶେଷ ପ୍ରଧାନ ହେଲା ।

କଲେଜ ପାଠପଢ଼ା ପରେ ମାମୁଁଙ୍କ ସହିତ ମୋର ଆଉ ବିଶେଷ ସାକ୍ଷାତ ହେବାର ସୁଯୋଗ ରହିଲା ନାହିଁ । ଓଡ଼ିଶା ଓ ଓଡ଼ିଶା ବାହାରେ ମୋତେ କାଳ କାଟିବାକୁ ହେଲା । ତେଣୁ ତାଙ୍କ ପ୍ରତ୍ୟକ୍ଷ ସଂସ୍ପର୍କରେ ମୁଁ ଆସି ପାରିଲି ନାହିଁ । ପୁଣି ଗ୍ରାମ ଜୀବନରେ ଯେଉଁ କେତେଦିନ ତାଙ୍କ ସମ୍ପର୍କରେ ଆସିଥିଲି ସେତେବେଳେ ତାଙ୍କୁ ବୁଝିବାକୁ ଓ ଜାଣିବାକୁ

ମୋର ବୟସ ହୋଇ ନଥିଲା । ମାମୁଁଙ୍କ ବ୍ୟକ୍ତିତ୍ୱ ସୂର୍ଯ୍ୟକିରଣ ପରି ପ୍ରଖର ଓ ପ୍ରଚଣ୍ଡ ଥିଲା । ମୁଁ ନିହାତି ପିଲା । ସେ ବ୍ୟକ୍ତିତ୍ୱକୁ ବୁଝିବାକୁ ମୋର ମାନସିକ ଶକ୍ତି ନ ଥିଲା । ସେ ବ୍ୟକ୍ତିତ୍ୱର ଉତ୍ତାପ ଆଗରେ ଜଳିଯିବାହିଁ ସାର ହୋଇଥାନ୍ତା । ସମସ୍ତେ ତାଙ୍କୁ 'ଖୁବ୍ ବଡ଼' ବୋଲି କହିଲେ । କିନ୍ତୁ ମୋରତ ସେ ବଡ଼ ମାମୁଁ । ତାଙ୍କୁ ଅଲଗା ଭାବରେ ବୁଝିବାକୁ ଓ ସମୀକ୍ଷା କରିବାକୁ ସମୀକ୍ଷକର ଦୃଷ୍ଟିଭଙ୍ଗୀ ନେଇ ମୁଁ କେବେ ନିରୀକ୍ଷଣ କରିନାହିଁ । ତାହାହିଁ ସ୍ୱାଭାବିକ ।

—*—

# ଗୋପାଳଚନ୍ଦ୍ର-ଜୀବନ ଓ ଜୀବନାୟନ ଏକ ସମୀକ୍ଷା

ଡକ୍ଟର **କୁଞ୍ଜବିହାରୀ ଦାଶ,**
ସଭାପତି, ପ୍ରଜ୍ୟପୂଜା ସଂସଦ୍

୧୯୪୧ରେ ବାଙ୍କରେ ଥିଲାବେଳେ ତାଙ୍କୁ ଆତ୍ମଜୀବନ ଚରିତ ଲେଖିବା ଲାଗି ଅନୁରୋଧ କରିଥିଲି । ସେ ଲେଖିଥିଲେ ପୁଣି ମୋପରି ଜଣେ ଅନାମଧେୟ ସାହିତ୍ୟିକର ଅନୁରୋଧରେ ଲେଖିଥିଲେ ବୋଲି କହିବା ଅବଶ୍ୟ ଧୃଷ୍ଟତା । ପୂଜ୍ୟପୂଜା ସଂସଦର ସମ୍ପାଦକ ଅଧ୍ୟାପକ ଶ୍ରୀମାନ୍ ନିତ୍ୟାନନ୍ଦ ଶତପଥୀଙ୍କ ପ୍ରଚେଷ୍ଟାରେ ଆତ୍ମଚରିତର ଏକାଂଶ ମାତ୍ର ଆମର ହସ୍ତଗତ ହୋଇଅଛି । ଅନ୍ୟ ଅଂଶମାନ କାହା ପାଖରେ ଥିଲେ ଦେଲେ ଆଗାମୀ ଜନ୍ମଦିବସ ପୂର୍ବରୁ ପ୍ରକାଶ କରିବୁ । ଯାହାହେଉ, ଅନୁରୋଧ କରି ଯେତିକି ସାହିତ୍ୟିକ ପୁଣ୍ୟ ଅର୍ଜନ କରିଥିଲି ତାର ଏକାଂଶ ସଙ୍କଳନ କରି ସଦ୍ୟ ଫଳ ଭୋଗ କଲି—ଏହାହିଁ ମୋର ଆତ୍ମ-ପ୍ରସାଦ । ମୋର ଦୃଢ଼ ବିଶ୍ୱାସ ଥିଲା, ପ୍ରହରାଜଙ୍କ ଆତ୍ମଜୀବନ ଚରିତ ଫକୀରମୋହନ ଆତ୍ମଚରିତରୁ ନିକମା ହେବ ନାହିଁ, ଅବଶ୍ୟ ଶୈଳୀ ବିଭବରେ । ମୋ ଆଶା କେତେଦୂର ଚରିତାର୍ଥ ହୋଇଛି, ବିଦଗ୍ଧ ପାଠକମାନେ ବିଚାର କରିବେ ।

ପ୍ରହରାଜ ଫକୀରମୋହନଙ୍କ ଉପଯୁକ୍ତ ଭାବାତ୍ମକ ଦାୟାଦ । ଜୀବନକୁ ଆସ୍ୱାଦ କରିବାର ପିପାସା ତାଙ୍କର ଅଦମ୍ୟ ଥିଲା । ସେଥିଲାଗି ପ୍ରୟୋଜନ ବେଳେ ସେ ମାତର ଉତ୍ତୁଙ୍ଗ ଦୁର୍ଗ ଲଙ୍ଘନ କରି ଯାଇଥିଲେ,

କୌଣସି ବାଡ଼ବେଢ଼ ମାନି ନ ଥିଲେ । ଦୁଇ ମହାନ୍ ଲେଖକଙ୍କ ଜୀବନ ସଂଗ୍ରାମୀ ଜୀବନ । ଜଣେ ସଂଗ୍ରାମକୁ ନ୍ୟାସ କରିଛନ୍ତି ଉପନ୍ୟାସରେ; ଆଉ ଜଣକର ସଂଗ୍ରାମର ନିଷ୍ଠା ପ୍ରକାଶ ପାଇଛି ପୂର୍ଣ୍ଣଚନ୍ଦ୍ର ଭାଷାକୋଷରେ ।

ଭାଷାତତ୍ତ୍ୱବିତ୍ ଗୋପୀନାଥ ନନ୍ଦଙ୍କ ପରେ ଗୋପାଳଚନ୍ଦ୍ରଙ୍କ ସାଧନା ବଡ଼ ହୋଇ ଦିଶେ । ପ୍ରହରାଜଙ୍କ ଜୀବନ ସାହିତ୍ୟ ଲାଗି ଏକ ଉତ୍ସର୍ଗୀକୃତ ଜୀବନ । ଓଡ଼ିଆ ଜାତି ପ୍ରାଣରେ ତାଙ୍କ ଭାଷାକୋଷ ଏକ ଗଭୀର ଆତ୍ମପ୍ରତ୍ୟୟ ସୃଷ୍ଟି କରିଥିଲା— 'ବିଶାଳ ବିପୁଳ କିନ୍ତୁ ଉତ୍ତୁଙ୍ଗ ମହାନ୍'—ଅର୍ଣ୍ଣବ ପରି ଦିଗ୍‌ବଳୟବ୍ୟାପୀ, ଆକାଶ ପରି ସୁଦୂର ପ୍ରସାରୀ, ରଜାର ଧନକୁ ସାର୍ଥକ କରିଥିଲେ ସେ, କୃତାର୍ଥ କରିଥିଲେ ତତ୍‌କାଳୀନ ବିକ୍ଷିପ୍ତ, ବିପର୍ଯ୍ୟସ୍ତ ଉତ୍କଳୀୟ ପାଣ୍ଡିତ୍ୟକୁ । ଏ ଯୁଗର ପ୍ରାଣ ପ୍ରାଚୁର୍ଯ୍ୟର ଏକ ମହାନ ଦୃଷ୍ଟାନ୍ତ ସେ । ଜାତିର ଛିନ୍ନ ବିଚ୍ଛିନ୍ନ ଶକ୍ତିକୁ ଠୁଳ କରି ସେ ଦେଇଥିଲେ ଏକ ଆହ୍ୱାନ ସେଇମାନଙ୍କୁ, ଯେଉଁମାନେ ଦିନେ ଓଡ଼ିଆ ଭାଷାର ଅସ୍ତିତ୍ୱକୁ ସ୍ୱୀକାର କରି ନ ଥିଲେ, ତାର ଦୁର୍ବଳତମ ମୁହୂର୍ତ୍ତରେ ତାକୁ ଚରମ ଲାଞ୍ଛନା ଦେଇଥିଲେ ।

ସଙ୍କଳ୍ପନିଷ୍ଠ ଓଡ଼ିଆ ଯେ ଅସାଧ୍ୟ ସାଧନ କରିବାକୁ ସମର୍ଥ ସେ ଏହା କର୍ମରେ ଦେଖାଇ ଯାଇଛନ୍ତି; ତାଙ୍କ କର୍ମ ତାଙ୍କର ଶ୍ରେଷ୍ଠ ବାଣୀ । ତାଙ୍କ କୀର୍ତ୍ତି ଉତ୍କଳୀୟ ମନୀଷାର ଏକ ହିମାଦ୍ରି ପରି ଦିଶେ ।

ସାହିତ୍ୟର ସମସ୍ତ କାମ୍ୟ ଓ କମନୀୟ ଦିଗକୁ ସେ ବଳି ଦେଇ-ଥିଲେ କଠୋର ସାଧନା ପୀଠରେ । ଆଧୁନିକ ଉତ୍କଳୀୟ ସାରସ୍ୱତ ମନ୍ଦିରର ଏକ ମହାନ୍ ସ୍ତମ୍ଭ ତାଙ୍କର ଭାଷାକୋଷ—ଭାଷା ଭାସ୍କର୍ଯ୍ୟର ଏକ କୋଣାର୍କ । ଆଧୁନିକ ସରସ୍ୱତୀଙ୍କୁ ସେ ଛିଡ଼ା କରିଥିଲେ ଏହି ପ୍ରସାରିତ ଓ ସମ୍ଭ୍ରାନ୍ତ ପୀଠ ଉପରେ ।

ଓଡ଼ିଶାର ଜଣେ ଶ୍ରେଷ୍ଠ ବ୍ୟଙ୍ଗକାର—ବୀରବଲ ବା ଯଦୁମଣିଙ୍କ ପରି ସେ । କିନ୍ତୁ ତାଙ୍କ ଜୀବନ ଏକ ଟ୍ରାଜେଡ଼ି । ହାସ୍ୟ ରସିକ ଭାବେ ସେ ଓଡ଼ିଶାରେ ସମସ୍ତଙ୍କୁ ହସାଇଛନ୍ତି; କିନ୍ତୁ ନୀଳକଣ୍ଠଙ୍କ ପରି ଜୀବନ ମନ୍ଥନରୁ ସେ ହଳାହଳକୁ ବରଣ କରି ନେଇଛନ୍ତି; ଟ୍ରାଜେଡ଼ିର ନାୟକ ସେ;

ଶୋଚନୀୟତମ ପରିଣତି ସ୍ୱର୍ଗକୁ ଅକାତରରେ ସେ ନିଜକୁ ଠେଲି ଯାଇଛନ୍ତି । କାରଣ ଜୀବନ ଆସ୍ୱାଦ ଲାଗି ତାଙ୍କର ଆକାଂକ୍ଷା ତୀବ୍ରତମ ଥିଲା । ଗୀତି ତାଙ୍କର ପୋଥି ପାଠ; ପ୍ରିତି ତାଙ୍କର ଦୀକ୍ଷା । ଜୀବନ ଆସ୍ୱାଦ ଲାଗି ସେ ଉନ୍ମତ୍ତ ଥିଲେ; ସେଥିଲାଗି ତାଙ୍କୁ ସ୍ୱର୍ଗକୁ କି ନରକକୁ ଯିବାକୁ ହେବ, ସେ ଭାବି ନାହାନ୍ତି । ନରକକୁ ଯିବାରେ ତାଙ୍କର କୁଣ୍ଠା ନାହିଁ; କାରଣ ସେଠି ତାଙ୍କର ବହୁ ଦୋସ୍ତ—ଜୀବନ ଆସ୍ୱାଦର ସମସ୍ତ ସୁଯୋଗ ମିଳିବ । ତେଣୁ ନରକ ଗମନ ନୀତିବାଗୀ ମନରେ ଜୁଗୁପ୍ସା ସୃଷ୍ଟି କରିପାରେ; କିନ୍ତୁ ତାଙ୍କପରି ଜୀବନପ୍ରେମୀ ଦୃଷ୍ଟିରେ ନରକହିଁ ସାହିତ୍ୟିକର ତୀର୍ଥ ।

ନିଜକୁ ତିଳ ତିଳ କରି ଭାଙ୍ଗିଛନ୍ତି ସେ ଚପଳ କୌତୁକରେ । ଆସ୍ୱାଦ କରିବା ଲାଗି ବିଭିନ୍ନ ପରିବେଶରେ ନିଜର ଅନ୍ତରଙ୍ଗୀ ରସ ।

ସମାଜର କଠୋର ସମାଲୋଚକ ସେ, ନିଜ ପ୍ରତି ସମାନ କଠୋର ହୋଇଛନ୍ତି । ସମାଜର ଦୁର୍ବଳ ସ୍ଥାନରେ ଆଘାତ କରି କରି ନିଜେ ଆହତ ହୋଇଛନ୍ତି, ଦୁର୍ବଳତମ ସ୍ଥାନରେ—'ଜାନୁ ଭଗ୍ନ ହୋଇଣ ପଡ଼ିଲ ଦୁର୍ଯ୍ୟୋଧନ ।' ପ୍ରହରାଜଙ୍କ ଲେଖା ପଢ଼ିଲେ ହସ ମାଡ଼େ, ଜୀବନ ଜାଣିଲେ କାନ୍ଦ ମାଡ଼େ ।

ନିଜ ଜୀବନକୁ ଏକ ସାମାନ୍ୟ ଜୁଆକାଠି ପରି ଫିଙ୍ଗି ଦେବାର ଦୁଃସାହାସ ତାଙ୍କର ଥିଲା । ତାଙ୍କ ଜୀବନ ଏକ ବିଷମ ଶିଳା ସଙ୍କଟମୟ ପ୍ରପାତ । ଜୀବନର ରାଜପଥ ବୋଲି କିଛି ନାହିଁ ସବୁ ପଥହିଁ ତାର ପଥ । ସମ୍ପଦ ସାଧାରଣର ଗୌରବ, ବିପଦ ତାଙ୍କର କର୍ଣ୍ଣଧାର ଥିଲା ।

ସ୍ମରଣ ସେ; କଣ୍ଠରେ ତାଙ୍କର ଅମୃତସ୍ରାବୀ ସରସ୍ୱତୀ; ବାଗ୍ମୀ ସେ, ତୀକ୍ଷ୍ଣ ଓ ସୂକ୍ଷ୍ମ ବଚନ ପ୍ରୟୋଗରେ ପାରଙ୍ଗମ । ଗୃହ ତାଙ୍କର ଭଲ କାଟୁ କରୁଥିଲା ରାଜକ୍ଷେତ୍ରରେ । ଗୃହ ଓ ସ୍ମରଣୋକ୍ତିରୁ ଲବ୍ଧ ଅର୍ଥକୁ ସେ ଭୋଗରେ ନୁହେଁ ଯୋଗଚର୍ଯ୍ୟାରେ ଖଟାଇ ଥିଲେ । ଏହା ତାଙ୍କର ମହତ୍ତ୍ୱ, ଏଇଠି ତାଙ୍କର ବଡ଼ପଣ ।

ଲୋକ ସାହିତ୍ୟକୁ ଭଲ ଭାବେ ଚହ୍ଲି ଚହ୍ଲାଇ ଦେଇଥିଲେ ସେ । ତାଙ୍କ 'ଉତ୍କଳ କାହାଣୀ' ପ୍ରଥମ ଓଡ଼ିଆ ସର୍ବଜନାଦୃତ ପୁସ୍ତକ । ତାଙ୍କ ଲୋକ ଗଳ୍ପ ରଚନା ଶୈଳୀ ବଙ୍ଗଳା 'ଠାକୁରମା'ର ଝୁଲି'ର ଲେଖକଙ୍କ

ଶୈଳୀ ଅପେକ୍ଷା ଅଧିକ ବାସ୍ତବ ଓ ଗ୍ରାମ୍ୟ ବାତାବରଣ ଭରା । 'ଉ କା' ନାଗରିକ ଓ ଗ୍ରାମୀଣ ମନ ମିଳନର ପ୍ରଥମ ଓ ପ୍ରଧାନ ପୀଠ । ସୁଧୀର ଉଚ୍ଚତମ ମହଲରୁ ସାଧାରଣଙ୍କ କୁଟୀରକୁ ସେ ଯେପରି ଆସିଥିଲେ ସରସ୍ୱତୀଙ୍କ ହାତ ଧରି । ଜନସାଧାରଣ କେବଳ ସାହିତ୍ୟର ବିଷୟ ନୁହନ୍ତି, ବିଷୟୀ-ସର୍ଜନର ମହାନ୍ ମନ୍ତ୍ରଦାତା—ପ୍ରମାଣ କରିଥିଲେ ସେ ।

ଉନବିଂଶ ଶତାବ୍ଦୀର ସେ ଏକମାତ୍ର ସାହିତ୍ୟିକ, ଯାହାର ଲୋକ-ସାହିତ୍ୟ ସଂଗ୍ରହ ଲାଗି ଏକ ବିପୁଳ ଯୋଜନା ଥିଲା । ସେ ବୁଝିଥିଲେ ଲୋକସାହିତ୍ୟ ବିଦଗ୍ଧ ସାହିତ୍ୟର ପ୍ରଣବ, ଜନଜୀବନ ଓ ବିଶ୍ୱାସର ବିଶ୍ୱସ୍ତତମ ମୁକୁର । ଗାଉଁଲି ଭାଷାର ଜଣେ ମୁଖ୍ୟ ପ୍ରବର୍ତ୍ତକ ଥିଲେ ସେ । 'ଗ୍ରାହ୍ମଣୀୟ' ଓ 'ଇତର' କହି ସୁଧୀମାନେ ଯାହାକୁ ଉଡାଇ ଦେଉଥିଲେ, ତାର ପୋଷାକ, ପାଳକ ଓ ରସ ସାହିତ୍ୟରେ ପ୍ରୟୋଗ-କାରୀ ଥିଲେ ସେ, ଭାଷା ତାଙ୍କ ଲେଖମାର ବୋଲ ମାନୁଥିଲା । ମନଇଚ୍ଛା ସେ ଭାବାମାନଙ୍କୁ ଚରେଇ ବୁଲେଇ ନେଉଥିଲେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ-ପୁରକୁ ।

ଶିଶୁ କବିତା ରଚନାରେ ସେ ସୁପ୍ରବୀଣ ଥିଲେ; ତାଙ୍କ 'ଧୋ ରେ ବାୟା ଧୋ' ବେଶ୍ ଲୋକପ୍ରିୟ ହୋଇଥିଲା । ଲୋକସାହିତ୍ୟ ହିଁ ତାଙ୍କ ଶିଶୁ କବିତା ସୃଷ୍ଟିର ପ୍ରେରଣା ଥିଲା, ତାହା ନିମ୍ନୋକ୍ତ ଉଦାହରଣରୁ ଜଣାଯିବ—

ଗୀତଗୁଡ଼ିକ ମୋର ଓ ଶ୍ରୀଯୁକ୍ତ ଉଦୟନାଥ ଷଡଙ୍ଗୀଙ୍କ ସମ-ସ୍ମରଣରେ ଉଦ୍ଧୃତ । ସେକାଳେ ପ୍ରଚଳିତ 'ବାଲ୍ୟପାଠ'ରେ ଉକ୍ତ କବିତା ପ୍ରକାଶିତ ହୋଇଥିଲା ।

## ହାତୀ

ହାତୀ ଝୁଲୁଥାଏ ରଜା ବଗିଚାରେ
କଅଁଳ କଦଳୀ ଖାଇବାକୁ
କହ୍ନେଇ ଝୁଲଇ ମୋହରି କୋଳରେ
ଦୁଧ ଭାତ ଖାଇବାକୁ ।

ହାଣ୍ଡି ଗୁଳିଯାଏ ଲସର ପସର
ପାହୁଣ୍ଡ ପକାଏ ଧୀର
ହାଣ୍ଡି ଗଳିଯାଏ ପିମ୍ପୁଡ଼ି ନ ଗଲେ
ଶୁଣିବ କେ ଆସ ତୋର ?
× × ×
ହାଣ୍ଡି ପରି ଜୀବ ଗୁହାର ମାହୁନ୍ତକୁ
ଖଲେ କି ଡରନ୍ତି ସେହ ?
ମନ ମାନଅଛୁ ବୋଲି ସେ ରହୁଛୁ
ଆଙ୍କୁଶ ଶିକୁଳି ସହ ।

## ନଦୀ

ଦୂର ପରବତୁଁ ବହି ଆସେ ନଦୀ
କୁହୁ କୁହୁ ନାଦ କରି
ବାଲି ଶେଯରେ ସେ ଖେଳେ କେତେ ଖେଳ
ବାଳକ ବାଳିକା ପରି ।
× × ×
ଯେ ପିଏ ସେ ପାଣି ଖେଳେ ତା ବାଲିରେ
ଆନନ୍ଦରେ ସିଏ ରହେ ।

## ପାରା

ଘୁମୁ ଘୁମୁ ଘୁମ ଘୁମରେ ପାରା
ଘୁମିଗଲେ ଆଉ ନଦଏ ଧରା
ପାରା ଘୁମ୍ଭରଇ ଫୁଲାଇ ବେକ
ପଡ଼ଶାଙ୍କ ଆଗେ ଦେଖାଇ ଝେକ ।

ପ୍ରହରାଜଙ୍କ ବିଶେଷତ୍ୱ ତାଙ୍କ ରମ୍ୟ ରଚନାରେ । ସେଥିରେ ସେ କୌତୁକପ୍ରିୟ, ହାସ୍ୟରସଭରା, ବିଦ୍ରୂପାତ୍ମକ । 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା' ତାଙ୍କର ପ୍ରଥମ ରମ୍ୟ ରଚନା । ଗ୍ରାମର ଲୋକେ ସନ୍ଧ୍ୟାରେ ଏକାଠି ହେଲାବେଳେ ଟୁଙ୍ଗୀରେ ବିଭିନ୍ନ ସମସ୍ୟା ଆଲୋଚନା କରିଛନ୍ତି; ଦଶୋଟି ସନ୍ଧ୍ୟାରେ ଏପରି ମିଳନ ଓ ଆଲୋଚନାର କଳ୍ପନା

କରୁଯାଇଛନ୍ତି । ସନ୍ଧ୍ୟାର ଆଲୋଚନାରେ ସେ ଦୁର୍ମୁଖ ଶର୍ମା ନାମ ଗ୍ରହଣ କରିଛନ୍ତି, ସମାଜର ଦୁଃସ୍ଥିତି ଓ ଦୁର୍ନୀତିର ସୁସ୍ପଷ୍ଟ ରୂପରେଖ ଦେଇଛନ୍ତି ।

ଅଲିଭର ଓ୍ୱେଣ୍ଡେଲ ହୋମସ୍ (ଆମେରିକାର ବିଶିଷ୍ଟ ଲେଖକ, ୧୮୦୯—୧୮୯୪)ଙ୍କ ରଚନା ରୀତି ଗ୍ରହଣ କରିବା କଥା ପ୍ରହରାଜ ସ୍ୱୀକାର କରିଛନ୍ତି, "ଶର୍ମା ପାଠ୍ୟାବସ୍ଥାରେ ଓ୍ୱେଣ୍ଡେଲ ହୋମସ୍‌ଙ୍କୁ ଦିନା-କେତେ ଗୁରୁକରି ପାଇଥିଲେ । ସନ୍ଧ୍ୟାର ଛାଁ ସେଇ ଓସ୍ତାଦ ଘରେ ବିକୃତ ଓ ବିଭଙ୍ଗ ଅନୁକରଣ ମାତ୍ର ।" ଫକୀରମୋହନଙ୍କ 'ନନାଙ୍କ ପାଞ୍ଜି'ର ପ୍ରଭାବ ମଧ୍ୟ ତାଙ୍କ ଉପରେ ସ୍ପଷ୍ଟ । ରକ୍ଷଣଶୀଳତା ଓ ଆଧୁନିକତା ମଧ୍ୟରେ ସମନ୍ୱୟ ଆଣିବା ଲାଗି ସେ ଚେଷ୍ଟା କରିଛନ୍ତି ଓ ଆନନ୍ଦୋଜ୍ଜ୍ୱଳ, ସରସ ଶୈଳୀରେ ସ୍ୱାଧୀନ ଚିନ୍ତା ପ୍ରକାଶ କରି ଯାଇଛନ୍ତି । ତାଙ୍କ ପରିବେଷଣ ରୀତି କିପରି କମନୀୟ, ନିମ୍ନ ଉଦ୍ଧୃତିରୁ ଜଣାଯିବ—

"କଣ ଖାଉଚ, ପିଉଚ, ଖରଚ କରୁଚ, ମୁଣ୍ଡରେ ସୁଚ୍ଛା କାଟୁଚ, ସବୁ କରୁଚ, ଆଉ ମନ ଖରାପ ହେଲା କେମିତି ? ଏଣେ ଘରେ ଆପଣା ବାପ ମଲା ବେଳକୁ ଠୋପାଏ ଲୁହ ବୋହିବାକୁ ନାହିଁ, ଦାଣ୍ଡରେ କେଳାଙ୍କର ଗଧଟାଏ ମରିଗଲେ ବାବୁଙ୍କ ମନଦୁଃଖର ଓ ଚତୁର୍ଦ୍ଦଶ କବିତାର ସୀମା ନାହିଁ । ବାପାଙ୍କ କ୍ରିୟା ବନ୍ଦ । ଏଣେ ଗଧ କଥା ନେଇ କବିତା କରି ବହି ଛପୁଛନ୍ତି । ସେତେବେଳକୁ ଟଙ୍କା ମିଳୁଛି । ହଁ, ତାଙ୍କର କ ଗୁଣ ! ଯୁଗର ଗତି ଏ । ଆମେ କଣ ମିଛରେ ନାହିଁ କରୁଥିଲୁ ! ସେଇ ପାଠରୁ ତ ସବୁ ବାହାରୁଛି । ମଦ ଖାଅ, ମାଉଁସ ଖାଅ, ଦେବତା ବ୍ରାହ୍ମଣ ମାନ ନା, ବାପକୁ ଗୋଇଠା ମାର, ମାଆକୁ ଗୋଇଠା ମାରୁଥାଅ, ଏଣେ ସଭାସମିତିରେ ଦେଶ ମାତାଙ୍କ ପୂଜା ପାଇଁ ପ୍ରସ୍ତାବ ପାସ୍ କରୁଥାଅ ।" (ପୃ-୫୩, ବା ପାଞ୍ଜି)

ଶ୍ରୀ ପ୍ରହରାଜ 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା' ପରେ 'ବାଇମାହାନ୍ତି ପାଞ୍ଜି' ଲେଖିଲେ । ସମାଜ ସଂସ୍କାର କରିବା ତାଙ୍କର ଲକ୍ଷ୍ୟ ଥିଲା; ଗ୍ରାମ ଓ ନଗରର ଚଳଣି ଓ ଚରିତ୍ର ମଧ୍ୟରେ ଥିବା ତାରତମ୍ୟ, ସମାଜ, ଜାତିପ୍ରଥା, ନାରୀଶିକ୍ଷା, ସ୍ତ୍ରୀ ସ୍ୱାଧୀନତା, ବିଧବା ବିବାହ, ଆଧୁନିକ ସଭ୍ୟତା ସଂପର୍କରେ ଆଲୋଚନା କରି ସାମାଜିକ ଦୁର୍ନୀତି ଉପରେ ତୀବ୍ର

ଆଘାତ କରିଛନ୍ତି । ରଚନା ଶ୍ଳେଷ ଓ ହାସ୍ୟରସରେ ପୁଷ୍କଳ ହୋଇଅଛି ଢ଼ଗ, ନ୍ୟାୟ, ପ୍ରବଚନ ଓ ଛନ୍ଦାର ଦୃଷ୍ଟାନ୍ତ ପ୍ରାୟ ପ୍ରତ୍ୟେକ ପୃଷ୍ଠାରେ ।

'ମିଆଁ ସାହେବଙ୍କ ରୋଜନାମଚା' ମୁସଲମାନଙ୍କ ସମାଜ ଚଳଣି, ବିଶେଷତଃ ବିବାହବିଧି, ବିବାହର ବାଧ୍ୟବାଧକତା, ବିବାହ ବନ୍ଧନ-ଛେଦ, ଉଇଲ ପ୍ରଭୃତି ବିଷୟ ଏଥିରେ ଆଲୋଚିତ ।

'ଦୁନିଆର ହାଲଚାଲ' ଅଳ୍ପ କେତୋଟି 'ଉତ୍କଳ ସାହିତ୍ୟ' ସଂଖ୍ୟାରେ ପ୍ରକାଶିତ ହେଲା ପରେ 'ନନାଙ୍କ ବସ୍ତାନି' ନାମ ଧାରଣ କଲା; ଲୋକଚରିତ୍ରର ବ୍ୟାପକ ଅଧ୍ୟୟନ ତାଙ୍କର ଉଦ୍ଦେଶ୍ୟ ଥିଲା । ସେ ପୂର୍ବପୁରୁଷ ପ୍ରାଚୀନ ପନ୍ଥା ତ୍ୟାଗ କରିବାକୁ ଚାହୁଁ ନ ଥିଲେ କିମ୍ବା 'ପୁରାଣମିତ୍ୟେବ ନ ସାଧୁ ସର୍ବମ୍' ଗ୍ରହଣ କରୁନଥିଲେ; ଆଧୁନିକତାର ମୋହରେ ମଧ୍ୟ ସେ ପଡି ନଥିଲେ; ସେ ପ୍ରାଚୀନ ଓ ଆଧୁନିକ ଉଭୟର ସଂସ୍କାର ଚାହୁଁଥିଲେ, ଉଭୟର ଖାଣ୍ଟି ଜିନିଷ ଗ୍ରହଣ କରି ଏକ କ୍ରିୟା-ଶୀଳ ଆଦର୍ଶ ସମାଜ ଗଢିବାକୁ ଚାହୁଁଥିଲେ ।

"ଏଥିରେ ଆମ୍ଭେମାନେ ଶରତ ବସନ୍ତ ଲୀଳାସ୍ଥିତ ରାଜପ୍ରାସାଦରୁ ଆରମ୍ଭ କରି ଶରତ୍ ଗ୍ରୀଷ୍ମ ଗୋଳାସ୍ଥିତ ପର୍ଣ୍ଣ କୁଟୀର ପର୍ଯ୍ୟନ୍ତ ମାଂସପିଣ୍ଡ ଭରି ଗୋବର ଗଣେଶଠାରୁ ଜରାଜୀର୍ଣ୍ଣ ଫକୀରଙ୍କ ପର୍ଯ୍ୟନ୍ତ କୋଣଳା ପଞ୍ଚାଳଠାରୁ ଖସ୍ ବଗିଚା ପର୍ଯ୍ୟନ୍ତ, ଉଚ୍ଚତମ ବିଚାରାଳୟରୁ ଗ୍ରାମ୍ୟ ଚୌକିଦାର ପର୍ଯ୍ୟନ୍ତ, ପ୍ରିଭିକାଉନ୍‌ସିଲ୍‌ରୁ ପଞ୍ଚାୟତ ସଭା ପର୍ଯ୍ୟନ୍ତ, ରାଜନୀତିଠାରୁ ଅର୍ଥନୀତି ପର୍ଯ୍ୟନ୍ତ, ପ୍ରଧାନମନ୍ତ୍ରୀଙ୍କଠାରୁ ରାମ ସାମଲ ପର୍ଯ୍ୟନ୍ତ, କୁପ୍ରଥାରୁ ସୁପ୍ରଥା ପର୍ଯ୍ୟନ୍ତ, ଛଉନାଚଠାରୁ କେଳାନାଚ ପର୍ଯ୍ୟନ୍ତ, ନ୍ୟାୟଦର୍ଶନଠାରୁ ରାମଲୀଳା ସୁଆଙ୍ଗ ପର୍ଯ୍ୟନ୍ତ କେତେକ ବିଷୟରେ ଆଲୋଚନା କରିବୁ ।"

ସେ ଶିକ୍ଷିତର କପଟତା, ନୀତି ସ୍ୱାର୍ଥପରତା, ଖୋସାମତି, ମିଥ୍ୟା କଥନ, ଛିଦ୍ରାନ୍ବେଷଣ ପ୍ରକୃତିର ନିନ୍ଦା କରିଛନ୍ତି—ତାର ପଞ୍ଚମକାର ଉପାସନା, ନାରୀପୂଜା ଆଦି ଚାରିତ୍ରିକ ଦୁର୍ବଳତା ଦେଖାଇଛନ୍ତି ।

'ଆମଘରର ହାଲଚାଲ'ରେ ସମାଜର ଯାବତୀୟ ଦୋଷ ଦୁର୍ବଳତା ଦେଖାଇ ତାର ଯଥୋଚିତ ସଂସ୍କାର କରିବା ତାଙ୍କର ଉଦ୍ଦେଶ୍ୟ ଥିଲା ।

ଦେଶରେ ଶିକ୍ଷାବିସ୍ତାର, ନାରୀଶିକ୍ଷାର ପ୍ରବର୍ତ୍ତନ ଲାଗି ଶ୍ରୀ ପ୍ରହରାଜ ଉତ୍କଣ୍ଠିତ ଥିଲେ ।

'ଶ୍ରୀ କ୍ଷେତ୍ରର ହାଲଚାଲ' ଅର୍ଥାତ୍ ମାଦଳା ପାଞ୍ଜିରୁ ବିଡାଏ ନାମରେ ସେ ବଡ ଦେଉଳ, ବଡଠାକୁର, ବଡଦାଣ୍ଡ, ବଡମଠ ଇତ୍ୟାଦି ବିଷୟରେ ଲେଖିବେ ବୋଲି ପରିକଳ୍ପନା କରିଥିଲେ; କିନ୍ତୁ ତାହା ସଂପୂର୍ଣ୍ଣ ରୂପେ ପ୍ରକାଶିତ ହୋଇନାହିଁ । *

ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ରଚନା ଶୈଳୀ ଅଦ୍ୟାପି ଅନନୁକରଣୀୟ ହୋଇ ରହିଅଛି । ତଥାପି ସେଥିରେ ତ୍ରୁଟିବିଚ୍ୟୁତି ନାହିଁ, କୁହା ଯାଇପାରିବ ନାହିଁ । ବେଳେ ବେଳେ ଦେଉଳକୁ ମୂକଶିଆଳ ବଳି ପଡ଼େ, ଉପକ୍ରମ ବିଷୟବସ୍ତୁର ବର୍ଣ୍ଣନାରୁ ବିପୁଳତର ହୋଇପଡ଼େ । ବାକ୍ ପଲ୍ଲବନ ଗୋଟିଏ ଦୋଷ, କଳା ଦୃଷ୍ଟିରୁ ଅକ୍ଷମଣୀୟ; ସଂଯମର ଅଭାବରୁ ଲେଖନୀ ତାଙ୍କର ବେଳେ ବେଳେ ପଥଚ୍ୟୁତ ହୁଏ— କଣ କହୁଁ କହୁଁ କଣ କହି ପକାନ୍ତି, ବେଳେ ବେଳେ ତାଙ୍କ ରଚନା ରୁଚିଗର୍ହିତ ଓ ଶ୍ଳୀଳତା ବିବର୍ଜିତ ହୋଇଥାଏ । ଆତ୍ମ ସମାଲୋଚନାରେ ପ୍ରହରାଜେ ତାହା ସ୍ୱୀକାର କରିଛନ୍ତି— "ମୋ ଭଳିଆ ଅଧାଡ଼ୁଆ ଲେଖକମାନେ ପାଗ ବାନ୍ଧୁ ବାନ୍ଧୁ କଚେରୀ ବରଖାସ୍ତ । ଅସଲ କଥା କହିବା ପୂର୍ବରୁ ଅବତାରଣା ଓ ଆଲୋଚନା କରୁକରୁ ଆମ ମାଲମସଲାର ଚଉଦଅଣା ଖତମ ହୋଇ ସରିଥାଏ । ଅସଲ କଥା ବାହାରିଲା ବେଳକୁ ମନମୂନ ଶୁଖିଲା କାଠ ଭଳିଆ ନୀରସ ।"

(ପୃ-୩୭ ଉ.ସା. ୧୨।୧।୨୭)

ସାମାନ୍ୟ ତ୍ରୁଟିବିଚ୍ୟୁତି ଥିଲେ ବି ପ୍ରହରାଜଙ୍କ ରଚନା ଶୈଳୀ ବଳିଷ୍ଠ; ସମସାମୟିକ ସମାଜର ଇତିହାସ ସେ ଲେଖିଛନ୍ତି, ସମାଜର ଭାଷ୍ୟକାର ସେ, ଉନ୍ନତ ଜୀବନର ମହାନ୍ ଚାରଣ, ତାଙ୍କ ସାହିତ୍ୟ ଆକାରରେ କ୍ଷୁଦ୍ର ଓ ବୈଚିତ୍ର୍ୟହୀନ ହେଲେ ବି ଜୀବନର ବାସ୍ତବ, ବିଶ୍ୱସ୍ତ ଓ ରସାଳୁ ସମାଲୋଚନା ଓ ସେ ଭାବରେ ସେ ଚିର ବନ୍ଦନୀୟ ।

* ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ---ଥେସିସ୍, ଅଧ୍ୟାପକ ଡକ୍ଟର ଶ୍ରୀନିବାସ ମିଶ୍ର

—*—

# ପ୍ରହରାଜଙ୍କ ଗ୍ରନ୍ଥସୂଚୀ

ଅଧ୍ୟାପିକା **ଶ୍ରୀମତୀ ପ୍ରତିଭା ଶତପଥୀ**

ଫକୀର ମୋହନ ସାହିତ୍ୟ-ସାଧନା ଓ ସୃଷ୍ଟିଧାରାର ଉତ୍ତର ସାଧକ ରୂପେ ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ ଓଡ଼ିଆ ପାଠକ ନିକଟରେ ଅତି ପରିଚିତ । ଶକ୍ତିଶାଳୀ ଭାଷା ମାଧ୍ୟମରେ ସାମାଜିକ ବ୍ୟଙ୍ଗ ଫୁଟାଇ ଫକୀର ମୋହନ 'ଓଡ଼ିଆ ଜାତିର ଯେଉଁ ଉପକାର କରିଥିଲେ ପ୍ରହରାଜ ସେହି ଦୃଷ୍ଟିଭଙ୍ଗୀକୁ ନିଜର ସାହିତ୍ୟିକ ଆଦର୍ଶରୂପେ ମାନିନେଇ (୧) 'ଉତ୍କଳ କାହାଣୀ' (୨) 'ବାଇମହାନ୍ତି ପାଞ୍ଜି' (୩) 'ବାଇଦାସଙ୍କ ଭଜନ ଓ ଶିଶୁଗୀତ' (୪) 'ଭାଗବତ ଟୁଙ୍ଗୀରେ ସଂଧ୍ୟା' ଲେଖିଥିଲେ ଓ ଅନେକ ଢଗଢମାଳି ବଚନ, ପ୍ରବଚନ ଓ ସାରବଚନ ସଂଗ୍ରହ କରିଥିଲେ । ପୁରପଲ୍ଲୀର ଅନାବନା ଜୀବନ ଭିତରେ ଥିଲା କେତେ ପ୍ରାଣପ୍ରାଚୁର୍ଯ୍ୟ, କେତେ ଉତ୍ତାପ, କେତେ ଉଚ୍ଛ୍ୱସିତ ଆନନ୍ଦ—ସେ ସବୁକୁ ପ୍ରହରାଜ ଏଇ 'ଢଗଢମାଳି' ଭିତରେ ସାଉଁଟିଛନ୍ତି । ପୁଣି ଗ୍ରେଷ୍ଠ ଶିଶୁକୁ ଭୁଲାଇବା ପାଇଁ ଏକଦା ପଲ୍ଲୀର ମହଲ ସଂଜରେ ବୁଢ଼ୀମା' ତାର କାହାଣୀ ପେଡ଼ି ଖୋଲି ଦେଉଥିଲା । ଏ କାହାଣୀରେ ଭରି ରହିଥିଲା ଉତ୍ତେଜନା ଓ ଆନନ୍ଦ । ଗ୍ରେଷ୍ଠ ଶିଶୁ ବୁଢ଼ୀମା' କୋଳରେ ଅଜଟ ପଶିଆ ଗୁଡ଼ି ନୀରବରେ ଡ଼ୋଲେଇ ଡ଼ୋଲେଇ 'ହୁଁ' ଟିଏ ଟିଏ ମାରୁଥିଲା । ଅଭିଜ୍ଞତା ଓ ଅନୁଭୂତିରେ ବର୍ଷିୟସୀ 'ବୁଢ଼ୀ ମା' ଠାରୁ କଅଁଳ ଶିଶୁର ମନ ପର୍ଯ୍ୟନ୍ତ ଏଇ କାହାଣୀର ସରଳ କଥନଭଙ୍ଗୀ ଓ ଭାଷା ଯୋଗସୂତ୍ର ରଖି ପାରୁଥିଲା । ଶ୍ରୀଯୁକ୍ତ ପ୍ରହରାଜଙ୍କ 'ଉତ୍କଳ କାହାଣୀ' ପଲ୍ଲୀଜୀବନର ଏକ ଅକୃତ୍ରିମ ଚିତ୍ର ଉଦ୍‌ଘାଟନ କରେ ।

**ଉତ୍କଳ କାହାଣୀ**—ତେରଗୋଟି କାହାଣୀ ନେଇ ଏ ପୁସ୍ତକଟି ଲେଖାଯାଇଥିଲା । ଏହାର ପ୍ରଥମ କାହାଣୀ 'ଉତ୍କଳ ସାହିତ୍ୟ' ପତ୍ରିକାର ୧୩୧୩ ସାଲ ଫାଲ୍‌ଗୁନ ସଂଖ୍ୟାରେ ବାହାରିଥିଲା । ଅର୍ଥାତ୍ ୧୯୦୭ ଖ୍ରୀଷ୍ଟାବ୍ଦରେ କାହାଣୀର ପ୍ରଥମ ପ୍ରବନ୍ଧ "ଅବୁଝା ମଣା ରଜାକୁ ପାଳବଣ୍ଡା ମନ୍ତ୍ରୀ" ଲେଖା ଯାଇଥିଲା । ଛାତ୍ର ଜୀବନରେ ନିଜଗାଁରେ ଯେଉଁ "ହରିଭକ୍ତି ପ୍ରଦାୟିନୀ ଶିକ୍ଷା ବିବର୍ଦ୍ଧିନୀ" ସଭା ଗଢ଼ିଥିଲେ ସେହି ସଭାର ତୃତୀୟ ବାର୍ଷିକ ସଭାରେ ସଭାପତି ବିଶ୍ୱନାଥକର ଦେଇଥିବା ଭାଷଣ 'ଜୀବନ ସମସ୍ୟା' ପ୍ରବନ୍ଧକୁ ଅତି ସୁନ୍ଦର ଭାବେ ଟିପି ରଖିଥିଲେ । ଏହା ଦେଖି ଶ୍ରୀଯୁକ୍ତ କର ଗୋପାଳଚନ୍ଦ୍ରଙ୍କୁ ଧାରାବାହିକ ପ୍ରବନ୍ଧ ଲେଖି ସାହିତ୍ୟକୁ ଦେବାପାଇଁ ଦାବୀ କରିଥିଲେ । ଏହି ଗ୍ରନ୍ଥର ପ୍ରଥମ ଠାରୁ ଅଷ୍ଟମ 'ଉତ୍କଳ ସାହିତ୍ୟ'ରେ—ଏବଂ ୫ମ ପ୍ରବନ୍ଧ "ଧାନଟି ଭିତରେ ଗୁଡ଼ଲଟିଏ" 'ପଞ୍ଚାମୃତ' ୧ମ ସଂଖ୍ୟା, ୧୩୨୮ ନୂଆଁ ସଂଖ୍ୟାରେ ଛପା ହେଲା । ଅନ୍ୟ ଗୁଡ଼ିକ ୯, ୧୦, ୧୧, ୧୩ ଏ ଚାରୋଟି ପ୍ରବନ୍ଧ ପରେ ସଂଯୋଗ କରା ଯାଇଥିଲା ।

ଏ ପୁସ୍ତକର ୧ମ ସଂସ୍କରଣ ୧୯୨୦ ଏବଂ ୨ୟ ପରିବର୍ଦ୍ଧିତ ସଂସ୍କରଣ କଟକ ଟ୍ରେଡ଼ିଂ କମ୍ପାନୀ ଦ୍ୱାରା ମୁଦ୍ରିତ ହୋଇଛି । ସମୁଦାୟ ଗ୍ରନ୍ଥଟି ୧୧୫ ପୃଷ୍ଠା ଓ ମୂଲ୍ୟ ଏକଟଙ୍କା ଆଠଅଣା । ଏ କାହାଣୀ ଗୁଡ଼ିକ ଏପରି ସୁନ୍ଦର ଭାବେ ଲେଖା ହୋଇଛି ଯେ ଥରେ ଆରମ୍ଭ କଲେ ଶେଷ ନ କରି ରହିହୁଏ ନାହିଁ । ପୁରୁଣା କାଳର ରଜା, ରାଣୀ, ପାତ୍ର, ମନ୍ତ୍ରୀ, କଟୁଆଳ ପ୍ରଭୃତି କଥା ଆଜି କାଲିର ଅତ୍ୟାଧୁନିକ ପାଠକ ପାଇଁ ସ୍ୱାଦ୍ୟ ନହେଲେ ବି ମନୋରଞ୍ଜକ ହୋଇ ପାରୁଛି । ଗୋଟିଏ ଗୋଟିଏ କାହାଣୀର ବିଶେଷ ବର୍ଣ୍ଣନା ପଢ଼ିବାକୁ ଅତି ଭଲ ଲାଗେ । ଯଥା—

ଗୋଟିଏ ଧାଡ଼ିରେ; ରଜାଙ୍କ ବିଦାକୀ—ଟଙ୍କା ହଜାରେ, ପାଟଯୋଡ଼, ଖାରବଲ୍ଲୀ, ଖଡ଼ୁ, କଣ୍ଠି, ବାଟଖରଚ ପ୍ରଭୃତି ।

ଅନ୍ୟଧାଡ଼ିରେ--- ରଜା, ମନ୍ତ୍ରୀ, ସାଧବ, କଟୁଆଳ, ସାହୁ, ରପ୍ତତ, ରଜା ଉଆସ, ଦରବାର, ପୋଇଲୀ ପ୍ରଭୃତି ।

ଅନ୍ୟତ୍ର--- ଭାତଖାଉଁ, ଡ଼ାଲିଖାଉଁ, ଦୁଧଖାଉଁ, ମହୁରଖାଉଁ, ଆମ୍ବିଳ ଖାଉଁ, କାକରା ଖାଉଁ, ନାନମାନ ଖାଉଁ, ଚକୁଳି ଖାଉଁ ଇତ୍ୟାଦି ।

ପ୍ରହରାଜଙ୍କ 'ଉତ୍କଳ କାହାଣୀ' ଯେପରି ସର୍ବ ସାଧାରଣ ପଲ୍ଲୀବାସୀଙ୍କର ପ୍ରିୟ ହୋଇଥିଲା, ସେହି ସମୟରେ ଫକୀର ମୋହନଙ୍କ ଗଳ୍ପ ଓ ଉପନ୍ୟାସ, ପଲ୍ଲୀକବି ନନ୍ଦକିଶୋରଙ୍କର ପଲ୍ଲୀଗୀତ ମଧ୍ୟ ସେହି ସାହିତ୍ୟିକ ଆଦର୍ଶରେ ଗଢିଉଠି ଆଦୃତ ହେଉଥିଲା ।

୨ । **ବାଇମା'ହାନ୍ତ ପାଞ୍ଜି**—ପୁସ୍ତକର ପ୍ରଥମ ସଂସ୍କରଣର ନିବେଦନରେ ଗୋପାଳଚନ୍ଦ୍ର ଲେଖିଥିଲେ ---

" 'ବାଇମାହାନ୍ତ ପାଞ୍ଜି' ପ୍ରଥମେ ଧାରାବାହିକ ଭାବରେ 'ଉତ୍କଳ ସାହିତ୍ୟ'ରେ ଏକାଧିକ ବର୍ଷକାଳ ପ୍ରକାଶିତ ହୋଇଥିଲା । ପରେ ସୋନପୁର ମହାରାଜାଙ୍କ ଅର୍ଥ ସାହାଯ୍ୟରେ ଏହା ସନ ୧୯୧୩ ମସିହାରେ 'ବାଇମାହାନ୍ତ ପାଞ୍ଜି' ଓ ଦୁର୍ମୁଖ ଶର୍ମା ଛଦ୍ମ ନାମରେ ପ୍ରକାଶିତ ହୋଇଥିଲା ।"

ଏହାର ୨ୟ ସଂସ୍କରଣ ପୁଣି ୧୯୩୭ ଖ୍ରୀଷ୍ଟାବ୍ଦରେ 'ଉତ୍କଳ ସାହିତ୍ୟ ପ୍ରେସରେ' ଲେଖକ ଦୁର୍ମୁଖ ଶର୍ମା ଓରଫ ରାୟବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜ ବି.ଏଲ୍ ସାହିତ୍ୟ ବିଶାରଦ ନାମରେ ଛପାହେଲା ।

"ଏ ପୁସ୍ତକର ୨ୟ ସଂସ୍କରଣ ବିକ୍ରୀର ଛପା ଖରଚ ବାଦ୍ ବାକି ଯାହା ବଳିବ ସେଥିରେ ଗ୍ରନ୍ଥକାର ଓ ଶ୍ରୀମତୀ ପୀତାମ୍ବରୀ ଦେବୀଙ୍କର ଅଧେ ଓ ପ୍ରକାଶକ ଶ୍ରୀ ମହାନନ୍ଦକରଙ୍କର ଅଧେ ।" ବୋଲି ଲେଖା ଥିଲା ।

ପୁସ୍ତକଟି ଡିମାଇ ୧୯୧ ପୃଷ୍ଠାର ଲେଖା ଓ ମୂଲ୍ୟ ବାର ଅଣା ମାତ୍ର । ବିଷୟ-- ଆଧୁନିକ ଯୁଗର ଆମ ଗାଁ ଗହଳରେ ଯେଉଁ ସବୁ ନୂଆ ନୂଆ କଥା ଦେଖାଯାଏ ଏ ଗୁଡ଼ିକୁ ଚିହ୍ନ ଚିହ୍ନ କରି ଲେଖି ପ୍ରକାଶ କରିବା ଉଦ୍ଦେଶ୍ୟରେ ଗୋପାଳ ଚନ୍ଦ୍ର ସହଜ ସୁଖବୋଧ ଭାଷାରେ, ଏକ ଛଦ୍ମ ନାମ ଦୁର୍ମୁଖ ଶର୍ମା ନାମରେ ପ୍ରକାଶ କରିବା ପାଇଁ "ବାଇମାହାନ୍ତ ପାଞ୍ଜି"ର ଲେଖା ଆରମ୍ଭ କରିଥିଲେ । ସୁଯୋଗକୁ ବିଶ୍ୱନାଥଙ୍କ

ପତ୍ରିକା 'ଉତ୍କଳ ସାହିତ୍ୟ'ର ପୃଷ୍ଠା ଏ ଧରଣ ଲେଖା ପାଇଁ ଉନ୍ମୁକ୍ତ ଥିଲା । ଶର୍ମା ଗୋଟିଏ ଗୋଟିଏ ପାଞ୍ଜି ବଡ଼ା କରି ୧୫ଟି ବଡ଼ାର ଲେଖା ଧାରବାହିକ 'ଉତ୍କଳ ସାହିତ୍ୟ'ରେ ଛାପି ଥିଲେ ।

୧ମ ବଡାରେ—ନଜର ପରିଚୟ ଓ ଗ୍ରନ୍ଥକର୍ମ ସହ କେତେକ 'ଆଭରଣ' 'ଜପଟଲାଭ' ଓ 'ମାନ୍ୟଗଣ୍ୟ ହେବାଉପାୟ' ଲେଖାଥିଲା ।

୨ୟ ବଡାରେ – ସ୍ତ୍ରୀ ମାନଙ୍କୁ ଶିକ୍ଷିତା କଲେ ଦେଶର କ କ ଅନିଷ୍ଟ ହେବା ସଂଭବ— ତାହା ଲେଖାଥିଲା ।

୩ୟ—'ବିଧବା ବିବାହ'ର ଅପକାରିତା--

୪ର୍ଥ—ଆମ୍ବର ପ୍ରକାର ଭେଦ, ସ୍ୱାଦୁ ଇତ୍ୟାଦି--

୫ମ—ସାଧାରଣ ଜୀବନ ସମ୍ବନ୍ଧରେ କେତେକ କଥା--

୬ଷ୍ଠ—ମରହଟ୍ଟୀଙ୍କ ପ୍ରତି ଆଧୁନିକ ବ୍ୟକ୍ତିଙ୍କର କର୍ତ୍ତବ୍ୟ--

୭ମ—କଲିକତିଆ ନବ୍ୟ ସଭ୍ୟଙ୍କର ଖିଡମାଡି—

୮ମ—କଟକର ବଜାରଦରଠାରୁ ପୁଲିସ କେଶ ପର୍ଯ୍ୟନ୍ତ--

୯ମ—ପୁଣ୍ଡି ସହର ଓ ସିହାଙ୍ଗ ଅଞ୍ଚଳ କଥା--

୧୦ମ—ବାଇମାହାନ୍ତିଙ୍କ ସ୍ତ୍ରୀ କଥା, କବିତା ଲେଖା ଓ ରସିକତା ସମ୍ବନ୍ଧରେ—

୧୧ଶ—ସ୍ତ୍ରୀ ମାନଙ୍କ ଶ୍ରେଣୀ ବିଭାଗ ଓ ଗୁଣବର୍ଣ୍ଣନା

୧୨ଶ—ବାଇମାହାନ୍ତିଙ୍କର 'ଗୁରୁ--ଶିଷ୍ୟ' ସଂଭାଷଣ ।

୧୩ଶ – 'ଗୁରୁ-ଶିଷ୍ୟ' ଓ ଆଧୁନିକ ନବ୍ୟ ଶିକ୍ଷିତଙ୍କ ଅବସ୍ଥା ବର୍ଣ୍ଣନା

୧୪ଶ—ବାଇମାହାନ୍ତି ଓକିଲଙ୍କ ପାଖରେ ରହିବାପରେ ନୂଆ, ପୁରୁଣା ଓକିଲଙ୍କର କ୍ରମବିକାଶ ସମ୍ବନ୍ଧରେ ।

୧୫ଶ--ପାଞ୍ଜି ଲେଖା ସାରି ଦୁନିଆଁର ହାଲଚାଲ ଲେଖିବା ପାଇଁ ପ୍ରତିଜ୍ଞା । ଏଥିରେ ହାଣ୍ଡିଶାଳର ଭୁଆଷୁଣୀଠାରୁ ସ୍କୁଲ ଗୁରୁ ଓ ଓକିଲଙ୍କ ବୁଦ୍ଧି ବିଦ୍ୟା କଥା ମଧ୍ୟ ବର୍ଣ୍ଣିତ ଅଛି । ପ୍ରହରାଜେ ଜଣେ ପ୍ରବୀଣ ଓକିଲ ଥିବାରୁ ଆଇନ ଗତ କଟକଣା, ଦୋଷାଦୋଷ ସବୁ ଉତ୍ତମ ରୂପେ ବର୍ଣ୍ଣନା କରିଛନ୍ତି । ଜଣେ ଶିକ୍ଷିତ ବ୍ୟକ୍ତି ଏ ସବୁରୁ କିଛି ସାଧାରଣଜ୍ଞାନ ମଧ୍ୟ ଜାଣିବାକୁ ପାଇବ ।

'ଉତ୍କଳ ସାହିତ୍ୟ'ରେ ଏହି ଲେଖାପଢ଼ି ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ—ରାଧାନାଥଙ୍କର ସାର୍ଟିଫିକେଟ--

"ଓଡ଼ିଆ ଭାଷାରେ ଆବାଳବୃଦ୍ଧବନିତା ବୁଝିବା ଭଳି ଭାଷା ଲେଖି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତୁମେ ଏକ ବିଶିଷ୍ଟ ସ୍ଥାନ ଦଖଲ କରି ଯଶସ୍ୱୀ ହୋଇଅଛ ।"

୩ । **ବାଇଦାସଙ୍କ ଭଜନ**—ଏହି ନାମରେ ଗୋପାଳ ଚନ୍ଦ୍ର ପ୍ରହରାଜ ୧୯୦୫।୦୬ ମଧ୍ୟରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ୫।୬ଟି ଗୀତ ପ୍ରକାଶ କଲେ । "ଏ ଭଜନ ଗୁଡ଼ିକ କେବଳ ବୃଦ୍ଧ ବୟସରେ ବୋଲି ମନବୋଧ କରିବା" ଉଦ୍ଦେଶ୍ୟରେ ରଚିତ ହୋଇଥିଲା । ପରେ ଏଥି ସହିତ ଆଉ କେତୋଟି ଭଜନ ସଂଯୋଗ କଲେ, ଏହି ଭଜନ ଗୁଡ଼ିକୁ ଶୁଣି ଶୁଣି ତାଙ୍କର ଶାଳୀ ପୀତାମ୍ବରୀ ଦେବୀ ନିଜେ ଆଉ କେତୋଟି ଭଜନ ଓ ଶିଶୁଗୀତ ଏବଂ କୋଇଲି, ଦଳପାବସନ୍ତ ପ୍ରଭୃତି ଗୀତ ଲେଖିଥିଲେ । ଏ ଗୀତ ଗୁଡ଼ିକୁ ଗୋପାଳ ଚନ୍ଦ୍ର ସ୍ଥାନେ ସ୍ଥାନେ ପରିବର୍ତ୍ତନ ଓ ସଂଶୋଧନ କରି ନିଜଲେଖା ସଙ୍ଗେ ପୁସ୍ତକାକାରରେ ୧୯୨୬ ଖ୍ରୀଷ୍ଟାବ୍ଦରେ ପ୍ରକାଶ କରିଥିଲେ ।

ଏ ପୁସ୍ତକରେ ଗୋପାଳଚନ୍ଦ୍ରଙ୍କର ୧୧ଟି ଭଜନ ଓ ପୀତାମ୍ବରୀଙ୍କର ୨୦ଟି ଭଜନ ଓ ଶିଶୁଗୀତ ଅଛି । ୩୪ ପୃଷ୍ଠା ବିଶିଷ୍ଟ ଏହି ବହିର ମୂଲ୍ୟ ଥିଲା ଛଅଅଣା ମାତ୍ର । ଏହାର 'ନିବେଦନ'ରେ ପ୍ରହରାଜେ ଲେଖିଥିଲେ "ଏ ଗୁଡ଼ିକ ମୋ ପରି ଅନ୍ୟ ଜଣେ କେହି ଅଶାନ୍ତ, ଦୁଃଖୀର ମନରେ ଆନନ୍ଦ ଜାତ କରାଇଲେ ମୋର ମନୋବାଞ୍ଛା ପୂରଣ ହେବ । ଏହି ଲେଖା ପାଇଁ ସାହିତ୍ୟ କ୍ଷେତ୍ରରେ ଆସନ ପାଇବା ମୁଁ କିମ୍ବା ପୀତାମ୍ବରୀ ଦେବୀ ଆଶା କରିନାହୁଁ । ଏହା ଭକ୍ତ ଯୋଗୀଙ୍କ ପାଇଁ ଅଭିପ୍ରେତ ଓ ସେମାନେ ଆସ୍ୱାଦନ କଲେ ଯଥେଷ୍ଟ ।"

୪ । **ଭାଗବତ ଟୁଙ୍ଗୀରେ ସନ୍ଧ୍ୟା**—୧୯୦୩ ଖ୍ରୀଷ୍ଟାବ୍ଦରେ ଏ ପୁସ୍ତକର ୧ମ ସଂସ୍କରଣ ଛପା ହେଲା । କ୍ରମେ ଆଉ ଛଅଟି ସଂସ୍କରଣ ହୋଇ ୧୯୪୯ରେ ଏହାର ୪ର୍ଥ ସଂସ୍କରଣ କଟକ ଉତ୍କଳ

ସାହିତ୍ୟ ପ୍ରେସର ତତ୍ତ୍ୱାବଧାରିକା ଶ୍ରୀମତୀ ରମଳା କରଙ୍କ ଦ୍ୱାରା ପ୍ରକାଶ ପାଇଲା । ୧ମ ସଂସ୍କରଣର ଭୂମିକାରେ ପ୍ରହରାଜେ ଲେଖିଛନ୍ତି---

୧- ପାରଳାର ବିଖ୍ୟାତ ରାଜପୁତ୍ର ପଦ୍ମନାଭ ନାରାୟଣ ଦେବ ଓ ମୟୂରଭଞ୍ଜର ମହାରାଜ ରାମଚନ୍ଦ୍ରଦେବଙ୍କ ସାହାଯ୍ୟରୁ ଏହା ଛପାହେଲା ।

୨- ଇଂରାଜୀ କବି 'ଓଲିଭର ଓ୍ୱେଣ୍ଡେଲ ହୋମସ୍'ଙ୍କ ଲେଖାନୁସରଣରେ ଏ ପୁସ୍ତକର ବିଷୟବସ୍ତୁ ଲିଖିତ ।

୩- ଜଣେ ଏମ.ଏ.ବି. ଏଲ୍ ଓ ଆଉଜଣେ ବି.ଏ. ବନ୍ଧୁ ଏହାର ଆବଶ୍ୟକୀୟ ସଂଶୋଧନ କରିଥିଲେ ।

୪- ପୁସ୍ତକ ଲିଖିତ ବିଷୟାବଳୀ ଅନ୍ୟ ବନ୍ଧୁଙ୍କଠାରୁ ମଧ୍ୟ ସଂଗ୍ରହ କରା ଯାଇଥିଲା ।

**ବିଷୟବସ୍ତୁ ବିଜ୍ଞାପନ**—ଗାଁର ଝୁଙ୍ଗୀରେ ସନ୍ଧ୍ୟାବେଳେ ଏକତ୍ର ହୁଅନ୍ତି ଓ ନାନା ବିଷୟରେ ଆଲୋଚନା ଚାଲେ । ଶିକ୍ଷିତ, ଅଶିକ୍ଷିତ, ଅର୍ଦ୍ଧଶିକ୍ଷିତ, ନବ୍ୟଶିକ୍ଷିତ, ଦୂର ଶିକ୍ଷିତ, ଧର୍ମୀ, ଅଧର୍ମୀ, ବିଧର୍ମୀ ସମସ୍ତେ ଆସନ୍ତି ଇତ୍ୟାଦି ।

**ପ୍ରଥମସନ୍ଧ୍ୟା**ରେ ନିମ୍ନ ବ୍ୟକ୍ତିମାନେ ଯୋଗ ଦେଇଥିଲେ--- ପଣ୍ଡିତ, ମାଷ୍ଟର, ମୁକ୍ତାର, ମହାଜନ, ମସ୍ତରାମ ପାଗଳ ଓ ଶର୍ମା— ପ୍ରତ୍ୟେକ ବ୍ୟକ୍ତି ସଂକ୍ଷିପ୍ତ ପରିଚୟ ଓ ଆଳାପ ।

**ଦ୍ୱିତୀୟ ସନ୍ଧ୍ୟା**ରେ ପ୍ରୋକ୍ତ ଲୋକମାନଙ୍କ ବ୍ୟତୀତ ଜମିଦାର ଥିଲେ ଓ ସଭାପତିଙ୍କ ଥିଏଟର ହେବାର ବନ୍ଦୋବସ୍ତ ହେଲା ।

**ତୃତୀୟସନ୍ଧ୍ୟା**ରେ ଜମିଦାରଙ୍କ ତହସିଲଦାର ଆସିଲେ-- କୃଷକଥା, ସଂକୀର୍ତ୍ତନ କଥା ।

**ଚତୁର୍ଥ ସନ୍ଧ୍ୟା**ରେ ଗ୍ରାମର ଜଣେ ମୁକ୍ତାରଙ୍କ ଘରେ ଭୋଜି-- ନବାଗନ୍ତୁକ ମାନଙ୍କର ପରିଚୟ ଓ ଶର୍ମାଙ୍କର ପରିଚୟ ବର୍ଣ୍ଣନା--କବିରାଜ ଓ ଡାକ୍ତରଙ୍କର ଶିକ୍ଷା ବିଷୟରେ ଚର୍ଚ୍ଚା ।

**ପଞ୍ଚମସନ୍ଧ୍ୟା**ରେ କେତେକ ନୂଆ ସଭ୍ୟ ଆସି ଯୋଗ ଦେଲେ' ତାଙ୍କ ଭିତରୁ ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ପଦ୍ୟ ପାଠକରାଗଲା । ସେଥିରେ ଦୁଇଟି ଦୁଃଖୀଙ୍କର ଅଦ୍ଭୁତ ମିଳନ ବିଷୟ ବର୍ଣ୍ଣନା କରାଯାଇଥିଲା ।

**ଷଷ୍ଠ ସନ୍ଧ୍ୟା**ରେ ସ୍ତ୍ରୀ ଶିକ୍ଷା, ଶାଶୁଘରେ ନୂଆ ବୋହୂର ଗଞ୍ଜଣା ଶେଷରେ ବାବାଜୀଙ୍କ ଗଞ୍ଜେଇଖିଆର ଆଲୋଚନା ହେଲା ।

**ସପ୍ତମ ସନ୍ଧ୍ୟା**ରେ ହିନ୍ଦୁ ଓ ମୁସଲମାନ ଧର୍ମ ଓ ଦେବଦେବୀଙ୍କର ଚର୍ଚ୍ଚା ।

**ଅଷ୍ଟମ ସନ୍ଧ୍ୟା** ଇଂରାଜୀ, ଓଡ଼ିଆ କବିତା ଓ ଡିକ୍ସନାରୀର ଆଲୋଚନା--ସାହେବଙ୍କର 'ଜଗନ୍ନାଥ' କହିବା, ଓଡ଼ିଆ, ବଙ୍ଗାଳିଙ୍କର ପରିଚୟ ଅତି ଚମତ୍କାର ।

**ନବମ ସନ୍ଧ୍ୟା** ପଣ୍ଡିତଙ୍କର ତାଳପତ୍ର ଲିଖିତ ପଦ୍ୟର ଆବୃତ୍ତି । 'ନବୋଢ଼ାମା'ରେ ଈଶ୍ୱର, ପାର୍ବତୀଙ୍କର ଲକ୍ଷଣ ।

**ଦଶମ ସନ୍ଧ୍ୟା** ମସ୍ତରାମଙ୍କର ନିଜ ସ୍ତ୍ରୀର ପରିବର୍ତ୍ତନ କଥା, କଂଗ୍ରେସରେ ପ୍ରସ୍ତାବପତ୍ର ପାଠ ।

( ଦଶଗୋଟି ସନ୍ଧ୍ୟାରେ ଏହାର ପରିସମାପ୍ତି )

୫ । **ଢଗ-ଢମାଳୀ ବଚନ**—ପ୍ରହରାଜେ ପୀତାମ୍ବରୀଦେବୀଙ୍କ ସହିତ ଏ ଗ୍ରନ୍ଥର ୧ମ ଓ ୨ୟ ଭାଗ ପ୍ରକାଶ କରିଥିଲେ-- ଏଥିରେ ଓଡ଼ିଶାର ଢଗ-ଢମାଳୀ, ପ୍ରବନ୍ଧ ସାରବଚନ ଓ ଶାସ୍ତ୍ରବଚନ ପ୍ରଭୃତି ଅଛି । 'ଅ' ଠାରୁ 'ହ' ପର୍ଯ୍ୟନ୍ତ ପ୍ରତ୍ୟେକ ଅକ୍ଷର ନେଇ ସବୁ ପ୍ରବଚନ ଆଜି ଲିଖିତ ହୋଇଛି ଉକ୍ତ ୫ଟି ଛପା ପୁସ୍ତକ ବ୍ୟତୀତ ଗୋପାଳ ପ୍ରହରାଜଙ୍କର ଅନେକ ଗଦ୍ୟଲେଖା 'ଉତ୍କଳ ସାହିତ୍ୟ' ମାସିକରେ ଧାରାବାହିକ ରୂପେ ପ୍ରକାଶିତ ହୋଇଥିଲା । ସେ ଗୁଡ଼ିକ :--- (କ) ଦୁନିଆଁର ହାଲଚାଲ (ଖ) ଆମଘରରର ହାଲଚାଲ (ଗ) ନନାଙ୍କ ବସ୍ତାନି (ଘ) ବାଇନାଙ୍କ ବୁଜୁଲି (ଙ) ମିଆଁ ସାହେବଙ୍କ ରୋଜନାମଚା (ଚ) ଜେଜେ ବାପାଙ୍କ ଝୁଣି ମୁଣି (ଛ) 'ଦୁନିଆଁର ରୀତି'— ଏ ସବୁ ସ୍ୱତନ୍ତ୍ର ପୁସ୍ତକାକାରରେ ଛପା ହୋଇନାହିଁ ।

ଗୋପାଳଚନ୍ଦ୍ର ମାଟ୍ରିକ ପଢୁଥିବା ସମୟରେ ୧୮୮୫ରେ ନିଜର ମା'ଙ୍କୁ ହରାଇଲେ । ଉପରେ ସେ ଖଣ୍ଡେ ଛୋଟିଆ ବହି "ମାତୃବିୟୋଗ" ଲେଖିଥିଲେ । ସେ ତାଙ୍କର ପ୍ରଥମ କବିତା । କିନ୍ତୁ

ତାହା ଏବେ ଦୁଷ୍ପ୍ରାପ୍ୟ ହୋଇଅଛି । ଏସବୁ ସାଉଁଟା ସାଉଁଟି କରି ପ୍ରହରାଜ ଗ୍ରନ୍ଥାବଳୀ ସଂକଳିତ ହେଲେ ଓଡ଼ିଆ ଭାଷା ଓ ସାହିତ୍ୟର ବିଶେଷ ଉପକାର ହେବ । ଫକୀରମୋହନଙ୍କ ଉକ୍ତି—

'ପାଇଲି ଅସଲ ଚିଜ ହେଉ ତାହା ଛଡ଼ା,
ନିରୋଳ ଓଡ଼ିଆ କଥା ଥିଲା ମୋର ଲୋଡ଼ା,
ପଢ଼ିଲି ସାହିତ୍ୟ ବସି ପହରେକ ଆଜ;
ଠିକ୍ ଠିକ୍ ଗାଇଯାଇଛନ୍ତି 'ପ୍ରହରାଜ'

(—'ଉତ୍କଳଭ୍ରମଣ')

ପ୍ରହରାଜଙ୍କ ସେଇ ନିରୋଳ ଓଡ଼ିଆ କଥା ଓ ନିଚୋଳ ଓଡ଼ିଆ ଭାଷା କଣ ଲୋକଲୋଚନକୁ ଆସିବ ନାହିଁ ?



# ମହକ ବାସନା

**ଶ୍ରୀ ହରିହର ମହାପାତ୍ର,**
ପୂର୍ବତନ ଜଷ୍ଟିସ୍, ( ପାଟନା ହାଇକୋର୍ଟ )

ଗୋପାଳ ପ୍ରହରାଜଙ୍କ ନାମ ବାଲ୍ୟ ବୟସରେ ପ୍ରଥମେ ଶୁଣିବା ଘଟନା ମନରୁ ପାଶୋର ଯାଇନାହିଁ । ସେ କଥା ମନେ ନଥାନ୍ତା, ଯଦି ତାଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କରେ ଆସିବାର ସୁବିଧା ମିଳିନଥାନ୍ତା । ସ୍ମରଣର ଗଭୀର ଦେଶରେ ଲଭିଯାଇଥିବା କ୍ଷୀଣ ଅନୁଭୂତି ବେଳେ ବେଳେ ହଠାତ୍ ଜାଗି ଉଠେ, ଅଚେତନ ସମ୍ବାଦର ସଙ୍କେତରେ ।

ପିଲାଦିନେ ଗାଁରେ ଥିବାବେଳେ, କେହି ଗ୍ରାମବାସୀ ପୁରୁଷ, କଟକରୁ ଫେରିଲେ, ତାଙ୍କର ପୌଢ଼ି ପ୍ରବଚନ ଆରମ୍ଭ ହୁଏ ଗାଁ ପୋଖରୀ ପାହାଚରେ କିମ୍ବା କୌଣସି ପୁରୁଖାଲୋକଙ୍କ ପିଣ୍ଡା ଉପରେ । ଦୋକାନ-ମାନଙ୍କରେ କଅଣ ଦେଖିଲେ, କାହା ସହିତ ସହରରେ ଦେଖାହେଲା, ବା କଅଣ କଥାବାର୍ତ୍ତା ହେଲା, ଇତ୍ୟାଦି ଇତ୍ୟାଦି ଗାଁ ଲୋକଙ୍କ ପାଖରେ ଅତି ଲୋଭନୀୟ କାହାଣୀ । ଯାହା ସାଧାରଣଙ୍କ ପାଖରେ ଦୁର୍ଲଭ, ସେଥିରେ ଲୋଭ ରହିବା ସ୍ୱାଭାବିକ । ସେ ସମୟରେ କଟକ ଯିବା ଆସିବା ଅତି ଅଳ୍ପ ଗାଆଁବାଲାଙ୍କ ଭାଗ୍ୟରେ ଘଟୁଥିଲା । କଟକରେ କାହାର କିଛି କାମ ନଥିଲା । ସୌଖୀନରେ ଯିବାର ସମ୍ବଳ ଥିଲା ଜଣେ ଦି'ଜଣଙ୍କର, କିନ୍ତୁ ସେ ସମ୍ବଳ ଗୋଟିପୁଅ ନାଚ, ଗାଁ ଠାକୁରାଣୀଙ୍କ ପାଖରେ ଭୋଜିରେ ଖଟାଇଲେ ବେଶୀ ପ୍ରତିଷ୍ଠା ଓ ଆଭିଜାତ୍ୟ ମିଳୁଥିଲା । ସେଥିପାଇଁ ବର୍ଷେ ଦିବର୍ଷରେ କାଁ ଭାଁ ଜଣେ ଅଧେ କଟକ ଆସୁଥିଲେ, କୌଣସି କାମର ଗରଜ ପଡ଼ିଲେ । କାମ ଭିତରେ ପ୍ରାଧାନ୍ୟ ଥିଲା ମାଲିମକଦ୍ଦମାର-ତା

ପୁଣି ନଜର ନୁହେଁ, ଅପରର ମକଦ୍ଦମାରେ ମାତବର କରିବାର ସୁଯୋଗ ମିଳିଲେ, କେବଳ ଖର୍ଚ୍ଚ ଉପରୁ ଉପରୁ ଉଠେ ନାହିଁ, ପାରିବାର ପଣିଆ ଅଧିକରୁ ଅଧିକ ପ୍ରକାଶ ପାଏ। ଏହିଥିଲା ଗାଁମାନଙ୍କରେ କଟକ ଦୌଡ଼ର ଦିଗନ୍ତ।

ଆମ ଗାଁ ଲୋକଙ୍କର ମାଲିମକଦ୍ଦମା କ୍ୱଚିତ୍ ପୁରୀରେ ହେଉଥିଲେ ବି ଅଧିକାଂଶ କଟକ ଆସୁଥିଲା। ଧନର ପ୍ରସର ଓ ଅର୍ଥବଳ ପାଞ୍ଚକୋଶର ପରିଧି ଟପିବା କାଠିକର ପାଠ ଥିଲା। ଗାଁରେ ବେଳେ ବେଳେ ବଡ଼ ବିବାଦ ମୁଣ୍ଡ ଟେକୁଥିଲା, ଜମିଦାର (ପାଇକପଡ଼ା 'ରଜା' ଘର) ଖଜଣା ଓ ଅନ୍ୟ ଶୋଷଣ ପାଇଁ କନ୍ଦଳ ଲଗାଇଲେ। ସମସ୍ତଙ୍କ ଜମିଖଜଣା କୋଠରେ ଆଦାୟ ହେଉଥିଲା। ଗାଁବାଲା ସବୁ ସମୂହରେ ଦାୟୀଥିଲେ ଜମିଦାରଙ୍କ ପାଖରେ। ମକଦ୍ଦମା କରୁଥିଲେ ଜମିଦାର ସମସ୍ତ ଗ୍ରାମବାସୀଙ୍କ ନାମରେ। ଏକା ବଜାରୀକେ ସମସ୍ତେ ଗଣ୍ଠା। ଜମିଦାରଙ୍କ ବଳ ପୁଲିସ ସମୁଦ୍ର ଚଢ଼ଉପର। କଚେରୀକୁ ଦଉଡ଼େଇବାରେ ଗାଁବାଲାଙ୍କୁ ଘାଇଲ କରିବା ସହଜ ହେଉଥିଲା। ପୁରୀ ଦେଉଳ ପ୍ରଦକ୍ଷିଣ କରାଇ କାଠଯୋଡ଼ ପାଣି ନପିଆଇଲେ ଜମିଦାର ତହସିଲଦାରଙ୍କ ଦର୍ପ ମଳନ ଦିଶିଯାଉଥିଲା। ସେଥିପାଇଁ କଟକ ଡାକରା ଆସିଯାଏ ଗାଁରେ ଚହଲ ପକାଇବାପାଇଁ। ମସୁଧା ବସେ, କିଏ ଯିବ କଟକ, ଖର୍ଚ୍ଚ ତୁଲାଯିବ କେଉଁଠାରୁ, ଓକିଲ ଦେବା କାହାକୁ। ଏହିପରି ଏକ ପରିସ୍ଥିତିରେ ଗାଁ କଳସ ତୋଳିଲା ଆମ ପଡ଼ିଶା ଘର, ମୋର ଦଦେଇ ଲେଖା, ଭୁବନେଶ୍ୱର ବାହ୍ମଣପଡ଼ିଙ୍କ ଆଡ଼େ। ସେ ଯିବେ କଟକ, ମକଦ୍ଦମା ତଦବିର୍ କରିବେ, ଗ୍ରାମବାସୀଙ୍କ ତରଫରୁ। ବୟସରେ ବୃଦ୍ଧ, ଜାତିରେ ଗରିଷ୍ଠ, ମାତବରରେ ସିଦ୍ଧ। ଆପଦ ବିପଦରେ ଟୋକା ଟାକେଳିଆଙ୍କ ହିମତ ଧିନା ଦୋହଲି ଯିବ, କିନ୍ତୁ ପୁରୁଖା ଲୋକ ବାହ୍ମଣପଡ଼ି ଦେହର ଟାଣ ଅପେକ୍ଷା ଅଭିଜ୍ଞତାର କଳେବଳେ କଳକଣ୍ଠ (ପାଇକପଡ଼ା 'ରଜା' ଘର ବଙ୍ଗଳାରେ ଥିଲେ) ପେଞ୍ଚର ମୁକାବିଲା କରି ପାରିବେ ବୋଲି ଗାଁରେ ଠେକ ଥିଲା। ସେ ତାରିଖରୁ କଟକ ଯିବା ପାଇଁ ଆୟୋଜନ ଆରମ୍ଭ ହୁଏ, ଗାଁ କୋଠ ନଡ଼ିଆ ତୋଳାରୁ। ନଡ଼ିଆ ଅର୍ଥ ସଂଗ୍ରହର ଏକମାତ୍ର ସାମଗ୍ରୀ। ତାପଛକୁ ଧୋବାକୁ ଡିହା ହଳକ ବାସିଧୋବ କରିବାକୁ ତାଗିଦ୍। ଶେଷରେ ଲୁଗାପୁଟଳି ସଜଡ଼ା ଓ କରଟରେ ଅଫିମଭରା। ଏସବୁ ବନ୍ଦୋବସ୍ତ

ତାଙ୍କ ବଖୁରିଆ ଘର ଭିତର ଅପେକ୍ଷା ବାହାରେ ବେଶୀ ଚହଲ ପକାଉଥିଲା । ଆମେ ପିଲାମାନେ ସୁଦ୍ଧା ତାର ସବୁ ସୁରାକ ଶୁଣୁଥିଲୁ । ପଡ଼ିଶା ଘରେ ମାଛ ଭଜା ହେଲେ, ବାସନା ଯେପରି ସମସ୍ତଙ୍କର ଉପଭୋଗ୍ୟ ହୁଏ, କଟକ ଯିବାର ସଜବାଜରେ ଗାଁର ଅନେକ ଲୋକ ଅଳ୍ପ ବହୁତ ଅହେତୁକ ଭାଗୀଦାର ହେଉଥାନ୍ତି । ଲୁଗାପଟା, ଅଲୋଡ଼ା ସଙ୍ଗୋଳା ପାଇଁ କାହାରି ସମ୍ପର୍କର ଅଭାବ ନ ଥିଲା । ପଇସା କିଛି ଲୋଡ଼ା ପଡ଼ୁଥିଲେ ଆଗ୍ରହ ସେହି ଅନୁପାତରେ କମିଯାଉଥାନ୍ତା । ଶେଷକୁ ପାଞ୍ଜୀ ଦିନ ଦେଖି, ଗୋପୀନାଥଙ୍କ ଦେଉଳରେ ମୁଣ୍ଡି ଆମାରି, ଚନ୍ଦନ ଫୁଲ ସର୍ବସ୍ୱ ହୋଇ ବାହାରିଲେ ବାହ୍ମଣପଣ୍ଡା କଟକ । ବଡ଼ମାନଙ୍କ ପଛରେ ଆମେ ପିଲାଏ କୌତୂହଳର ସ୍ରୋତ ଅବାଧ ରଖିବା ଗାଉଁଲି ରୀତି । ଦେଉଳ ପାଖ ଅପାଶୋରି ଭୂଇଁ । ପିଲାଙ୍କ ଖେଳ ଚକରାଳ ପାଇଁ ଯେତେ ପରିଚିତ, ଗାଁର ଇଷ୍ଟ ଅନିଷ୍ଟ ସବୁ ନିଷ୍ପତ୍ତିରେ ସେତିକି ମୁଖରିତ ! ବଉଳ ଗଛର ଗହଳ ସାମିଆନା ତଳେ କଟକ ଯାତ୍ରୀଙ୍କ ପାଦ ପ୍ରାପ୍ତ ଅଚଳ—ଏପଟକୁ ଥରେ, ସେପଟକୁ ଥରେ ଗୃହସ୍ଥଆଏନ୍ତି— ପଚାରନ୍ତି, କଅଣ କାହାକୁ ଓକିଲ କରିବା ଠିକ ହେଲା ? ଜଣେ ପଛରୁ କହିଲେ—ଆଉ ପୁଣି କାହିଁକି ଦୋଦପାଞ୍ଚ ହେଉଛ ? କଥା ତ ହେଲା, ଆଗ ଗୋପାଳ ପ୍ରହରାଜଙ୍କ ପାଖକୁ ଯିବ—ତାଙ୍କ ପରାମର୍ଶରେ ଯାହା କରିବ । ହଉ କହି ବାହ୍ମଣପଣ୍ଡା ମୁହାଁଇଲେ ତାଙ୍କ ରାସ୍ତାରେ । ଆଉ ସମସ୍ତେ ଫେରିଲେ ଯେ ଯାହା ଘରକୁ । ବାକି ରହିଲୁ ଆମେ ପିଲାଏ, ନିଜ ଧନ୍ଦାରେ ଗୋପୀନାଥ ଦେବଙ୍କ ପରାକ୍ରମ ପରୀକ୍ଷା କରିବା ପାଇଁ ଠାକୁରଙ୍କ ଦୃଷ୍ଟି ନ ରହିଲେ ଖେଳରେ ଜିତିବା କଅଣ ସହଜ କଥା ।

ଗୋପାଳ ପହରାଜ କିଏ, ମକଦ୍ଦମା କଅଣ, ଖର୍ଚ୍ଚ କେତେ— ସେଥିରେ ଆମର ଯାଏ କେତେ ଆସେ କେତେ । ଚହଲରେ ଆମର ଆମୋଦ । ଧୋବ ଧଉଳିଆ ହୋଇ କଟକ ବାହାରିବା ଦୃଶ୍ୟ ଆମ ପକ୍ଷରେ ଥିଲା ଯଥେଷ୍ଟ ଆକର୍ଷଣ । ସେହି ପୃଷ୍ଠଭୂମିରେ ଯାହାଙ୍କ ନାମ ଘୋଷିତ ହେଲା, ସେ ଗୋପାଳ ପହରାଜ କିଏ, ତାହା ଜାଣିବାର ଅବକାଶ ମିଳିଲା ବହୁବର୍ଷ ପରେ ।

କେତେଦିନପରେ ବାହ୍ମଣପଡ଼ ଗାଁକୁ ବାହୁଡ଼ିଲେ । ଗଲାବେଳର ପୋଟଳଟି ବର୍ତ୍ତମାନ ଗଣ୍ଠିରିଟିଏ । ସେଥିରେ ଥିଲା ଫୁଲକୋବି, କମଳା ଲେମ୍ବୁ, ବିଲାତିଆଳୁ, ପିଆଜ । ପରିମାଣରେ କମ କିନ୍ତୁ ପ୍ରକାରରେ ଭିନ୍ନ । ଏତକଥିଲା କଟକରେ ସଂକ୍ଷିପ୍ତ ଅଧିବାସର ସଙ୍କେତ । ଗାଁରେ ପହଞ୍ଚୁ ପହଞ୍ଚୁ ପ୍ରତ୍ୟାବର୍ତ୍ତନର ବାର୍ତ୍ତା ଖେଳିଗଲା । କଅଣ ଆଣିଛନ୍ତି ଦେଖିବା ପାଇଁ ଲୋକଙ୍କର ଯେତେ ଆଗ୍ରହ, ତାଠାରୁ ଢ଼େର କମ ଥିଲା ଇଚ୍ଛା ଜାଣିବା ପାଇଁ ଜମିଦାର ମକଦ୍ଦମା କଅଣ ହେଲା । ସେ ଇତିବୃତ୍ତି ପାଇଁ ସମସ୍ତ ପଳାଇ ଯାଉ ନ ଥିଲା । ନାଲି ଧୂଳିରେ ପାଟଳ ପିନ୍ଧା ଲୁଗା, ମଳିଆ ଗୁଦର ହେଖାଉ ଥିଲା କଟକରେ ରହଣି କେତେଦିନ ହୋଇଛି । ପଣରିବା ବଣ୍ଟା ହେଲା, ଗଡ଼ଜପୁର ଅଭିମାନରେ । କାହା ଭାଗରେ ପାଖୁଡ଼ିଏ କୋବି ତ କାହା କପାଳେ ଫାଳେ କମଳା । କେହି ଦୁଇଟା ଗୋଲଆଳୁ ପାଇଲାବେଳକୁ, ଦୁଇ ତିନଟା କୁଜ ପିଆଜ ଆଉ ଜଣଙ୍କ ଅଣ୍ଟିରେ । କେହି କହି ପାରିବେ ନାହିଁ ଗାଁ କୋଠ ପଇସା କେବଳ ଜଣକର ଭୁଷ୍ଟିରେ ଯାଇଛି । ଏସବୁ ବଦାପନା, ଆଗାମୀ ସନ୍ଧ୍ୟାବେଳ ବୈଠକର ପୂର୍ବାଭାସ ।

ସାୟାହ୍ନ ନିତ୍ୟକର୍ମ ସାରି, ବାହ୍ମଣପଡ଼ଏ ଯେତେବେଳେ ପିଣ୍ଡାକୁ ଆସନ୍ତି, ଗଲି ଆସିଲି ଲୋକେ ମୁହଁ ମାରିବା ଛଡ଼ା, ସାତ ଆଠଜଣ ଅବଗାହି ଲୋକେ ବସିଥାନ୍ତି କଥାରେ ଲଥା ପକାଇବାକୁ । ଆମେ ପାଖ ପଡ଼ଶା ଘର ପିଲି କେତେଜଣ ନାକେଇଥାଉ ପିଣ୍ଡା ତଳେ, ବୁଝିବା ଅପେକ୍ଷା ଶୁଣିବା ଲୋଭରେ । କଅଣ ସବୁ ହେଲି କଟକରେ, ଖିନ୍‌ଖିନ୍ କରି ବଖାଣୁ ଥାଆନ୍ତି । ଗୋଟିଏ କଥା ସେତେବେଳେ ଓ ଅଦ୍ୟାପି ମନରେ ଲାଖି ରହିଛି ।

ଯେଉଁଦିନ କଟକରେ ବାହ୍ମଣପଡ଼ ପହଞ୍ଚିଲେ, ସନ୍ଧ୍ୟାବେଳକୁ ଯାଇଥିଲେ ଗୋପାଳ ପ୍ରହରାଜଙ୍କ ଘରକୁ । ଆଉ କେତେଜଣ ମହକିଲଙ୍କ ସଙ୍ଗରେ ତାଙ୍କ ବୈଠକଖାନାରେ ଅପେକ୍ଷା କରିଥିଲେ । ପହରାଜେ ପଦାକୁ ଯାଇଥିଲେ । ବସାକୁ ଫେରି ଓକିଲ-ମହକିଲ ସମ୍ଭାଷଣ ପୂର୍ବରୁ ଆଗ ଖୋଲି ଦେଲେ, ତାଙ୍କ ହାତ ବାକ୍ସ—"ଓହୋ, କି ବାସନା । ଅତର

ଗନ୍ଧରେ ଘର ଗୋଟାକ ମହକ ଉଠିଲା । ଇମିତ ବାସନା ଆଜ କୁ ଓକଲ ଘରେ ପୃଷ୍ଠରେ କ ଟକରେ ମୁଁ ଦେଖିନାହିଁ” । ଏହିକଥା ଉପରେ ଟିପ୍ପଣୀ ଗୁଲଲ କେତେ ପ୍ରକାରେ ଓ କେତେ ମୁଖରେ । ସେ ସବୁ ମୋ ମନେ ନାହିଁ । କନ୍ତୁ ମନେ ରହିଛି ସେହି ହାତ ବାକ୍ସ ଖୋଲ ସୁଗନ୍ଧ ସମୃଦ୍ଧି, ଯାହା ବୋଧହୁଏ କୌଶଳୀ ଗୋପାଳଚନ୍ଦ୍ରଙ୍କର ବୃତ୍ତି ବୃଦ୍ଧିର ଗୋଟିଏ ସହଜ ଅବଲମ୍ବନ ହୋଇଥିବ । ଗୁଣ୍ଡ ବାଇଦ ସହସ୍ର-କୋଶ । ମହକ ବାସନା କଥା ଆମ ଗାଁରେ ତ ବ୍ୟାପିଗଲା, ଆଜ କେତେ ଗାଁକୁ ମଧ୍ୟ ମାଡ଼ି ଯାଇଥିବ ।

ଏହି କଥାଟି ମୋ ମନେ ପଡ଼ିଲା, ଅନେକ ବର୍ଷ ପରେ ଯେବେ ଶ୍ରୀଯୁକ୍ତ ରାୟବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଭାଷାକୋଷ ଗଲା ଘରେ । ସେତେବେଳକୁ କଟକରେ ମୁଁ ଓକାଲତି କରୁଥାଏ । ପ୍ରହରାଜଙ୍କ ସଙ୍ଗେ ଅନେକ କ୍ଷେତ୍ରରେ ସମ୍ପର୍କ--କେତେବେଳେ ନିବିଡ଼, କେତେବେଳେ ତିକ୍ତ, କେତେବେଳେ ବା ଉଦାସୀନ । ତିକ୍ତ ହେବାର କାରଣ, ସେ ଶାସକଗୋଷ୍ଠୀ ସହାୟକ Extreem rightist ଆଜି ଆମେ ଥାଉ near centre, ଯଦି କଂଗ୍ରେସ ଲୋକଙ୍କୁ ସେତେବେଳର leftist ଧରାଯାଏ । ମୋଟ ଉପରେ କହିବାକୁ ଗଲେ, ପ୍ରହରାଜଙ୍କର ଥିଲା ସମସ୍ତଙ୍କ ସଙ୍ଗେ ସଦ୍ଭାବ, ସହାସ ସମ୍ଭାଷଣ, ନିରଭିମାନ ସହୃଦୟତା । କନିଷ୍ଠମାନଙ୍କୁ ‘ବାପ ଧନ’ କହି ବିରୋଧ ଭାବ ବା ବିତୃଷ୍ଣା କ୍ଷଣକେ ସେ ଲୁଚାଇ ଦେଉଥିଲେ । ମୋ ପ୍ରତି ଟିକିଏ ସଦୟଭାବ ଥିଲା ବୋଲି ମନେ ହେଲା, ଯେଉଁଦିନ ଅପରାହ୍ଣରେ ସେ ଆସି ମତେ କହିଗଲେ (ଅନୁରୋଧ କରି-ଗଲେ ବୋଲି କହିବା ଧୃଷ୍ଟତା ହେବ) ତାଙ୍କ ଘରକୁ ତା ଆରଦିନ ୧୦ଟା ବେଳକୁ ନିଶ୍ଚୟ ଯିବା ପାଇଁ । ସେଦିନ ଶ୍ରୀଗୁଣ୍ଡିଚା । ଭାବିଲି, କିଛି ଖାଇବା ପିଇବାର ବୋଧହୁଏ ଆୟୋଜନ ଅଛି । ଯାଇ ଦେଖେ, ଘର ଶୁନ୍‌ଶାନ୍ । ଚଟାଣ ଉପରେ ଲମ୍ବା ଆସନ ପକାଇ ସେ ବସିଛନ୍ତି, ଚାରିପଟେ କାଗଜପତ୍ର, ବହିଖାତାର ସମ୍ଭାର, ପଛପଟକୁ କାନ୍ଥକୁ ଲାଗି ଗୋଟିଏ ହାତ ବାକ୍ସ । ସଙ୍ଗେ ସଙ୍ଗେ ଆରମ୍ଭ କଲେ ତାଙ୍କର ଅଭିପ୍ରାୟ, ବିନା କୌଣସି ଉପକ୍ରମଣିକାରେ ଦଲିଲ, ନୂଆ ପୁରୁଣା କେତୋଟି କାଢ଼ି ଗୋଟି ଗୋଟି କରି ପଢ଼ାଇଲେ, ସେହିପରି ନୋଟଖାତା, ଡାଇରିବହି

ଖୋଲି ଦେଖାଉ ଥା'ନ୍ତି । ଶେଷକୁ କହିଲେ, "ମୁଁ ଜାଣୁଛି ମୋ ଅନ୍ତିମ-କାଳରେ ବା ମୋ ପରେ ମୋ ସମ୍ପତ୍ତି ନେଇ ବିବାଦ ଉଠିବ । ସେତେ-ବେଳକୁ, ବାପା, ନିଶ୍ଚୟ ଯେପରି ସହାୟ ହେବୁ । ଏହି କାଗଜପତ୍ର ସବୁ ଦେଖାଇଲି, ଏହାଛଡ଼ା ଆଉ ମୋର କଅଣ ଯୋଗାଡ଼ କରିବା ଦରକାର କହ । ସେହି ପରାମର୍ଶ ପାଇଁ ମୁଁ କଷ୍ଟ ଦେଲି ।" ଏହାପରେ ଖୋଲିଲେ ପଛପଟ ବାକ୍ସଟିକୁ । ଗୋଟିଏ ଖୋପରୁ ଅତି ପୁରୁଣା ଶ୍ରେଷ୍ଟ ଭଙ୍ଗାଭଙ୍ଗି କାଗଜ ଖଣ୍ଡିଏ କାଢ଼ି ଦେଖାଇଲେ, ଯଦି ସେ ଚିଠି କାମରେ ଲାଗିବ । ସେ ପ୍ରଶ୍ନ ଉପରେ ମୋର ସେତେବେଳେ ଲକ୍ଷ୍ୟ ନ ଥିଲା । ମନରେ ଚେଇଁ ଉଠିଲା ବହୁ ବର୍ଷ ତଳର ପିଲାଦିନରେ ଶୁଣିଥିବା ମହକ ବାସନା କଥାଟି । ପଚାରିଲି, ଆଜ୍ଞା, ଏ ବାକ୍ସଟି କେତେକାଳର ? "ପଚାଶ ବର୍ଷ ଉପରେ ହେବ" କହି ବାକ୍ସ ଉପରେ ସେ ହାତ ବୁଲାଇ ଦେଲେ । ମମତାର ଅତଳ ସ୍ପର୍ଶରେ କାଠରେ ଜୀବନ ଚକ୍‌କଣ ଚମକି ଗଲା । ଭାବିଲି, ଏଇ ତେବେ ସେହି କୁହୁକ ବାକ୍ସ, ଯାହା ଭିତରୁ ସୁଗନ୍ଧବାସ ପ୍ରହରାଜଙ୍କ ତରୁଣ ବୟସରେ ଆଗନ୍ତୁକମାନଙ୍କୁ ଆପ୍ୟାୟିତ କରୁଥିଲା । ପିଲାଦିନେ ଶୁଣିଥିଲି ଯାହା, ଏବେ ଦେଖିଲି ତାହା ।

ହରିହର ମହାପାତ୍ର
୨୩।୪।୭୦



ଶିଶୁସ୍ରଷ୍ଟା ଶ୍ରୀ ଗୋପାଳ ପ୍ରହରାଜଙ୍କ ସହିତ ପତ୍ନୀ ଓ ସାନଭାଇ ଉଦୟନାଥଙ୍କ ସନ୍ତାନ

# ସ୍ୱର୍ଗତ ପ୍ରହରାଜଙ୍କ ଖଣ୍ଡିଏ ଚିଠି

ଏ ଚିଠିଟା Confidential ବୋଲି treat କଲେ ଭଲ ହୁଅନ୍ତା ପରା ?

ଗୋପାଳ ୧୧।୧୦।୩୭

[ଏ ଚିଠିଟି ଉପର ଲିଖିତ ତାରିଖରେ ସ୍ୱର୍ଗତ ପ୍ରହରାଜ ବାଲୁଗାଁର ଡ଼ାକ୍ତର ରାଧାଚରଣ ପଣ୍ଡାଙ୍କ ପାଖକୁ ଲେଖିଥିଲେ । ଏ ଚିଠିଟିରେ ସେହି ମହାମନା ବ୍ୟକ୍ତିଙ୍କର ଉଦାରତା ଓ ସତ୍ୟନିଷ୍ଠା ପ୍ରକଟିତ । ତେଣୁ ଏ ଚିଠିଟି ଅତି ଉପାଦେୟ ବିବେଚିତ ହେବା ସ୍ୱାଭାବିକ । ଡ଼ାକ୍ତର ପଣ୍ଡା ଏ ଚିଠିଟିକୁ ପ୍ରକାଶ କରିବାକୁ ଅନୁମତି ଦେଇଥିବାରୁ ମୁଁ କୃତଜ୍ଞତା ଜଣାଉଛି— ସଂପାଦକ ]

G.C. Praharaj
(Kaiser -I- Hind)
Advocate, Patna High Court
Compiler of the
Purna Chandra Ordia Bhasakosha
(Quadrilingual Oriya Dictionary)

Bhasakosh Office
P. O. Chandani chauk
Cuttack . B. N. R.
(Orissa', India)

ବାବା ରାଧାଚରଣ

ତା ୧୦।୧୦।୩୭

୧ । ତୁମର ୭।୧୦।୩୭ର ଦୀର୍ଘପତ୍ର ପାଇଲି । ୨।୩ ଦିନ ଝାଡ଼ା ନ ହେଲେ ପୀତାମ୍ବରକୁ Paraffin ଦେଉଛୁ । କିନ୍ତୁ ରାତିରେ ଗୁଡ଼

ଭିତରକୁ କଅଣ ମାଡ଼ ମାଡ଼ ଯାଉଛୁ ଓ ସେତେବେଳେ ଘର ବାହାର ହେଉଛନ୍ତି । କି ଦିନ କି ରାତି ସବୁବେଳେ ବିବମିଷା (Nausea), ଗୋଡ଼ ହାତ ବନ୍ଧା ଲାଗିଛୁ । ତୁମେ ତ ରହିଲ ଏତେ ଦୂରେ । ଅଗତ୍ୟା Homeopathy କରୁଛୁ । ଫଳ ଭଲ ନ ହେଉ ପଛକେ ଖରାପ ହେବ ନାହିଁ ।

୨ । ମୋ ଅଫିମଖିଆ କଥା ଲେଖିଛ । B.L. ପରୀକ୍ଷା ଦେବା ପୂର୍ବରୁ ଗୋଡକୁ ଓ କୋଷକୁ ଚକ୍ରପଡ଼, ଗିଲଟି ଦରଜ ହୋଇ ୪ଥର ୧୫ ଦିନ ଅନ୍ତରରେ ମୋତେ ବାତଜ୍ୱର ହେଲା । ଏହା ଆଜକୁ ୩୮ ବର୍ଷ ତଳର କଥା (ଅର୍ଥାତ in 1900) । ସେହିଦିନଠାରୁ ସୂର୍ଯ୍ୟାସ୍ତ ପରେ ମୁଁ ଅନ୍ନ ଗ୍ରହଣ କରେ ନାହିଁ । ମଝିରେ ୨।୩ ବରଷ ଅଫିମ ଛାଡ଼ି ଦେଇଥିଲି ଓ ଅଫିମ ଛାଡ଼ି ଦେବାରୁ ଅଫିମ ଖିଆ ବେଳର ଫୁର୍ତ୍ତି (Activity, both Physical & Literary) ମସ୍ତିଷ୍କ ତୁଳନା ଏ ୨ ବରଷ ରହିଲା ନାହିଁ । ତଥାପି ଅଫିମ ଛାଡ଼ିଥାଏ । ଇତ୍ୟବସରରେ 1912/1913ରେ ପୁରୀକୁ Govt pleader ହୋଇଗଲି । ସେଠାରେ ୨ ମାସ କାମ କରୁଛୁ ୨ଥର ଗିଲ୍‌ଟି ଦରଜ ହେଲା । ବାତଜରର ଆଶଙ୍କା କରି ପୁଣି ଅଫିମ ଖାଇଲି । ମୁଁ ସଉକରେ ବା ମନ ମଉଜରେ ଅଫିମ ଖାଇନାହିଁ । ଅଫିମ ଖାଇବାରୁ ଆଉ ଗିଲ୍‌ଟି ଦରଜ ଦେଖାଗଲା ନାହିଁ, କିନ୍ତୁ କୋଷ୍ଠବଦ୍ଧ ହେଲା । ଏଥି-ପାଇଁ ରାତିରେ ଶୋଇବା ପୂର୍ବରୁ ସେରେ ଦୁଧ ନଖଉଷ୍ଣମ (lukewarm) ଥାଏ ପିଏଁ । ସକାଳେ ୧୦ଟା ବେଳେ ପ୍ରଧାନ ଭୋଜନ । ଅପରାହ୍ନ ୪ଟାବେଳେ ଇଚ୍ଛା ହେଲେ ଜଳଖିଆ ବା ଚବତ ପାନ । ଇଚ୍ଛା ନ ହେଲେ କିଛି ଖାଏ ନାହିଁ । ରାତିକୁ ସେରେ ଉଷ୍ଣମ ଦୁଧ । ଆଜକୁ ୧୭ ବରଷ ହେଲା ମାଛ ମାଂସ ଛାଡ଼ିଛୁ । କିନ୍ତୁ କୋଷ୍ଠବଦ୍ଧ ପାଇଁ ମଝିରେ ମଝିରେ ସ୍ନିଗ୍ଧ ଜୁଲାପ (light purgative) ନଏଁ । ଇତି ମଧ୍ୟରେ ୪।୫ ଥର ଅଫିମ ଛାଡ଼ିବାକୁ ଚେଷ୍ଟା କଲି । କିନ୍ତୁ ବିଦ ହାତ ଗୋଡ଼ ବନ୍ଧା ଓ ବାରଂବାର ସ୍ୱପ୍ନଦୋଷ (ଏପରିକି ଆଖି ବୁଜି ଦେଲା ମାତ୍ରେ ରେତଃ ସ୍ଖଳନ) ହେଲା । ଅଫିମର ମାତ୍ରା କମାଇ କରି ସୁଦ୍ଧା ହାତ ଗୋଡ଼ ବନ୍ଧା ହାତ ଗୋଡ଼ର ଗଣ୍ଠି ଛାଡ଼ି ଛାଡ଼ିଗଲା ଭଳି ଲାଗିଲା; ଉଠି ବସିବାକୁ, ଚାଲିବାକୁ, କାମ କରିବାକୁ, ଲେଖାଲେଖି କରିବାକୁ କମାରୁ ମାନସିକ ଓ

ଶାରୀରିକ ଶକ୍ତି ହେଲା ନାହିଁ । ଏହାପରେ ପୁଣି ଦୁଇଟି ବାଧାକେତେ ଚଳେ, ପୁଣି ଅତି କଷ୍ଟ ହେବାରୁ ମୋର ପୂର୍ବ ମାତ୍ରା ଅଫିମ ଖାଏଁ । ଏହାପରେ ଅଫିମ କମାଇବାର ଚେଷ୍ଟା ୫।୭ ଥର କରି ସଫଳ ହେଲି । ପ୍ରଥମେ ଆରମ୍ଭ କରିଥିଲି ପ୍ରତିଦିନ ସକାଳେ ଏକ ଭରିର ୧୬ ଭାଗରୁ ଭାଗେ । ତାହା ଗତ ୩୮ ବର୍ଷରେ କ୍ରମଶଃ ବଢ଼ି ବର୍ତ୍ତମାନ ହୋଇଛି ମାତ୍ରା ଏକ ଭରିର ୯ ଭାଗରୁ ଭାଗେ ।

ମହାତ୍ମା ଗାନ୍ଧି ଯେତେବେଳେ ୧୯୨୭ରେ କଟକ ଆସି ମୋ ଘରେ ଥିଲେ, ସେତେବେଳେ Opium Commissionଙ୍କ ଆଗେ ଅଫିମର ଉପକାରିତା ବିଷୟରେ ମୋ ନିଜର ଅନୁଭବ ଓ ଅଫିମ ଛାଡ଼ିବା ଚେଷ୍ଟା ଆଦିର ବିବରଣ ମୁଁ ଜମାନବନ୍ଦି ଦେଇଥିଲି । ସେହି ପ୍ରସଙ୍ଗରେ ମହାତ୍ମାଙ୍କୁ ଜଣାଇଲି, "ମୁଁ ଏବେ ମଧ୍ୟ ଅଫିମ ଛାଡ଼ିବାକୁ ପ୍ରସ୍ତୁତ ଅଛି; କିନ୍ତୁ ମୁଁ ମୁଣ୍ଡ ଉପରେ ଯେଉଁ ବୋଝ ମୁଣ୍ଡେଇଛି ସେ ବୋଝ (ଭାଷା-କୋଷ ସଂକଳନ)ରୁ ମୁକ୍ତ ନ ହେବା ପର୍ଯ୍ୟନ୍ତ, ଅଫିମ ଛାଡ଼ି ଦେଲେ ତଜ୍ଜନିତ ଯେବେ କିଛି ଉପସର୍ଗ ବାହାରି ପଡ଼େ, ତେବେ ମୋ ଜୀବନର ବ୍ରତରେ ବିଘ୍ନ ହେବ, ଏଥିପାଇଁ ଅଫିମ ଛାଡ଼ିବା Experiment ମୁଁ କରିବାକୁ ବର୍ତ୍ତମାନ କୁଣ୍ଠିତ ହେଉଅଛି । ଭାଷାକୋଷର Publication ଶେଷ ହେଲେ ମୁଁ ଅଫିମ ଛାଡ଼ିବି ।'

ଏହାଶୁଣି ମହାତ୍ମା କହିଲେ ଭାଷାକୋଷର Publication Complete ହେଲେ ତୁମେ ମୋ ପାଖକୁ ଯିବ, ମୁଁ ତୁମକୁ ନିଜ ତତ୍ତ୍ୱା-ଧୀନ ରଖି ଅଫିମ ଛଡ଼ାଇବି ଓ ତୁମର ଏଥିଯୋଗୁଁ କିଛି ବିଷମ ଉପସର୍ଗ ନବାହାରେ, ଏହା Watch କରିବାକୁ Indiaର ଜଣେ Specialistଙ୍କୁ ଅଣାଇବି ।" ସେ ତୁମ ପାଖେ ଜଗି ରହିବେ । ମୁଁ ଏଥିରେ ରାଜି ହୋଇଛି ଓ ଭାଷାକୋଷର ଶେଷ ଖଣ୍ଡ ସମାପ୍ତ ହେଲେ ମହାତ୍ମାଙ୍କୁ ତାଙ୍କ ପୂର୍ବ ପ୍ରତିଶ୍ରୁତି କଥା ଚେତାଇ ତାଙ୍କ ପାଖକୁ ଯାଇ ୨ ମାସ ରହି ଅଫିମ ଛାଡ଼ିବି ବୋଲି ସଂକଳ୍ପ କରିଛି ।

ବର୍ତ୍ତମାନ ମୋ ବୟସ ୭୨ ବର୍ଷ ୧୦ ମାସ କୋଡ଼ିଏ ଦିନ । ଏ ଅଭ୍ୟାସ ୩୭ ବର୍ଷର, ଏଣେ ଭାଷାକୋଷ ୭ ସମୁଦ୍ର ପାରି ହୋଇ ଆଜି

ଗୋଟିଏ ସମୁଦ୍ର ପାର ହେବା ବୋଝ ମୁଣ୍ଡ ଉପରେ ଲଦା ହୋଇଛି । ବର୍ତ୍ତମାନ ପ୍ରତ୍ୟହ କୌଣସି ପ୍ରକାର ବ୍ୟାୟାମ ବା Constitutional Walk (ହାଉଆଖିଆ) ନ କରି ୧୨ ଘଣ୍ଟାଠାରୁ ୧୫ ଘଣ୍ଟା ମାନସିକ ପରିଶ୍ରମ (Brain Work) ଓ ଲେଖା ପଢ଼ି (Clerikal Work) କରୁଛି । ଅଥଚ Dictionary ଆରମ୍ଭ କରିବା ଦିନଠାରୁ ଆଜକୁ ୨୪ ବର୍ଷ ହେବ ମୋର କୌଣସି Serious ବେମାରିରେ ଏକାଦିକ୍ରମେ ୩।୪ ଦିନ ବିଛଣାରେ ପଡ଼ିବା ଘଟନା ଘଟି ନାହିଁ । ଏଣେ ପ୍ରଭୁଙ୍କ ବିଧିଦ ଅନୁସାରେ (ବାପ ଯିବା ପୁଅର ମୁହଁ ଚୁହେଁ ନାହିଁ) ମୋ ପୁଅ ମୋ ମୁହଁ ଆଜକୁ ୧୦ ବର୍ଷ ହେବ ଚୁହୁଁ ନାହାନ୍ତି ଓ ମୋ ସ୍ତ୍ରୀ ମଧ୍ୟ ପୁଅବୋହୂଙ୍କ ସଙ୍ଗେ ଗ୍ରାମରେ ଥାଆନ୍ତି । ଶ୍ରୀମତୀ ପୀତାମ୍ବରୀ ଯୋଗୁଁ (ତାଙ୍କ ପ୍ରଦତ୍ତ ଧାନ ଚାଉଳ, ଡାଲି, ପରିବାରେ ଓ ତାଙ୍କର ଭାଷାକୋଷର ପାଣ୍ଡୁଲିପି, ପ୍ରୁଫ୍ ଦେଖା ଓ ଶବ୍ଦ ସଂଗ୍ରହରେ) ଭାଷାକୋଷ ପରି ବିରାଟ ଗ୍ରନ୍ଥ ଓଡ଼ିଆ ଜାତି ଦେଖିଲା । ଏପରି ଅବସ୍ଥାରେ ମୁଁ ଶଯ୍ୟାଶାୟୀ ହେଲେ ମୋ ମୁହଁରେ ଟୋପାଏ ପାଣି ଦେବାକୁ କେହି ନାହିଁ ।

ଏଥିପାଇଁ ମୁଁ ଡ଼ରୁଛି ଯେବେ ଅଫିମ ଅଭ୍ୟାସ ଛାଡ଼ୁ ଛାଡ଼ୁ ଗୋଟିଏ କିଛି ଗୁରୁତର ଉପସର୍ଗ ବାହାରି ପଡ଼େ ତେବେ ମୋ ଜୀବନ ବ୍ରତ ସାଙ୍ଗୋପାଙ୍ଗ ହେବା ପୂର୍ବରୁ ଖଣ୍ଡିତ ହୋଇଯିବ । ସେତିକ ସରି-ଗଲେ ମୁଁ ମଲେ ମୋର ମନରେ ଅବଶୋଷ ରହିବ ନାହିଁ । ସାତଖଣ୍ଡି ଭାଷାକୋଷକୁ ମୃତ୍ୟୁଶଯ୍ୟାର ସିମସ୍ଥାନରେ ରଖି ଶାନ୍ତିରେ ଓ ପ୍ରଭୁଙ୍କୁ ଧନ୍ୟବାଦ ଦେଉଁ ଦେଉଁ ମରିବି । ତାପରେ ଯେଉଁ ଡାକ୍ତର ବା ଚିକିତ୍ସକଙ୍କ ପ୍ରସାଦରୁ ମୁଁ ଅଫିମ ଛାଡ଼ିବା ଔଷଧ ଖାଇବି, ଅଫିମ ଛାଡ଼ି ମୁଁ ନିରାପଦ ହେବା ପର୍ଯ୍ୟନ୍ତ ଅନ୍ତତଃ ମାସେ ସେ ମୋତେ ଜଗି ରହିବେ । ଆଜ ମୁଣ୍ଡ ବିଥାଇଲା, କାଲି ଗୋଡ଼ ହାତ ଘୋଳାହିନ୍ଧା ହେଲା, ପଅରିଦିନ ଶରିଦ ବା ଜର ହେଲା, ଏପରି ହେଲେ ମୁଁ ସଙ୍ଗେ ସଙ୍ଗେ ତାଙ୍କୁ କହି ତାଙ୍କ ପରାମର୍ଶ ଓ ବ୍ୟବସ୍ଥା ଅନୁସାରେ ଚଳି ପାରିବି ।

ବାବା ! ମୁଁ ତୁମ୍ଭଙ୍କୁ ମୋ ପୁଅ ବୋଲି ଈଶ୍ବରଙ୍କୁ ସାକ୍ଷୀ କରି କହୁଛି ଯେ ଅଫିମ ଛାଡ଼ିବାକୁ ମୋର ଇଚ୍ଛା ଆନ୍ତରିକ ଅଟେ, ଏବଂ ତୁମକୁ

ଯଦି ମୁଁ ପାଖରେ ପାଏଁ ତେବେ ଆଜ ଅଫିମ ଛାଡ଼ିବା ଆରମ୍ଭ କରିବି । ନଚେତ୍ ଡ଼କ୍‌ସିନାରୀ ୭ମ ଖଣ୍ଡ ବାହାର କରି ତାହା ଗ୍ରାହକମାନଙ୍କଠାକୁ ପଠାଇ ଦେଇ ପାରିବା ମାତ୍ରେ ଯଥାଶୀଘ୍ର ଅଫିମ ଛାଡ଼ିବା Experimentରେ ପଶିବି । ଅତ୍ର ସନ୍ଦେହୋ ନାସ୍ତି କମ୍ବା ସଂଦେହାବସରୋ ନାସ୍ତି । ମନୁଷ୍ୟ ଯେତକ ଯେତକ ବୃଦ୍ଧ ହେଉଛି ସେତକ ସେତକ ନଜର ନିର୍ଭରଯୁତା, ଦୁର୍ବଳତା, ପରରସେବାପେକ୍ଷିତା ମନକୁ ଅଧିକାର କରୁଛି ଓ ୨୫ ବରଷ ତଳେ ଯେଉଁ ଦୃଢ଼ ସଂକଳ୍ପରେ ଅଫିମ ଛାଡ଼ ଦେଇଥିଲି, ଆଜ ବୃଦ୍ଧ ବୟସରେ ଦେହର ଓ ମନର ଦୁର୍ବଳତାକ୍ଲିଷ୍ଟ ହୋଇ ସେ କାଳର ଅଟଳ ଅଚଳ ଦୃଢ଼ ସଂକଳ୍ପ, ଖ୍ରିଷ୍ଟ ପ୍ରତିଜ୍ଞା ପାଳନ କରିବା ଶକ୍ତି ନାହିଁ ।

ତୁମର

ଆଉଖଣ୍ଡିଏ ଚିଠି

ଗୋପାଳ

ବାବା ରାଧାଚରଣ

ତା ୨୩ । ୮ । ୩୭

ତୁମ ପ୍ରେରିତ ଲଫାପାରେ ଥିବା 'ନାରୀକବି ଅନ୍ନପୂର୍ଣ୍ଣା' ପାଣ୍ଡୁଲିପି ଦେଖି ମୋର ନିରୋଳା ମତ ଅବଶ୍ୟ ଦେବି । ମୋତେ ୭ ଦିନ ଫୁରସତ ଦିଅ । ମୁଁ ପରା ବୁଢ଼ା ହଡା ।

ତାପରେ ଭାଷାକୋଷ ସମ୍ବନ୍ଧେ ତୁମର ପୂର୍ବ ସ୍ମୃତି ଉଦ୍‌ବୋଧନ ଓ ମଙ୍ଗଳକାମନା ଓ ମୋତେ 'ନିରସ୍ତ ପାଦପେ ଦେଶେ ଏରଣ୍ଡ ବୃକ୍ଷୀକରଣ' କରିବାପଣ ପାଇ ମୁଁ କୃତକୃତ୍ୟ ହୋଇଗଲି । ବାବା ! ତୋପରି ଯେବେ ଜଣେ ଭକ୍ତ ମୁଁ ୨୫ ବର୍ଷର ତପସ୍ୟା ଫଳରେ ପାଇଥାଏଁ ଓ ଜଗତରେ ଅନ୍ୟ କାହାରିଠାରୁ ପ୍ରଶଂସା ପାଇ ନ ଥାଏଁ ତେବେ ମୋ ତପସ୍ୟା ସାର୍ଥକ ହୋଇଛି ବୋଲି ମୁଁ ଶାନ୍ତିରେ ମରିବି ।

ପ୍ରଭୁ ତୁମଙ୍କୁ ଦୀର୍ଘାୟୁ କରି ବସାଇ ଥାଆନ୍ତୁ । ତୁମେହିଁ ଭାଷାକୋଷର ପ୍ରଥମ ଗ୍ରାହକ ଓ ପ୍ରଥମ ତହବିଲ ତୁମର ଅଟେ । ତାହା ଭାଷାକୋଷର ଜମା ଖରଚ ବହିରେ ୧୯।୭।୨୯ ତାରିଖରେ ଜମା ଦିଆ ହୋଇଅଛି ଓ ଯେଉଁଦିନ ପ୍ରଥମେ ପାଣ୍ଡୁଲିପି U. S, Pressକୁ ଦେଲି ସେହିଦିନ ତାହି କୁହିରୁ ଉକ୍ତ ଟଙ୍କା କାଢି କରି Press ବାଲାଙ୍କୁ ପ୍ରଥମ ବଇନା କଲି ।

ମୁଁ ବର୍ତ୍ତମାନ ସବୁ ସମ୍ପାଦ୍ଦ କରି ରଖିଥାଏଁ, କିନ୍ତୁ 'ବାଇମାହାନ୍ତି ପାଞ୍ଜିରୁ' ଖୋଜିଲେ ଅବଶ୍ୟ ମିଳିବ । ଫୁରସେତବେଳେ ଖୋଜିବ ।

ଯାହା କହୁଛି, 'କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁକଦାଚନ' ତାହାହିଁ ଠିକ୍ । କରିବାବାଲା ସେ । ଆମେ ଭୁଲ୍‌ରା ମଗଜ ଗରମ କରୁଁ ସିନା ।

ଯେ ଗାଳି ଦେଲେ ଓ ଦେଉଛନ୍ତି ସେମାନେ ମୋର ପରମବନ୍ଧୁ । ସେମାନେ ମୋତେ 'ମନମୋହିଆ' କରେଇ ଦେଇ ନାହାନ୍ତି ଓ ମୋତେ ପଦେ ପଦେ ହୁସିଆର ହେବାକୁ ଶିଖାଇଛନ୍ତି ।

କେବଳ ଯେଉଁମାନେ ଯାଇଁ ଭଗବାଦାତାମାନଙ୍କ ମନକୁ ଭଙ୍ଗାଉ ଥିଲେ ଓ ଛନ୍ତି ସେମାନଙ୍କ ପାଇଁ ମୁଁ ଚିନ୍ତିତ । ଯେହେତୁ ତୁମପରି ଭକ୍ତଙ୍କର ପ୍ରାର୍ଥନାରେ ମୁଁ ସପ୍ତମ ସିନ୍ଧୁକୁ ନିର୍ବିଘ୍ନରେ ପାରି ହେବି ବୋଲି ଦମ୍ଭ ବାନ୍ଧିଛି ।

ଆଶୀର୍ବାଦ କରୁଛି
ଗୋପାଳଆ



ଶୈଳପ୍ରିଣ୍ଟିଙ୍ଗ୍‌ସ୍, ବକ୍ସିବଜାର ରୋଡ଼, କଟକ-୧

# ସେଦିନ ଓ ଆଜି

## ଆକାଶପାତାଳ ପ୍ରଭେଦ

ସେ ଦିନ ବହୁ ସନ୍ତାନ ଜନ୍ମ ଏକ ସାମାଜିକ ଗୌରବ ଭାବରେ ନନ୍ଦିତ ହେଉଥିଲା । ବହୁ ସନ୍ତାନର ଜନକ ଓ ଜନନୀ ଭାଗ୍ୟବାନ ଓ ଭାଗ୍ୟବତୀ ଭାବରେ ପରିଗଣିତ ହେଉଥିଲେ । ଆଜି କିନ୍ତୁ ସମାଜର ଆର୍ଥନୀତିକ ମୂଲ୍ୟବୋଧ ବଦଳି ଯାଇ ଥିବାରୁ ବହୁ ସନ୍ତାନ ପରିବାର ସମାଜର ଗଳଗ୍ରହ ଭାବରେ ନିନ୍ଦିତ ହେଉଛନ୍ତି । ସେଦିନ ସାବିତ୍ରୀ ବର ମାଗିଥିଲେ "ମୁଁ ଶତପୁତ୍ରର ଜନନୀ ହୁଏ ।" ଆଜି କିନ୍ତୁ କୌଣସି ନାରୀ ଏପରି ଦୁଃସାହସିକ ବର ମାଗିବା ସମ୍ଭବ ନୁହେଁ । ମାତୃତ୍ୱ ନାରୀର କାମନା ହେଲେ ବି ବହୁ ସନ୍ତାନ ତା' ପାଇଁ ଏକ ଦୁର୍ବହ ଭାର ଓ ସମାଜ ପାଇଁ ଏକ ପାପ ଭାବରେ କଥିତ ହେଉଛି ।

ସେଥିପାଇଁ ଆଜି ପ୍ରତ୍ୟେକ ବ୍ୟକ୍ତି ଓ ପରିବାର ଏହି ସମସ୍ୟା କଥା ଗମ୍ଭୀର ଭାବରେ ଚିନ୍ତା କରିବାର ବେଳ ଆସିଛି । ସନ୍ତାନ ଜନ୍ମର ନିୟନ୍ତ୍ରଣ ଆଜି ଜାତି ଓ ଦେଶର ଅନ୍ୟତମ ଆହ୍ୱାନ । ଏକ ପ୍ରଗତିଶୀଳ ଗଠନମୁଖୀ ରାଷ୍ଟ୍ରର ଏ ଡାକରା ଏ ଦେଶର ପ୍ରତ୍ୟେକ ଜନକ ଜନନୀ ନ ଶୁଣିଲେ ଦେଶ ଏକ ନିଶ୍ଚିତ ବିପଦର ସମ୍ମୁଖୀନ ହେବ । କଷ୍ଟଲବ୍ଧ ସ୍ୱାଧୀନତା ବିପନ୍ନ ହେବ ।

ରାଜ୍ୟ ପରିବାର ନିୟନ୍ତ୍ରଣ ସଂସ୍ଥା
ଭୁବନେଶ୍ୱର, ଓଡ଼ିଶା

